JIBANARA CHALĀPATHE
Mrutyunjay Pattnayak
Published by
VIDYAPURI
Balubazar, Cuttack 753 002

ISBN-978-81-7411-973-5

ପ୍ରଥମ ପ୍ରକାଶ ଏପ୍ରିଲ ୨୦୧୫

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ଲିପି ସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩ ୦୦୨

ମୁଦ୍ରଣ
ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ ଟ ୧୨୦-୦୦

# ମୁଖବନ୍ଧ

ବ୍ୟକ୍ତିତ୍ୱ ଏକ ଦିବ୍ୟ ଆଶୀର୍ବାଦ । ଏକ ସମୃଦ୍ଧ ଦିବ୍ୟ ପରମ୍ପରାର ରସରେ ତା' ହୁଏ ସ୍ନାତ ଓ ସୁନ୍ଦର । ବାଟ ଭୁଲି ଅବାଟରେ ଯାଉଥିବା ମଣିଷମାନଙ୍କପାଇଁ ସେ ହୋଇଯାଏ ପ୍ରେରଣା । ଜଣେ ବ୍ୟକ୍ତି ଯେତେ ବଡ଼ ପଦବୀ ମଣ୍ଡନ କରୁନା କାହିଁକି, ଯଦି ତା'ର ପରମ୍ପରା ଓ ସଂସ୍କୃତି ପ୍ରତି ଆଦର ନ ଥାଏ, ସେପରି ବ୍ୟକ୍ତି ଲୋକଙ୍କ ପାଖରେ ଆଦୌ ସ୍ମରଣୀୟ ହୁଅନ୍ତି ନାହିଁ । ଯେଉଁଠି କ୍ଷମତା ଓ ଅର୍ଥବଳ ମଣିଷକୁ ଗ୍ରାସ କରିଥାଏ, ସେଠି ମଣିଷପଣିଆ ଲୋପ ପାଇଯାଏ । ସିଏ ହୋଇଯାଏ ହିଂସ୍ର ଓ ନିଷ୍ଠୁର । ଯାହାର ମାନବିକ ମୂଲ୍ୟବୋଧ ଥାଏ, ପରମ୍ପରା ସଂସ୍କୃତି ପ୍ରତି ଶ୍ରଦ୍ଧାଭାବ ଥାଏ, ସେଇ ମଣିଷଟି ଅହଂକାର ବିନିର୍ମୁକ୍ତ ହୋଇ ସମସ୍ତଙ୍କୁ ସମଦୃଷ୍ଟିରେ ଦେଖେ । ସେଇ ମଣିଷକୁ ଅର୍ଥ, କ୍ଷମତା, ପଦପଦବୀ ଆଦୌ ସ୍ପର୍ଶ କରିପାରେ ନାହିଁ । ସିଏ ହୁଏ ଶ୍ରଦ୍ଧାଶୀଳ, ଜ୍ଞାନବନ୍ତ, ସଂସ୍କୃତି ସଚେତନ ମଣିଷ ।

ଇଞ୍ଜିନିୟର ମୃତ୍ୟୁଞ୍ଜୟ ପଟ୍ଟନାୟକ ଆମ ସମୟରେ ଏହିପରି ଜଣେ ମଣିଷ, ଯିଏକି ଥରକର ଦେଖାରେ ପରକୁ ଆପଣାର କରିପାରନ୍ତି । ଗଡ଼ଜାତ ଅଞ୍ଚଳ ବଡ଼ମ୍ବାର ଏକ କୁଳୀନ ତଥା ସଂସ୍କୃତିସମ୍ପନ୍ନ ପରିବାରରେ ତାଙ୍କର ଜନ୍ମ, ଯେଉଁଠି ଜେଜେବାପା କଥାସାଗର ତଥା ସେସମୟର ଓଡ଼ିଶାର ଶିକ୍ଷାବିଭାଗର ପରିଦର୍ଶକ ଶ୍ରୀଯୁକ୍ତ ଲୋକନାଥ ପଟ୍ଟନାୟକଙ୍କ ପାଖରେ ତାଙ୍କର ବାଲ୍ୟକାଳ କଟିଥିଲା । ବଡ଼ବାପା ଓଡ଼ିଶାର ସବୁଜକବି ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକଙ୍କର ପ୍ରଚଣ୍ଡ ସ୍ୱାଭିମାନ ଓ କବିତ୍ୱ ପ୍ରତି ଆକର୍ଷଣ ତାଙ୍କୁ ଏକ ନିଆରା ମଣିଷରେ ପରିଣତ କରିଦେଲା ।

ମୃତ୍ୟୁଞ୍ଜୟବାବୁ ପିଲାବେଳୁ ଜଣେ ଧୀଶକ୍ତିସମ୍ପନ୍ନ କୃତୀ ଛାତ୍ର ଥିଲେ ଏବଂ ସମସ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଶେଷକୁ ହୋଇଛନ୍ତି ଜଣେ ଇଞ୍ଜିନିୟର । ବୃତ୍ତିରେ ଇଞ୍ଜିନିୟର ହେଲେ ମଧ୍ୟ ପିଲାଦିନୁ ଓଡ଼ିଆ ତଥା ସଂସ୍କୃତ ସାହିତ୍ୟ ପ୍ରତି ତାଙ୍କର ପ୍ରବଳ ଆକର୍ଷଣ । ଚାକିରି ଜୀବନରେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ କେଉଁଠି ଆସିଷ୍ଟାଣ୍ଟ ଇଞ୍ଜିନିୟର, କେଉଁଠି ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ତ କେଉଁଠି ସୁପରିଣ୍ଟେଣ୍ଡିଙ୍ଗ ଇଞ୍ଜିନିୟର ହୋଇ ଅବଶେଷରେ ପୂର୍ତ୍ତ ବିଭାଗର ଚିଫ୍ ଇଞ୍ଜିନିୟର ପଦବୀରୁ

ଅବସର ଗ୍ରହଣ । ସର୍ବତ୍ର ନିଜର କର୍ମଦକ୍ଷତା, ନିର୍ଭୀକତା ଓ ସଚ୍ଚୋଟତା ପାଇଁ ସେ ଜନସାଧାରଣରେ ପ୍ରିୟପାତ୍ର ହୋଇପାରିଛନ୍ତି । ଅବଶ୍ୟ ସମୟ ସମୟରେ ନିଜର ସ୍ପଷ୍ଟବାଦିତା ଯୋଗୁଁ ଉପରିସ୍ଥ ଅଫିସର ତଥା ରାଜନେତାମାନଙ୍କର ଅସୂୟାର ଶିକାର ହୋଇ ଓଡ଼ିଶାର ସୁଦୂର ଜିଲ୍ଲାମାନଙ୍କୁ ବଦଳି ହୋଇଛନ୍ତି; ମାତ୍ର ସେଥିଲାଗି ତାଙ୍କ ମନରେ କାହା ପ୍ରତି ସାମାନ୍ୟତମ ଆକ୍ରୋଶ ନାହିଁ; ବରଂ ପରୋକ୍ଷରେ ଏହା ଭଗବାନ୍‌ଙ୍କର ଆଶୀର୍ବାଦ ବୋଲି ଭାବି ସେ ପୂର୍ବପରି କାର୍ଯ୍ୟ କରିଛନ୍ତି । ଦୀର୍ଘ ଅର୍ଦ୍ଧଶତାବ୍ଦୀର ଚଲାପଥରେ ସେ ଭେଟିଛନ୍ତି କେତେ ବିଶିଷ୍ଟ ବ୍ୟକ୍ତିଙ୍କୁ ।

କିଏ ପିଲାଦିନର ଆଦର୍ଶ ଶିକ୍ଷକ, କିଏ ଜେଜେବାପାଙ୍କର ପୁରାତନ ଛାତ୍ର ତଥା ପରବର୍ତ୍ତୀ ଜୀବନରେ ମନ୍ତ୍ରୀ, ରାଜ୍ୟପାଳ, କିଏ କବି, ସାହିତ୍ୟିକ ତ କିଏ ବା ତାଙ୍କ ବିଭାଗର ଉଚ୍ଚପଦସ୍ଥ ଇଞ୍ଜିନିୟର, କିଏ ସାଧାରଣ କଣ୍ଟ୍ରାକ୍ଟର, କିଏ ଉଚ୍ଚ ପ୍ରଶାସନିକ ଅଧିକାରୀ ତ ଆଉ କିଏ ସଂସ୍କୃତିସମ୍ପନ୍ନ ବ୍ୟକ୍ତି । ସମାଜର ସବୁ ଶ୍ରେଣୀର ବ୍ୟକ୍ତି ତାଙ୍କ ଜୀବନ ପରିଧି ଭିତରକୁ ଆସିଛନ୍ତି । ସେମାନଙ୍କ ସଂପର୍କରେ ଆସି ସେ ଯେଉଁ ଜୀବନ୍ତ ଅନୁଭୂତି ଅର୍ଜନ କରିଛନ୍ତି ଏବଂ ନିଜର ଗଭୀର ଅନୁଶୀଳନ ଫଳରେ ସେମାନଙ୍କ ବ୍ୟକ୍ତିତ୍ୱର ଅନ୍ତରାଳରେ ଥିବା ନବନୀତ କୋମଳ ରୂପର ସାରବତ୍ତାକୁ ସେ ଆବିଷ୍କାର କରି ତାହାକୁ ଗଳ୍ପ ରୂପ ଦେଇଛନ୍ତି । ଏହା ତାଙ୍କର ଅନ୍ତର୍ନିହିତ ସାରସ୍ୱତ ପ୍ରତିଭାର ପରିଚୟ ଦିଏ ।

ମୃତ୍ୟୁଞ୍ଜୟବାବୁଙ୍କ ଚଲାପଥର ଇତିହାସ ବିଂଶ ଶତାବ୍ଦୀ ଓଡ଼ିଶାର ଅର୍ଦ୍ଧଶତାବ୍ଦୀର ବିଖ୍ୟାତ ବ୍ୟକ୍ତିମାନଙ୍କ ଉପରେ ଏକ ଆଲୋକପାତ । ଷାଠିଏ ଦଶକ ଓଡ଼ିଶାର ନବନିର୍ମାଣର ଇତିହାସ । ତେଣୁ ଏହି ପୁସ୍ତକ ଲେଖକଙ୍କର ଅନୁଭୂତ ସତ୍ୟର ବ୍ୟକ୍ତିତ୍ୱ ଜୀବନଧର୍ମୀ ଏକ ମାର୍ମିକ ଆଲେଖ୍ୟ । ଏହା ତାଙ୍କ ଜୀବନର ଏକ ସ୍ମୃତିଚିତ୍ର ବା ସଂସ୍କରଣ । ଜୀବନର ଖଣ୍ଡ ଖଣ୍ଡ ଅନୁଭୂତିରେ ସ୍ନିଗ୍ଧ ଓ ସୁନ୍ଦର । ଏହା ଅହଂର ଓଁକାର ନୁହେଁ; ବରଂ ଅହଂ ବିନିର୍ମୁକ୍ତ, ଗୋଟିଏ ଉଦାର ଦରଦୀ ହୃଦୟର ସାବଲୀଳ ଅଭିବ୍ୟକ୍ତି । ଆତ୍ମସମୀକ୍ଷା ଓ ଆତ୍ମବିଶ୍ଳେଷଣତା ମଧ୍ୟ ଦେଇ ସମକାଳୀନ ସମାଜ ସଂସ୍କୃତି, ରାଜନୀତି, ପ୍ରଶାସନ ତଥା ଓଡ଼ିଶାର ନବନିର୍ମାଣର ଜୟଯାତ୍ରାକୁ ସୂକ୍ଷ୍ମ ଭାବରେ ଅନୁଧ୍ୟାନ କରି ସେ ଏକ ମାର୍ମିକ ଚିତ୍ର ଅଙ୍କନ କରିଛନ୍ତି ।

ଜୀବନର ଚଲାପଥରେ କିଛି ଈର୍ଷାଳୁ ବ୍ୟକ୍ତି ତାଙ୍କର ଯେ କ୍ଷତି କରି ନାହାନ୍ତି ତା' ନୁହେଁ; ମାତ୍ର ସେସବୁକୁ ତାଙ୍କ ଉଦାର ହୃଦୟରେ ଭୁଲିଯାଇଛନ୍ତି । ଯେଉଁ ମହାନ୍ ବ୍ୟକ୍ତିମାନଙ୍କର ସ୍ନେହ, ଶ୍ରଦ୍ଧା, ଆଶୀର୍ବାଦ ପାଇଛନ୍ତି ଓ ସେମାନଙ୍କର ବ୍ୟକ୍ତିତ୍ୱର

ଆଦର୍ଶକୁ ଅନୁଭବ କରିଛନ୍ତି, ତାହା ତାଙ୍କ ନିଜ ଜୀବନରେ କେବଳ ପ୍ରଭାବ ପକାଇଛି ତା' ନୁହେଁ, ସେମାନଙ୍କ ବ୍ୟକ୍ତିତ୍ୱର ପ୍ରଚ୍ଛନ୍ନ ଦିଗକୁ ପାଠକମାନଙ୍କ ପାଖରେ ପହଞ୍ଚାଇଦେଇ ନିଜର ଜାତୀୟ କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି ।

ପୁସ୍ତକକୁ ଆମୂଳଚୂଳ ପାଠ କଲେ, ପାଠକ ସ୍ପଷ୍ଟ ଉପଲବ୍ଧି କରେ ଗୋଟିଏ ଦରଦୀ ମଣିଷପଣିଆର ଉଦାରଭାବ । କାହାଣୀ ସତ୍ୟ ଉପରେ ଆଧାରିତ । ତଥ୍ୟ ଅଛି; ମାତ୍ର ତାହା ଶୁଷ୍କ କିମ୍ୱା ନୀରସ ନୁହେଁ ବରଂ ପ୍ରତ୍ୟେକ ପ୍ରସଙ୍ଗ କାହାଣୀସ୍ନିଗ୍ଧ । ଏଥିରେ ଅଛି ମନକୁ ଛୁଇଁଲା ପରି କୋମଳ ଭାଷା ଏବଂ ନାଟକୀୟ ଉତ୍କଣ୍ଠା । ଭାଷା ସରଳ, ବାକ୍ୟବିନ୍ୟାସ ସ୍ୱଚ୍ଛ । ମଝିରେ ମଝିରେ ଅଛି ଜୀବନ-ଦର୍ଶନଧର୍ମୀ ବୌଦ୍ଧିକ ବିଶ୍ଳେଷଣ । ବ୍ୟକ୍ତିଙ୍କୁ ଚିହ୍ନି ଚିହ୍ନାଇବାର ଅପୂର୍ବ ଦକ୍ଷତା । ଜୀବନରେ ପ୍ରତି ମୁହୂର୍ତ୍ତରେ ଦେଖାଦେଉଥିବା ବିବିଧ ସମସ୍ୟାର ସମାଧାନ ଲାଗି, ଏହା ଏକ ମାର୍ଗ ନିର୍ଦ୍ଦେଶିକା । 'ଜୀବନର ଚଲାପଥେ' ଯେ ପାଠକୀୟ ଶ୍ରଦ୍ଧା ଲାଭ କରିବ, ଏଥିରେ ମୋର ଦୃଢ଼ ବିଶ୍ୱାସ ଅଛି । ବୃତ୍ତି ଜୀବନର ଅବସାନ ପରେ ପ୍ରବୃତ୍ତି ଜୀବନକୁ ବରଣ କରିନେଇ, ଓଡ଼ିଶାର ସାରସ୍ୱତ ଜଗତରେ ସେ ପାଦ ଦେଇଛନ୍ତି । ଏଥିପାଇଁ ସେ ମୋର ପ୍ରଶଂସାର ପାତ୍ର । ଆଶା ତାଙ୍କ ଲେଖନୀରୁ ଆହୁରି ନୂଆ କିଛି ଆତ୍ମପ୍ରକାଶ କରିବ ।

**ଡଃ ବୈଷ୍ଣବ ଚରଣ ସାମଲ**
ଅବସରପ୍ରାପ୍ତ ପ୍ରଫେସର, ବିଶ୍ୱଭାରତୀ, ଶାନ୍ତିନିକେତନ

# ମୋ ନିଜ କଥା, କାହିଁକି ଲେଖିଲି

ଏଇ ପ୍ରଶ୍ନ ମୁଁ ନିଜକୁ ଶହେ ଥର ପଚାରିଛି । ଜେଜେବାପା ସ୍ୱର୍ଗତ ବକ୍ସି ଲୋକନାଥ ପଟ୍ଟନାୟକ ଓଡ଼ିଶାର ଜଣେ ନାମଜାଦା ଗଳ୍ପକୁହାଳି ଥିଲେ । ତାଙ୍କର ଶହେଟି ଗଳ୍ପକୁ ପୁରୀର ଜଣେ ଶିକ୍ଷକ ସ୍ୱର୍ଗତ ଜଗନ୍ନାଥ ମିଶ୍ର 'କୌତୁକ-କୁଞ୍ଜ' ନାମରେ ପ୍ରକାଶ କରିଛନ୍ତି । ମୁଁ ପିଲାଦିନେ ଦେଖିଛି, କେବଳ ତାଙ୍କଠାରୁ ଗଳ୍ପ ଶୁଣିବା ଲାଗି ଓଡ଼ିଶାର ସେ କାଳର ଅନେକ ବିଶିଷ୍ଟ ବ୍ୟକ୍ତି ଆମ ଘରକୁ ଆସୁଥିଲେ । ଦୈବଯୋଗକୁ ହେଉ କିମ୍ବା ମୋର ଲୋକମାନଙ୍କ ସହିତ ମିଶିବା ସ୍ୱଭାବ ଯୋଗୁଁ ହେଉ, ଜୀବନରେ ଅନେକ ସତ୍ୟ ଅଥଚ ରୋମାଞ୍ଚକର ଘଟଣାର ମୁଁ ମୂକସାକ୍ଷୀ ।

ନିଜ ଅଙ୍ଗରେ ଲିଭାଇଥିବା କେତେକ ଘଟଣାକୁ ମୋର ସାଙ୍ଗମାନଙ୍କ ଆଗରେ ବର୍ଣ୍ଣନା କଲାବେଳେ ଅନେକ ଗୁଣମୁଗ୍ଧ ବନ୍ଧୁ ପରାମର୍ଶ ଦେଇଛନ୍ତି ତାକୁ ସବୁ ଗପ ଆକାରରେ ଲେଖିବାକୁ, ତାହାହେଲେ ବହୁତ ଲୋକ ତା'ର ରସ ଆସ୍ୱାଦନ କରିପାରିବେ । ମତେ ମଧ୍ୟ ବେଳେବେଳେ ଲାଗେ, ସେ ଘଟଣାସବୁ ମୋ ତଣ୍ଟି ପାଖରେ ଖୁଜୁବୁଜୁ ହେଉଛନ୍ତି ବାହାରର ଆଲୋକ ଦେଖିବାପାଇଁ । ଏ ବହିରେ ମୁଁ ଯେଉଁ ସ୍ୱନାମଧନ୍ୟ ବ୍ୟକ୍ତିମାନଙ୍କ ବିଷୟରେ ଲେଖିବାକୁ ଯାଉଛି, ସେମାନେ ସମସ୍ତେ ଜଣେ ଜଣେ ପ୍ରଖ୍ୟାତ ବ୍ୟକ୍ତି, ଯାହାଙ୍କ ସଂସ୍ପର୍ଶରେ ଆସି ମୋ ଜୀବନ ଧନ୍ୟ ହୋଇଛି ।

ମୁଁ ପିଲାଦିନୁ ଭଲ କହିପାରୁଥିଲି । ବକ୍ତୃତା ପ୍ରତିଯୋଗିତାରେ ସ୍କୁଲଠାରୁ ଆରମ୍ଭ କରି ଆନ୍ତଃକଲେଜ ଡିବେଟ୍‌ରେ ମୁଁ ବହୁବାର ପୁରସ୍କୃତ ହୋଇଛି । ପିଲାଦିନରୁ ସଂସ୍କୃତ, ଓଡ଼ିଆ ଭାଷା ପ୍ରତି ମୋର ପ୍ରବଳ ଆଗ୍ରହ । ବିଭିନ୍ନ କାବ୍ୟକବିତା, ଶ୍ଳୋକ ଇତ୍ୟାଦି ଆବୃତ୍ତି କରି ମୋର ସାଙ୍ଗସାଥୀ ତଥା ଉଚ୍ଚ ନ୍ୟାୟାଳୟର ପ୍ରଧାନ ବିଚାରପତିଙ୍କ ଠାରୁ ଆରମ୍ଭ କରି– 'ରାମାୟଣ'ର ନିର୍ମାତା ପ୍ରଖ୍ୟାତ ଚଳଚ୍ଚିତ୍ର ନିର୍ଦ୍ଦେଶକ ରାମାନନ୍ଦ ସାଗରଙ୍କଠାରୁ ପ୍ରଶଂସା ଏବଂ ଆଶୀର୍ବାଦ ଲାଭ କରିଛି । ମାତ୍ର ମୁହଁରେ କହିବା ଗୋଟେ କଥା, କାଳିକଲମରେ ଲେଖିବା ଆଉ ଗୋଟେ କଥା । ଏହି ଶେଷ କାମରେ ମୁଁ ମା' ସରସ୍ୱତୀଙ୍କର କୃପା କେତେଦୂର ଲାଭ କରିଛି, ତା' କେବଳ ପାଠକମାନେ ହିଁ ବିଚାର କରିବେ । କେବଳ ମହାକବି କାଳିଦାସଙ୍କ

ଭାଷାରେ କହିବି ଯେ, ଗୋଟିଏ ପିମ୍ପୁଡ଼ି ହୋଇ ଦୀପଗୁଖା ଉପରକୁ ଚଢ଼ିବାକୁ ମୁଁ ଚେଷ୍ଟା କରୁଛି । ଉପରେ ପହଞ୍ଚିବି କି ପୋଡ଼ିହୋଇ ମରିବି, ତା' କେବଳ ମା' ସରସ୍ୱତୀଙ୍କୁ ଜଣା । ତେବେ ଅବସର ନେବାପରେ ଲେଖିବାପାଇଁ, ସାଙ୍ଗସାଥୀ, ବନ୍ଧୁ, ସହକର୍ମୀ ତଥା ଅଜଣା ଭଦ୍ରବ୍ୟକ୍ତି ଏବଂ ଭଦ୍ରମହିଳାଙ୍କ ଠାରୁ (ଟ୍ରେନ୍ କିମ୍ବା ବସ୍‌ରେ ଯାତ୍ରା କଲାବେଳେ) ଅଜସ୍ର ଉତ୍ସାହ ଓ ପ୍ରେରଣା ପାଇଛି– ''ମୃତ୍ୟୁଞ୍ଜୟବାବୁ ! ଆପଣ ଏତେ ସୁନ୍ଦର କହିପାରୁଛନ୍ତି; ଅଥଚ ଲେଖୁ ନାହାନ୍ତି କାହିଁକି ?''

ଆଜି ପ୍ରତ୍ୟୁଷରୁ କଲମ ଧରିବାବେଳେ ଜଣାଅଜଣା ସମସ୍ତଙ୍କୁ ଆନ୍ତରିକତା ସହ ସ୍ମରଣ କରୁଛି । ଆଉ ମଧ ସ୍ମରଣ କରୁଛି ଶୈଶବର ବନ୍ଧୁ ଶ୍ରୀ ଅମୂଲ୍ୟ ରତ୍ନ ନନ୍ଦଙ୍କୁ, ଯେ କି ଜୀବନରେ ମତେ ବହୁତ ଉତ୍ସାହବାଣୀ ଶୁଣାଇଛି । ଅନ୍ୟତମ ବନ୍ଧୁ ତଥା ଶୁଭାକାଙ୍କ୍ଷୀ ଓଡ଼ିଶାର ସ୍ୱନାମଧନ୍ୟ ପ୍ରକାଶକ ଶ୍ରୀଯୁକ୍ତ ପୀତାମ୍ବର ମିଶ୍ର ଥରେ କହିଲେ, ''ମୁଁ ଏ ଜୀବନରେ ବହୁ ଆଇ.ଏ.ଏସ୍., ଆଇ.ପି.ଏସ୍. ଅଫିସରଙ୍କର ବହି ଛାପିଲି । ଆପଣଙ୍କର ଖଣ୍ଡେ ବହି କ'ଣ ଛପା ହେବନି ?'' ଏମିତି ଅନେକ ବନ୍ଧୁଙ୍କଠାରୁ ଅଯାଚିତ ସ୍ନେହଶ୍ରଦ୍ଧା ପାଇଛି । ସେଥିକୁ ମୁଁ କେତେଦୂର ଯୋଗ୍ୟ, ତା' ମଧ ଜାଣେନା । ଫକୀରମୋହନ ସେନାପତି, ଯେ କି ଓଡ଼ିଆ ଭାଷାର ମୁକୁଟବିହୀନ ସମ୍ରାଟ୍, ଦୀର୍ଘ କର୍ମମୟ ଜୀବନରୁ ଅବସର ନେବାପରେ ତାଙ୍କର କାଳଜୟୀ ସାହିତ୍ୟ ରଚନା କରିଥିଲେ । ସେଥିରେ ଅନୁପ୍ରାଣିତ ହୋଇ ଆଜି ଜୀବନର ଏଇ ଚତୁର୍ଥ ପାହାଚରେ କଲମ ଧରିବାକୁ ଅଣ୍ଟା ଭିଡ଼ିଛି । ଫଳାଫଳ ସୁଧୀ ପାଠକ-ପାଠିକାମାନଙ୍କ ହାତରେ ଛାଡ଼ିଦେଲି ।

ଏଇ ଅବସରରେ ମୋର ଜନ୍ମଦାତ୍ରୀ ଆଜୀବନ ପ୍ରେରଣାଦାତ୍ରୀ ତଥା ସାହିତ୍ୟ ରସିକା ପରମପୂଜନୀୟା ମାତୃଦେବୀ ଶ୍ରୀମତୀ ସୁଧାରାଣୀ ପଟ୍ଟନାୟକ ଏବଂ ଯୌବନ ତଥା ବାର୍ଦ୍ଧକ୍ୟର ସଙ୍ଗୀ, ସହଯାତ୍ରିଣୀ, ପ୍ରେରଣାଦାତ୍ରୀ ତଥା ମୋର ପ୍ରତିଟି କାମର ନିଖୁଣ ସମାଲୋଚିକା ଧର୍ମପତ୍ନୀ ଶ୍ରୀମତୀ କନକ ପଟ୍ଟନାୟକଙ୍କୁ ସ୍ମରଣ କରି ଲେଖା ଶେଷ କରୁଛି । ଅଳମେତି ବିସ୍ତରେଣ ।

**ମୃତ୍ୟୁଞ୍ଜୟ ପଟ୍ଟନାୟକ**

ବିଜୟା ଦଶମୀ
ଅପର୍ଣ୍ଣାନଗର, କଟକ
ତା.୩୧.୦୮.୨୦୧୩
ଦୂରଭାଷ – ୦୬୭୧ -୨୪୪୩୨୩୩
ମୋ – ୯୪୩୭୦-୨୫୪୪୫



ଜେଜେବାପା ସ୍ୱର୍ଗତ ବକ୍ସି ଲୋକନାଥ ପଟ୍ଟନାୟକ



ପିତା ୵ ମହେଶ୍ୱର ପଟ୍ଟନାୟକ ଓ ମାତା ଶ୍ରୀମତୀ ସୁଧାରାଣୀ ପଟ୍ଟନାୟକ



ବାମରୁ ଡାହାଣକୁ : ଭାଇ, ବିଭୁଦତ୍ତ, ସବ୍ୟସାଚୀ, ହରିଶ୍ଚନ୍ଦ୍ର
ପିତା ୯ ମହେଶ୍ୱର ପଟ୍ଟନାୟକ, ଭାଇ ଗୋପବନ୍ଧୁ, ପୁଅ ଶୀତିକଣ୍ଠ
ମା' ସୁଧାରାଣୀ ପଟ୍ଟନାୟକ, ଭଉଣୀ ପ୍ରିୟମ୍ବଦା ସହ ଲେଖକ



ପୁଅ ଶୀତିକଣ୍ଠ ଓ ବୋହୂ ପ୍ରଜ୍ଞା (ଆଗରେ)
ପତ୍ନୀ କନକ ପଟ୍ଟନାୟକ, ଲେଖକ (ପଛରେ)
ଝିଅ ନିବେଦିତା (ନାତୁଣୀ ସହ)



ସ୍ୱର୍ଗତ ଦାଶରଥି ପଟ୍ଟନାୟକ (ଦାଶିଆଅଜା)ଙ୍କ ସହ ପତ୍ନୀ କନକ ପଟ୍ଟନାୟକ



ସୁନ୍ଦରଗଡ଼ ସର୍କିଟ୍ ହାଉସ୍‌ର ଉଦ୍‌ଘାଟନ ଅବସରରେ (ବାମରୁ ଡାହାଣ)
ଗଣେଶ୍ୱର ସାହୁ ପୂର୍ତ୍ତ ବିଭାଗ ନିର୍ବାହୀ ଯନ୍ତ୍ରୀ, ଅଶୋକ ମୋବାୟୀ ଜିଲାପାଳ
ରାଜ୍ୟପାଳ ଜଷ୍ଟିସ୍ ଗତିକୃଷ୍ଣ ମିଶ୍ର, ଶ୍ରୀମତୀ ମିଶ୍ର, ଲେଖକ



(ବାମରୁ ଡାହାଣକୁ) ୰ ଶ୍ୟାମସୁନ୍ଦର ପଣ୍ଡା ବ୍ରହ୍ମପୁର ସର୍କଲର ଅଧୀକ୍ଷଣ ଯନ୍ତ୍ରୀ
ମୁଖ୍ୟଯନ୍ତ୍ରୀ ସୟଦ୍ ମମତାଜ ଅଲ୍ଲୀ, ଲେଖକ
ନିର୍ବାହୀ ଯନ୍ତ୍ରୀ 'ଫୁଲବାଣୀ, ଲଳିତ ମୋହନ ପାତ୍ର



ଓଡ଼ିଶାର ରାଜ୍ୟପାଳ ତଥା ଭାରତର ବିଶିଷ୍ଟ ଇଂଜିନିୟର
ଶ୍ରୀଯୁକ୍ତ ଅଯୋଧ୍ୟାନାଥ ଖୋସଲାଙ୍କ ସହ ଲେଖକ

# ସୂଚୀପତ୍ର

# ମୋ ଜେଜେ
# ବକ୍ସି ଲୋକନାଥ ପଟ୍ଟନାୟକ

ଜେଜେ ୧୮୭୯ ମସିହା ଭାଗବତ ଜନ୍ମ ଦିନ ଓଡ଼ିଶାର ଘନଜଙ୍ଗଲ ପରିବେଷ୍ଟିତ ଗଡ଼ଜାତ ରାଜ୍ୟ ବଡ଼ାମ୍ବାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ବାପାଙ୍କ ନାମ ଶ୍ରୀଯୁକ୍ତ ଭାଗବତ ବକ୍ସି ପଟ୍ଟନାୟକ ଓ ମା'ଙ୍କ ନାମ ଶ୍ରୀମତୀ ରାସମଣି ଦେବୀ । କୁହାଯାଏ ଯେ ବିବାହର ଅନେକବର୍ଷ ପର୍ଯ୍ୟନ୍ତ ତାଙ୍କ ପିତାଙ୍କର କୌଣସି ପିଲାପିଲି ନ ହେବାରୁ ତାଙ୍କ ମା' ପ୍ରତିଦିନ ରାତି ଥାଉ ଥାଉ ଗାଧୋଇସାରି ଆମ ବଂଶର ଇଷ୍ଟଦେବ ଶ୍ରୀଲୋକନାଥ ଦେବଙ୍କର ମନ୍ଦିର ସଫା କରୁଥିଲେ ଏବଂ ମା' ପାର୍ବତୀଙ୍କର ଜଳକୁଣ୍ଡ ପରିଷ୍କାର କରୁଥିଲେ । ତାଙ୍କ ସେବାରେ ଖୁସି ହୋଇ ସ୍ୱୟଂ ପାର୍ବତୀ ଦିନେ ସ୍ୱପ୍ନାଦେଶ ଦେଲେ ଯେ, ''ତୋର ଗୋଟିଏ ପୁଅ ହେବ ଏବଂ ସେ ତୋ'ର କୁଳ ଉଜ୍ଜ୍ୱଳ କରିବ ।'' ଜେଜେଙ୍କ ଜନ୍ମ ପରେ ଠାକୁରଙ୍କ ନାଁ ଅନୁସାରେ ତାଙ୍କ ନାଁ 'ଲୋକନାଥ' ରଖାଗଲା ।

ପିଲାଦିନୁ ସେ ଅତ୍ୟନ୍ତ ବୁଦ୍ଧିମାନ୍ ଥିଲେ । ଗାଁ ଚାଟଶାଳୀ ଶିକ୍ଷା ସମାପ୍ତ କରି ସେତେବେଳର ମିଡିଲ୍ ଭର୍ଣ୍ଣାକୁଲାର ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେଲେ । ସେତେବେଳେ ବଡ଼ାମ୍ବା ରାଜ୍ୟରେ ଗୋଟେ ହେଲେ ହାଇସ୍କୁଲ ନ ଥିଲା । ଉଚ୍ଚଶିକ୍ଷା ଲାଗି ପ୍ରବଳ ଆଗ୍ରହ ଯୋଗୁଁ ସେ ଦୀର୍ଘପଥ ଚାଲି ଚାଲି କଟକର ରେଭେନ୍ସା କଲିଜିଏଟ୍ ସ୍କୁଲରେ ନାଁ ଲେଖାଇଲେ ଏବଂ ସେଠି ହଷ୍ଟେଲରେ ରହିଲେ । ଛୁଟି ହେଲେ କେତେବେଳେ ଚାଲି ଚାଲି ବା କେତେବେଳେ ମହାନଦୀରେ ଡଙ୍ଗାରେ ବସି ବଡ଼ାମ୍ବା ଆସୁଥିଲେ ।

ସେତେବେଳେ ଓଡ଼ିଶାରେ ଗମନାଗମନ ଅତ୍ୟନ୍ତ କଷ୍ଟଦାୟକ ଥିଲା ଏବଂ ରାସ୍ତାଗୁଡ଼ିକ ଘନଜଙ୍ଗଲଦ୍ୱାରା ପରିବେଷ୍ଟିତ ଥିଲା । ଦିନବେଳେ ମଝିରେ ମଝିରେ ବନ୍ୟଜନ୍ତୁ, ଯଥା– ବାଘ କିମ୍ବା ଦନ୍ତାହାତୀ ଦେଖିବା ସାଧାରଣ କଥା ଥିଲା । କଲିଜିଏଟ୍ ସ୍କୁଲରେ ସଦାବେଳେ ସେ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ଶେଷରେ ବିହାର-ଓଡ଼ିଶାରୁ ପ୍ରଥମ ଦଶ ଜଣଙ୍କ ମଧ୍ୟରେ ସ୍ଥାନ ପାଇ ମାଟ୍ରିକ୍ୟୁଲେସନ୍ ପାସ୍ କଲେ ।

ଜେଜେ କହୁଥିଲେ ସେ ସମୟରେ ଶିକ୍ଷାର ମାନ ବହୁତ ଉଚ୍ଚରେ ଥିଲା ଏବଂ ବାର୍ଷିକ ପୁରସ୍କାର ଉତ୍ସବରେ ସେ ଏତେ ବହି ଓ ଅନ୍ୟାନ୍ୟ ଜିନିଷ ପାଉଥିଲେ ଯେ ଏକାକୀ ତାକୁ ବୋହି ହଷ୍ଟେଲକୁ ଆଣିବା ତାଙ୍କ ପକ୍ଷରେ ଅସମ୍ଭବ ଥିଲା । ସାଙ୍ଗ ପିଲାମାନେ ସେଥିରେ ସାହାଯ୍ୟ କରୁଥିଲେ ଏବଂ କିଛି ନା କିଛି ବହି ନେଇଯାଉଥିଲେ । ୧୯୦୨ ମସିହାରେ କୃତିତ୍ୱର ସହିତ ପାଟନା ଇଉନିଭରସିଟିରୁ ବି.ଏ. ପାସ୍ କଲେ । ସେଥିରେ ତାଙ୍କର ସହପାଠୀ ଥିବା ପୁରୀର ଶ୍ରୀଯୁକ୍ତ ଗୋପବନ୍ଧୁ ଦାସ (ପରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ) ଅନ୍ୟତମ ଥିଲେ । ଗୋପବନ୍ଧୁଙ୍କ ସଙ୍ଗେ ତାଙ୍କର ପ୍ରଗାଢ଼ ବନ୍ଧୁତା ଥିଲା, ପରେ ମୋର ସାନଭାଇ, ଯିଏ କି ୧୯୭୮ ମସିହାରେ ସର୍ବଭାରତୀୟ ପରୀକ୍ଷାରେ ଆଇ.ଏ.ଏସ୍. ପାଇଲା, ତାଙ୍କ ସାଙ୍ଗଙ୍କ ନାଁ ଅନୁସାରେ ସେ ତା' ନାଁ ଗୋପବନ୍ଧୁ ରଖିଥିଲେ ।

ଶିକ୍ଷା ପ୍ରତି ଗଭୀର ଅନୁରାଗ ଯୋଗୁଁ ସେ ପରୀକ୍ଷା ଦେଇ ଶିକ୍ଷାବିଭାଗରେ ଶିକ୍ଷା ପରିଦର୍ଶକ ଭାବେ ନିଯୁକ୍ତି ପାଇଲେ ଏବଂ ଜିଲ୍ଲା ଶିକ୍ଷା ପରିଦର୍ଶକ ଭାବେ ୧୯୩୨ ମସିହାରେ ପୁରୀରୁ ଅବସର ନେଲେ । ତାଙ୍କ ଅଧୀନରେ ସମଗ୍ର ପୁରୀଜିଲ୍ଲା ଓ ଓଡ଼ିଶାର ଗଡ଼ଜାତ ରାଜ୍ୟର ସ୍କୁଲଗୁଡ଼ିକ ଥିଲା । ବଳଦଗାଡ଼ି, ଡଙ୍ଗା ତଥା ରାଜାମାନେ ପଠାଉଥିବା ହାତୀ ଦ୍ୱାରା ସେ ଏହି ସୁଦୂର ଘନଜଙ୍ଗଲ ପରିପୂର୍ଣ୍ଣ ଗଡ଼ଜାତ ରାଜ୍ୟର ସ୍କୁଲଗୁଡ଼ିକ ପରିଦର୍ଶନ କରୁଥିଲେ । ତାଙ୍କର ସ୍ମରଣଶକ୍ତି ଅସାଧାରଣ ଥିଲା । ମୁଁ ୧୯୬୯ରେ ବୌଦ୍ଧରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥିଲାବେଳେ ସେ ମୋତେ ଗୋଟେ ସ୍କୁଲ ଓ ତା'ର ହେଡ୍‌ପଣ୍ଡିତଙ୍କ କଥା ପଚାରିଲେ ଏବଂ ସେ ଜୀବିତ କି ନାହିଁ ବୁଝିବାକୁ କହିଲେ । ପରେ ମୁଁ ଲୋକ ପଠାଇ ବୁଝିଲି, ସେ ଯାହା କହୁଛନ୍ତି ସବୁ ଠିକ୍; କିନ୍ତୁ ହେଡ୍‌ପଣ୍ଡିତ ବହୁ ଆଗରୁ ସ୍ୱର୍ଗାରୋହଣ କରିଛନ୍ତି ।

ପିଲାଦିନୁ ତାଙ୍କର ଆର୍ଥିକ ଅବସ୍ଥା ସେତେଟା ସ୍ୱଚ୍ଛଳ ନ ଥିଲା । ସେ ଜମିଦାର ସ୍ୱର୍ଗତ ଗୋକୁଳାନନ୍ଦ କାନୁନ୍‌ଗୋଙ୍କ ପୁଅ ନିତ୍ୟାନନ୍ଦ କାନୁନ୍‌ଗୋଙ୍କୁ ଟ୍ୟୁସନ୍ କରୁଥିଲେ । ମଝିରେ ମଝିରେ ତାଙ୍କ ଘର ପାଖରେ ଥିବା ଜାନକୀବାବୁଙ୍କ ପୁଅ ସୁଭାଷ ଚନ୍ଦ୍ର ମଧ୍ୟ ଟ୍ୟୁସନ୍‌ରେ ବସେ ଓ ସେ ଦୁଇ ଜଣଙ୍କୁ ଅଙ୍କ ଓ ଇଂଲିଶ ଅନୁବାଦ କରିବାକୁ ଦିଅନ୍ତି । କିନ୍ତୁ ସବୁଥର ସୁଭାଷ ତାଙ୍କ ନିଜ ଛାତ୍ର ନିତ୍ୟାନନ୍ଦଠାରୁ ଅଧିକ ନମ୍ବର ପାଏ । ଥରେ ଏ ବିଷୟରେ ଗୋକୁଳାନନ୍ଦବାବୁ ତାଙ୍କୁ ପଚାରିବାରେ ସେ କହିଲେ, ''ସୁଭାଷ ଅସମ୍ଭବ ଧୀଶକ୍ତିସମ୍ପନ୍ନ ଏବଂ ନମ୍ବର ଦବାରେ ସେ ପାତରଅନ୍ତର

କରିପାରିବେନି ।'' ଏ କଥା ସେ ନିଜେ ମତେ ପିଲାବେଳେ କହିଛନ୍ତି । ପରେ ସେ ଦୁଇ ଜଣ ପିଲା ଭିତରୁ ନିତ୍ୟାନନ୍ଦ କାନୁନ୍‌ଗୋ କେନ୍ଦ୍ରମନ୍ତ୍ରୀ ଓ ପରେ ଗୁଜୁରାଟର ରାଜ୍ୟପାଳ ହେଲେ । ସୁଭାଷ ନେତାଜୀ ନାମରେ ସମଗ୍ର ପୃଥିବୀରେ ନାମ ଅର୍ଜନ କଲେ । ଥରେ ମୁଁ ଜେଜେଙ୍କ ସାଙ୍ଗରେ ଅନୁଗୁଳରେ ହେଉଥିବା ସର୍ବୋଦୟ ମେଳା ବୁଲିଲାବେଳେ ଜଣେ ଭଦ୍ରଲୋକ ତାଙ୍କ ଗୋଡ଼ତଳେ ମୁଣ୍ଡିଆ ମାରିଲେ ଏବଂ କହିଲେ, ''ସାର୍, ମୁଁ ନିତ୍ୟାନନ୍ଦ । ଚିହ୍ନିପାରୁଛନ୍ତି ?'' ଜେଜେ କହିଲେ, ''ହଇରେ ! ତତେ ତ ମୁଁ ପିଲାଦିନେ ତୁ କରୁଥିଲି । ନେହରୁ ତତେ କେନ୍ଦ୍ରରେ ମନ୍ତ୍ରୀ କରିବା ପରେ 'ତମେ' କହିଲି ଏବେ ରାଜ୍ୟପାଳ ହେଲୁଣି କ'ଣ ଆପଣ ଡାକିବି ?'' ସେ ହସିଲେ, କହିଲେ, ''ଆପଣ ପୂର୍ବପରି ତୁ ଡାକନ୍ତୁ ।'' ଶେଷବେଳକୁ ଜେଜେ ଅସୁସ୍ଥ ଥିବାବେଳେ ସେ ତାଙ୍କୁ ଦେଖିବାକୁ ବଡ଼ାମ୍ବା ଆସିଥିଲେ । ତାଙ୍କର ଅସଂଖ୍ୟ ଛାତ୍ରଙ୍କ ମଧ୍ୟରୁ ଆଉଜଣେ ଗୁଣମୁଗ୍ଧ ହେଲେ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ଉତ୍ତରପ୍ରଦେଶର ପୂର୍ବତନ ରାଜ୍ୟପାଳ ଶ୍ରୀଯୁକ୍ତ ବିଶ୍ୱନାଥ ଦାଶ ।

ଜେଜେ ନିଜେ ଗରିବ ଅବସ୍ଥାରୁ ଉପରକୁ ଉଠିଥିବାରୁ ତାଙ୍କ ମନରେ ଗରିବ ତଥା ମେଧାବୀ ଛାତ୍ର ପ୍ରତି ଗଭୀର ସ୍ନେହ ଥିଲା ଏବଂ ଶେଷପର୍ଯ୍ୟନ୍ତ ସେ ତାଙ୍କୁ ସାହାଯ୍ୟ କରୁଥିଲେ; କେବଳ ଗୋଟିଏ ସର୍ତ୍ତରେ ଯେ ଏ ସାହାଯ୍ୟ କଥା ଅନ୍ୟ କେହି ନ ଜାଣନ୍ତୁ । ଜେଜେ ଅବଶେଷରେ ୯୩ ବର୍ଷ ବୟସରେ ପବିତ୍ର ଗୁରୁଦିବସରେ ଆମମାନଙ୍କୁ ତଥା ସାରା ଓଡ଼ିଶାରେ ତାଙ୍କର ଅଗଣିତ ପ୍ରଶଂସକଙ୍କୁ ଛାଡ଼ି ସ୍ୱର୍ଗାରୋହଣ କଲେ ।

ମୃତ୍ୟୁପରେ ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତି ନିଜେ ଆସି ତଥା ଚିଠି ଜରିଆରେ ମୋ ବାବାଙ୍କୁ ସମବେଦନା ଜଣାଇଥିଲେ । ସେମାନଙ୍କ ମଧ୍ୟରେ ଜଣେ ଥିଲେ ଏକ୍ସସାଇଜ୍ କମିସନର ଶ୍ରୀଯୁକ୍ତ ବାଞ୍ଛାନିଧି ହୋତା । ସେ ଆଗରୁ କେତେଥର ଜେଜେଙ୍କୁ ଦେଖିବାକୁ ଆସିଥିବା ମୁଁ ଜାଣିଛି । ମାତ୍ର ସେଥର ବାବାଙ୍କୁ ଡାକିକରି କହିଲେ, ''ମକୁବାବୁ, (ମୋ ବାବାଙ୍କ ଡାକନାମ) ଆଜିପର୍ଯ୍ୟନ୍ତ ଗୋଟେ କଥା ତମକୁ କହିପାରିନି । ସେଥିଲାଗି ମତେ ସାର୍ ମନା କରିଥିଲେ । ମୋର ପଞ୍ଚମଶ୍ରେଣୀ ବେଳେ ଥରେ ନନା ଯେତେବେଳେ ତମ ବାପାଙ୍କୁ କହିଲେ ଆଉ ଅଧିକା ପଢ଼ାଇବା ତାଙ୍କ ପକ୍ଷରେ ସମ୍ଭବପର ନୁହେଁ, ତମ ବାପା କହିଲେ – ସେ ଭଲ ପଢୁଛି, ଯେତେପର୍ଯ୍ୟନ୍ତ ପଢ଼ିବ ପଢୁ, ମୁଁ ତାକୁ ସାହାଯ୍ୟ କରିବି; କିନ୍ତୁ ମୁଁ ନ ମଲା ପର୍ଯ୍ୟନ୍ତ ସେ ଏକଥା କାହାକୁ କହିପାରିବନି ।''

ସେ ଏପରି ଓଡ଼ିଶାର ବହୁ ଗରିବ ଛାତ୍ରଙ୍କୁ ସାହାଯ୍ୟ କରିଛନ୍ତି ଏବଂ ପରେ ସେମାନଙ୍କ ଭିତରୁ କେତେଜଣ ଏକଥା ମୋ ଆଗରେ ପ୍ରକାଶ କରିଛନ୍ତି । ମୋ ଚାକିରି କାଳ ଭିତରେ (ଆସିଷ୍ଟାଣ୍ଟ୍ ଇଞ୍ଜିନିୟରଙ୍କଠୁ ଆରମ୍ଭ କରି ଚିଫ୍ ଇଞ୍ଜିନିୟର ପର୍ଯ୍ୟନ୍ତ) ମୁଁ ଓଡ଼ିଶାର ବିଶିଷ୍ଟ ବ୍ୟକ୍ତି ଓ ରାଜନୀତିଜ୍ଞମାନଙ୍କଠାରୁ ଯେଉଁ ଅଯାଚିତ ସ୍ନେହଶ୍ରଦ୍ଧା ପାଇଛି, ତାହା ସବୁ କେବଳ ତାଙ୍କର ଆଶୀର୍ବାଦର ଫଳ । ମୋର ଦୃଢ଼ବିଶ୍ୱାସ ମୁଁ ବଡ଼ମ୍ବାର ପ୍ରଥମ ଚିଫ୍ ଇଞ୍ଜିନିୟର ପି.ଡବ୍ଲ୍ୟୁ.ଡି. ଡକ୍ଟର ହରିଶ୍ ପଟ୍ଟନାୟକ ଏସ୍.ବି.ଆଇ.ର ଚିଫ୍ ଜେନେରାଲ ମ୍ୟାନେଜର ହବା ତଥା ବାବୁନା (ଗୋପବନ୍ଧୁ ପଟ୍ଟନାୟକ) ବଡ଼ମ୍ବାର ପ୍ରଥମ ଆଇ.ଏ.ଏସ୍. ହେବା – ଏସବୁ କେବଳ ତାଙ୍କର ପୁଣ୍ୟବଳ ଯୋଗୁଁ ।

ସେ ମୋ ମା'କୁ ବହୁତ ଭଲପାଉଥିଲେ ଏବଂ ମା' ମଧ୍ୟ ଜୀବନଯାକ ତାଙ୍କୁ ଭୟ, ଭକ୍ତି ଓ ସେବା କରୁଥିଲା । ମା' ପିଲାଦିନୁ ଆମ୍ଭମାନଙ୍କୁ ତାଙ୍କ ଆଦର୍ଶରେ ନିଜକୁ ଗଢ଼ିବାକୁ କହୁଥିଲା । ମୋର ଦୃଢ଼ବିଶ୍ୱାସ, ତାଙ୍କର ପୁଣ୍ୟବଳରେ ମୁଁ ଏବଂ ମୋର ଭାଇଭଉଣୀମାନେ ଜୀବନରେ ସବୁକିଛି ଲାଭ କରିଛୁ । ତାଙ୍କର ଅମର ଆତ୍ମା ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ।

❑❑❑

# ବିଶ୍ୱନାଥ ଦାଶ
# ଭାରତୀୟ ସଂସ୍କୃତିର ଯୋଗ୍ୟ ଦାୟାଦ

ବିଶ୍ୱନାଥ ଦାଶ ପାରଳା ମହାରାଜା କୃଷ୍ଣଚନ୍ଦ୍ରଙ୍କ ପରେ ଓଡ଼ିଶାର ଦ୍ୱିତୀୟ ପ୍ରଧାନମନ୍ତ୍ରୀ ଥିଲେ (ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା) । ପରେ ଦ୍ୱିତୀୟ ଥର ଲାଗି ସେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ବହନ କରିଥିଲେ । ଉପ-ମୁଖ୍ୟମନ୍ତ୍ରୀ ଥିଲେ ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହଦେଓ ।

ସେଇ ସମୟର କଥା । ୧୯୭୧ କିମ୍ବା ୧୯୭୨ ମସିହା ହେବ । ମୁଁ ସେତେବେଳେ ସୁନ୍ଦରଗଡ଼ରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥାଏ । ଜିଲ୍ଲାପାଳ ଥା'ନ୍ତି ଶ୍ରୀଯୁକ୍ତ ଅଶୋକ ମୋବାୟୀ ଆଇ.ଏ.ଏସ୍. । ସେ ମତେ ବହୁତ ସ୍ନେହ କରୁଥା'ନ୍ତି । ଦିନେ ହଠାତ୍ ମତେ ଡକାଇ ପଠାଇଲେ । ମୁଁ ହେଡ୍‌କ୍ୱାର୍ଟର୍ସରେ ନ ଥିବାରୁ କିଛି ସମୟ ପରେ ପହଞ୍ଚିଲି । ସେ କହିଲେ, ''କୁଆଡ଼େ ବୁଲୁଛ ? ଏଠି ଗୋଟେ ମିନି Crisis ହେଲାଣି ।'' ପାଖରେ ଏ.ଡି.ଏମ୍ ଶ୍ରୀ କେ.ବି. ଶର୍ମା ବସିଥା'ନ୍ତି । ସେ ମୋ' ହାତକୁ ଗୋଟେ ଓ୍ୱାୟାର୍‌ଲେସ୍ ମେସେଜ୍ ବଢ଼ାଇଦେଲେ । ମୁଁ ପଢ଼ିଲି । ଦୁଇ ଦିନ ପରେ ସୁନ୍ଦରଗଡ଼ ଜିଲ୍ଲାକୁ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାଶଙ୍କର ଅଚାନକ ଗସ୍ତ । ତାଙ୍କର ଖାଇବାରେ ଥିଲା ଅରୁଆଭାତ, ଡାଲି, ଚାରୁପାଣି ଇତ୍ୟାଦି । ତରକାରି ଭିତରେ ଗୋଟିଏ ଶବ୍ଦ ଥିଲା 'ସାନ୍ତୋଲ' । ତା' ତଳେ ଗୋଟେ ନାଲି ଗାର ପଡ଼ିଥାଏ । ତାକୁ କେହି ବୁଝିପାରୁ ନ ଥା'ନ୍ତି । କଲେକ୍ଟର କହିଲେ – ଏ ତରକାରିଟା କିପରି ହେବ, ଆମେ କେହି ବୁଝିପାରୁନୁ । ବିଶ୍ୱନାଥ ଦାଶ ସଦାବେଳେ 'ସନ୍ତୁଳା' ଖାଉଥିଲେ । ଆଳୁ, ବାଇଗଣ, ସାରୁ, କଖାରୁ ମିଶି ଏହା ପ୍ରସ୍ତୁତ ହୁଏ । ମସଲା ପଡ଼େ ନାହିଁ ।

ମୋର ଟିକିଏ ମଜା କରିବାକୁ ଇଚ୍ଛା ହେଲା । ମୁଁ କହିଲି, ''ଏ ପ୍ରକାର ଖାଦ୍ୟ କରିବାକୁ ବହୁତ ଯୋଜନା କରିବାକୁ ପଡ଼ିବ ଏବଂ ଦାମୀ ମଧ୍ୟ । ମୋବାୟୀ ସାହେବ କହିଲେ, ଆରେ ଖର୍ଚ୍ଚ କଥା ଛାଡ଼ । ରାଉରକେଲା ଗେଷ୍ଟହାଉସ୍ ଆମ ଅଧୀନରେ । ସବୁଠୁ ଭଲ ରାନ୍ଧିବା ଲୋକ ଆମ ପାଖରେ ଅଛନ୍ତି । ତମେ ଖାଲି କହିଦିଅ, କେମିତି କରିବାକୁ ହେବ ଓ କ'ଣ କ'ଣ ପରିବା ଲାଗିବ ।''

ମୁଁ ଟିକିଏ ହସିଦେଇ କହିଲି, ''ସାର୍, ଏ ଶବ୍ଦଟା 'ସାନ୍ତୋଲ' ନୁହେଁ । ପୂରା ଓଡ଼ିଆ ତରକାରି 'ସନ୍ତୁଳା' । ଓ୍ୱାୟାରଲେସ୍‌ରେ ଭୁଲ୍‌ରେ ଏପରି ହୋଇଛି ।'' ବହୁତ ହସ ବୃଷ୍ଟି ହେଲା । ତା'ପରେ କଲେକ୍ଟର କହିଲେ, ''ଆଉ ଗୋଟେ ସମସ୍ୟା ଅଛି । ଏଠି ତ ପ୍ରଚଣ୍ଡ ଖରା । ୪୫°ରୁ ୪୬° ରହୁଛି । The oldman may get a stroke and all of us will be in trouble.'' ମୁଁ କହିଲି, ''ସାର୍, ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁନି । ସେ ଗସ୍ତରେ ଗଲାବେଳେ ଗୋଟେ ଛୋଟ ପୋର୍ଟେବଲ୍ ଏ.ସି. ସାଙ୍ଗରେ ନିଅନ୍ତି ।''

ମୁଖ୍ୟମନ୍ତ୍ରୀ ପି.ଡବ୍ଲ୍ୟୁ.ଡି. ଆଇ.ବି. ରେ ପହଞ୍ଚିଲେ । ପ୍ରବଳ ଖରା ହେଉଥାଏ । ଗାଡ଼ିରୁ ଓହ୍ଲାଇଲେ । ମୁଣ୍ଡ ଉପରେ ଭଙ୍ଗାହୋଇ ଗୋଟେ ପାକଲା ଗାମୁଛା ପଡ଼ିଥାଏ । ସେଥିରୁ ପାଣି ଥପ୍ ଥପ୍ ହୋଇ ତାଙ୍କ ପଞ୍ଜାବି ଉପରେ ପଡୁଥାଏ । ମୁଁ କଲେକ୍ଟରଙ୍କ ମୁହଁକୁ ଚାହିଁ ହସିଦେଲି । ସେ କେବଳ ମୁଣ୍ଡ ଟୁଙ୍ଗାରିଲେ । ବଙ୍ଗଳାରେ ଉପସ୍ଥିତ ସବୁ ବିଭାଗର କର୍ମଚାରୀମାନେ ତାଙ୍କ ନିଜ ନିଜ ବିଭାଗରେ ଚାଲିଥିବା ଉନ୍ନତିମୂଳକ କାର୍ଯ୍ୟ ବିଷୟରେ କହିଲେ । ସେ ତାଙ୍କ ଭାଷଣରେ ଜଳକ୍ଲିଷ୍ଟ ଗାଁମାନଙ୍କରେ କୂଅ, ପୋଖରୀ ଖୋଳିବାକୁ ପରାମର୍ଶ ଦେଲେ ଏବଂ କହିଲେ,''ଆଗେ ଜମିଦାର ରାଜାମାନେ ଏସବୁ କରୁଥିଲେ । ବର୍ତ୍ତମାନ ଏହି ଦାୟିତ୍ୱ ଓଡ଼ିଶା ସରକାରଙ୍କର ।'' ତା'ପରେ ଜଣ ଜଣ କରି ଉପସ୍ଥିତ କର୍ମଚାରୀମାନଙ୍କର ନାଁ ଏବଂ ତାଙ୍କର ଜନ୍ମସ୍ଥାନ ବିଷୟରେ ପଚାରି ବୁଝିଲେ । ମୋ ପାଳି ଆସିଲାବେଳେ ମୁଁ କହିଲି – ମୃତ୍ୟୁଞ୍ଜୟ ପଟ୍ଟନାୟକ; ଏସ୍.ଡି.ଓ. ପି.ଡବ୍ଲ୍ୟୁ.ଡି., ଘର ବଡ଼ାମ୍ବାରେ । ସେ ଟିକିଏ ରହି ପଚାରିଲେ, ''ବଡ଼ାମ୍ବାର ଲୋକନାଥ ପଟ୍ଟନାୟକଙ୍କୁ ଚିହ୍ନିଛ ?'' ମୁଁ କହିଲି – ସେ ମୋର ଜେଜେବାପା । ସେ କହିଲେ – ସମସ୍ତେ ଗଲାପରେ ମୋ ରୁମ୍‌କୁ ଆସିବ ।

ରାତି ୯ଟା ବେଳକୁ ମୁଁ ତାଙ୍କ ରୁମ୍‌କୁ ଗଲି । ସେ ଖାଇସାରି ଖଟ ଉପରେ ଗଡୁଥା'ନ୍ତି । ତାଙ୍କ ସାଙ୍ଗରେ ଆସିଥିବା ୧୨/୧୩ ବର୍ଷର ଗୋଟେ ନାତିଟୋକା ତାଙ୍କୁ ବିଧା ମାରୁଥାଏ । ତାଙ୍କୁ ସେତେବେଳେ ୮୦ ବର୍ଷ ପାଖାପାଖି ହେବ । ଏତେ ବାଟ କାର୍‌ରେ ଆସିଥିବା ହେତୁ ନିଶ୍ଚୟ ହାଲିଆ ଲାଗୁଥିବ । ମତେ କହିଲେ, ''ଏ ଚୌକିଟା ଟାଣିଆଣି ମୋ' ପାଖରେ ବସ ।'' ତା'ପରେ ଘରେ ମୋ' ବାପା ମା' ଓ ଅନ୍ୟମାନେ କିପରି ଅଛନ୍ତି, ସବୁ ଟିକିନିଖି ପଚାରି ବୁଝିଲେ । ମୋ ଜେଜେବାପା ସେତେବେଳକୁ ସ୍ୱର୍ଗାରୋହଣ କରିସାରିଥା'ନ୍ତି ।

କଥାଛଳରେ କହିଲେ, ''ବୁଝିଲୁ ! ମୁଁ ରେଭେନ୍ସାରେ ପଢ଼ିଲାବେଳେ ତେ ସ୍କଲାର୍ ଥିଲି । ସେତେବେଳେ କଟକରେ ମୋର କେହି ଜଣାଶୁଣା ନ ଥିଲେ । ଲୋକନାଥବାବୁ ମୋର ଲୋକାଲ୍ ଗାର୍ଡିଅନ୍ ଥିଲେ । ତୋ ପିଲାଦିନେ ମୁଁ ତମ ଘରକୁ ଯାଇଛି । ତୋର କେତୋଟି ପିଲାପିଲି ?'' ମୁଁ କହିଲି, ''ଗୋଟିଏ ପୁଅ । ତାକୁ ୪ ବର୍ଷ ।''

ସେ କହିଲେ, ''Never think that your grand father was a ordinary Govt servant. He was a Godly man। ହଉ ତୁ ଯାଆ । ମୁଁ ତ କାଲି ସକାଳେ ରାଉରକେଲା ଚାଲିଯାଉଛି । ଗଲା ଆଗରୁ ତୋ' ସ୍ତ୍ରୀ ଓ ପିଲାଙ୍କୁ ଦେଖିକରି ଯିବି । ତୋ ବସାଟା କେଉଁଠି ?'' ମୁଁ କହିଲି, ''ଏ ବଙ୍ଗଳା ସାମ୍ନାରେ ।'' ତା'ପରେ ମୁଁ ବିଦାୟ ନେଇଆସିଲି ଓ ମୋ ସ୍ତ୍ରୀଙ୍କୁ ସେ ୯ଟା ବେଳକୁ ଆସିପାରନ୍ତି ବୋଲି କହିଲି । ପ୍ରଥମେ ସେ ଅବିଶ୍ୱାସ କଲେ । ମାତ୍ର ତା'ପରେ ସେ ଆସିଲେ କ'ଣ ଦିଆଯିବ ବୋଲି ପଚାରିଲେ । ମୁଁ କହିଲି, ''ଏଟା ତ ଖରାଦିନ । ବରଫ ପକାଇ ୪/୫ ଗ୍ଲାସ୍ ବେଲ ସର୍ବତ ଫ୍ରିଜ୍‌ରେ ରଖିଥିବ, ଯଦି ଆସନ୍ତି ଦେବ । ନ ହେଲେ ଆମେ ପିଇବା ।''

ସକାଳ ହେଲା । ୮.୩୦ ମିନିଟରେ ଜଳଖିଆ ସାରି ସେ ରୁମ୍‌ରୁ ବାହାରିଲେ । ଗାର୍ଡ ଅଫ୍ ଅନର୍ ଦେବାଲାଗି ବନ୍ଧୁକ ଧରି ପୋଲିସ ଠିଆ ହୋଇଥାନ୍ତି । କଲେକ୍ଟର ଓ ଏସ୍.ପି. ମଧ୍ୟ ଠିଆହୋଇଥାନ୍ତି । ହଠାତ୍ ମତେ ଦେଖିପକାଇଲେ, ''ତୋ ବସାଟା କୋଉଠି କହିଲୁ ?'' ମୁଁ ତାରବାଡ଼ ଆରକଡ଼େ ଥିବା ମୋ' ସରକାରୀ କ୍ୱାର୍ଟରକୁ ଦେଖାଇଦେଲି ଏବଂ କହିଲି, ''ସାର୍, ଗାଡ଼ିରେ ମୁଖ୍ୟ ଫାଟକ ଦେଇ ଗଲେ ଭଲ ହେବ ।'' ସେ କହିଲେ– ଆରେ ଏଟା ତ ସିଧା ୫୦/୬୦ ହାତ ହେବ । ଏତେ ବୁଲିବା କ'ଣ ଦରକାର ?

କେହି କିଛି ବୁଝିବା ପୂର୍ବରୁ ମୁଣ୍ଡରେ ଗାମୁଛାଟା ପକେଇ ଡଗ ଡଗ୍ ହୋଇ ସିଧା ଚାଲିବାକୁ ଆରମ୍ଭ କଲେ । ଏସ୍.ପି. ଶ୍ରୀ ନଳିନୀକାନ୍ତ ମହାନ୍ତି ଦୌଡ଼ିଯାଇ ଦୁଇଟା ତାରକୁ ଟେକି ଧରିଲେ । ସେ ତ ପତଳା ଲୋକ । ସଟ୍‌କରି ତା' ଭିତରେ ଗଳିଗଲେ । ତାଙ୍କ ପଛେ ପଛେ ମୁଁ ଓ ମୋ ପଛେ ପଛେ ଏସ୍.ପି. ସାହେବ । ମୋବାୟୀ ସାହେବ ଟିକିଏ ମୋଟା ଲୋକ । ସେ ବୁଲିକରି ଗଲେ । ମୋ' ଘରେ ପହଞ୍ଚି ମୋ ସ୍ତ୍ରୀକୁ ଡାକିଲେ । ସେ ନମସ୍କାର କଲାପରେ, ପଚାରିଲେ, ''ତମେ

ଗୋପାଳବାବୁ ଜଜ୍‌ଙ୍କ ଝିଆରୀ ତ !'' ସେ ହଁ କଲାରୁ କହିଲେ, ''ତମେ ଜାଣିଛ ତ କେଉଁଭଳି ପରିବାରରେ ବିବାହ କରିଛ ?'' ମୋ ପୁଅକୁ ଦେଖି କହିଲେ, ''ଇୟେ ଲୋକନାଥବାବୁଙ୍କ ଅଣନାତି । ତାକୁ କାଖେଇ ଧରିକରି ଠିଆ ହୁଅ ଏବଂ ମତେ ମୁଠେ ଅରୁଆଚାଉଳ ଦିଅ । ମୁଁ ତମକୁ ଓ ମୃତ୍ୟୁଞ୍ଜୟକୁ ଆଶୀର୍ବାଦ କରିବି । ମୁଁ ବ୍ରାହ୍ମଣଲୋକ । ଆଉ ଅଧିକ କ'ଣ ଦେଇପାରିବି ?'' ତା'ପରେ ସେ ବେଦରୁ କିଛି ଶ୍ଲୋକ ବୋଲି ଆମ ଉପରକୁ ଅରୁଆଚାଉଳ ପକାଇଲେ । ସେତେବେଳେ ତ ଏତେ ଭିଡିଓ କ୍ୟାମେରା ଇତ୍ୟାଦି ନ ଥିଲା । ଏକଥା ଭାବିଲାବେଳକୁ ମୋ' ଆଖିରେ ବେଳେବେଳେ ଲୁହ ଆସିଯାଏ । ଗୁରୁଜନଙ୍କ ପ୍ରତି କି ପ୍ରବଳ ଭକ୍ତି !

ତା'ର ବହୁ ବର୍ଷ ପରେ । ସେତେବେଳକୁ ମୋ ଭାଇ ଆଇ.ଏ.ଏସ୍. ପାଇସାରି ଉତ୍ତରପ୍ରଦେଶ ରାଜ୍ୟପାଳଙ୍କର ସେକ୍ରେଟାରୀ ଥାଏ । ରାଜ୍ୟପାଳ ଥାଆନ୍ତି ଶ୍ରୀଯୁକ୍ତ ସୂରଯଭାନ୍ । ମୋର ତାଙ୍କ ସହିତ ଦେଖାସାକ୍ଷାତ ବେଳେ ସେ ମୋତେ କହିଲେ, ''Gopabandhu says you have retired from Govt service.'' ମୁଁ ହଁ କଲାରୁ କହିଲେ, ''You are neither looking tired nor retired.'' କଥା ପ୍ରସଙ୍ଗରେ ମୁଁ କହିଲି, 'Your Excellency.' ଆମ ପ୍ରଦେଶର ବିଶ୍ୱନାଥ ଦାଶ ଏଠି ରାଜ୍ୟପାଳ ଥିଲେ । ସେ ଇଂରାଜୀରେ କହିଲେ, ''He was not simply a Governor. He was a Godly man.'' ପରେ ଭାଇ ମତେ କହିଲା– ବିଶ୍ୱନାଥ ଦାଶ ତାଙ୍କର ପାଞ୍ଚ ବର୍ଷର କାର୍ଯ୍ୟକାଳ ଭିତରେ ସମୁଦାୟ ଦରମାକୁ, 'ଚତୁର୍ଦ୍ଧାମ ବେଦବ୍ୟାସ' ସମିତିକୁ ଦାନ କରିଛନ୍ତି । ଏକଥା ଓଡ଼ିଶାରେ ବହୁତ କମ୍ ଲୋକ ଜାଣିଛନ୍ତି ।

ଭାରତୀୟ ସଂସ୍କୃତିର ମହାନ୍ ପରମ୍ପରା 'Simple living and high thinking' ର ସେ ଥିଲେ ମୂର୍ତ୍ତିମନ୍ତ ପ୍ରତୀକ । ଆଜିର ଏ ବସ୍ତୁବାଦୀ ଦୁନିଆରେ ରାଜନୀତିଜ୍ଞମାନଙ୍କର ଅଧୋଗତି ଦେଖିଲେ ମନରେ ଦୁଃଖ ଆସେ ଏବଂ ବିଶ୍ୱନାଥ ଦାଶଙ୍କ ପରି ସରଳ, ସଚ୍ଚୋଟ, ନୀତିନିଷ୍ଠ ରାଜନୀତିଜ୍ଞମାନଙ୍କ କଥା ମନକୁ ଆସେ ।

ତାଙ୍କର ଅମର ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ।

❑❑❑

# କଳାହାଣ୍ଡି ମହାରାଣୀ ଓ
# ରାଜେନ୍ଦ୍ର ନାରାୟଣ ସିଂହଦେଓ

୧୯୬୯ ମସିହା । ସେତେବେଳେ ମୁଁ ବୌଦରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥାଏ । ସେଠାରେ ସେପର୍ଯ୍ୟନ୍ତ ବିଦ୍ୟୁତ୍ ଆଲୋକ ଆସି ନ ଥାଏ । ସନ୍ଧ୍ୟା ୬ଟାରୁ ରାତି ୧୨ଟା ପର୍ଯ୍ୟନ୍ତ ଗୋଟେ ଡିଜେଲ୍ ଜେନେରେଟ୍‌ର ଚାଲେ । ସନ୍ଧ୍ୟା ୬ଟା ହେବ । ମୁଁ ଏବଂ ମୋ ସ୍ତ୍ରୀ ଏ ସମୟରେ ଦୁଇଟି ଚୌକିରେ ବସି ଗପ କରୁ । ଏ ସମୟରେ ମୁଁ ଦେଖିଲି ଗୋରା ହୋଇ ଜଣେ ମଧ୍ୟବୟସ୍କା ସ୍ତ୍ରୀଲୋକ ଫାଟକ ଖୋଲି ଭିତରକୁ ଆସିଲେ । ପାଖକୁ ଆସିବାରୁ ଦେଖିଲି ବେଶ୍ ସମ୍ଭ୍ରାନ୍ତବଂଶୀୟା ଜଣାପଡୁଥାନ୍ତି । କହିଲେ, ''ଆପଣ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ ?'' ମୁଁ ହଁ କହିବାରୁ କହିଲେ, ''ମୋ ଭାଇଙ୍କ ଦେହ ଭୀଷଣ ଅସୁସ୍ଥ । ସାଲକୀ ନଦୀ ପାଖରେ ମୋ ଗାଡ଼ି ଭାଙ୍ଗିଗଲା । ସମସ୍ତେ କହିଲେ ଆପଣଙ୍କ ପାଖକୁ ଆସିବାକୁ ।''

ମୁଁ ମୋ ସ୍ତ୍ରୀଙ୍କୁ କହିଲି ତାଙ୍କୁ ଘର ଭିତରକୁ ନବାଲାଗି । ''ଆପଣ ବ୍ୟସ୍ତ ହୁଅନ୍ତୁନି । ମୁଁ ଯାଉଛି ଦେଖେ କ'ଣ କରାଯାଇପାରିବ ।'' କହି ଜିପ୍‌ର ଚାବି ବାହାର କରି ମୁଁ ସାଲକୀ ନଦୀ ପାଖକୁ ଗଲି । ସେତେବେଳକୁ ପୋଲ ହୋଇ ନ ଥାଏ । କାଠପୋଲ । ଗାଡ଼ିକୁ ଦେଖିଲାମାତ୍ରେ ମୁଁ ଦେଖିଲି ଗାଡ଼ି ଆଗରେ ନାଲି ବୋର୍ଡରେ କଳାହାଣ୍ଡି ଲେଖାଯାଇଛି । ନମ୍ବର ନ ଥିବା ଏ ଗାଡ଼ି ତ କେବଳ କଳାହାଣ୍ଡି ମହାରାଜାଙ୍କର ହୋଇପାରେ । ଡ୍ରାଇଭରଠାରୁ ବୁଝିବାରେ ଜଣାଗଲା ସେ ସ୍ତ୍ରୀଲୋକ ହେଉଛନ୍ତି କଳାହାଣ୍ଡିର ମହାରାଣୀ- ମହାରାଜା ପି.କେ.ଦେବଙ୍କର ସ୍ତ୍ରୀ । ତା'ପରେ ତାଙ୍କୁ କହିଲି, ''ଆପଣ ତ ନିଜ ପରିଚୟ ଦେଲେନି ?'' ସେ କହିଲେ, ''ଏ ଗାଡ଼ି ଏଠି ମରାମତି ହୋଇପାରିବ ?'' ମୁଁ କହିଲି, ''ଏଠି ଏ ଗାଡ଼ି ମରାମତି ହୋଇପାରିବନି । ବ୍ରହ୍ମପୁରରୁ ଗାଡ଼ି ପାର୍ଟ୍‌ସ ଓ ମେକାନିକ୍ ମଗାଇବାକୁ ପଡ଼ିବ । ତିନି ଚାରିଦିନ ସମୟ ଲାଗିବ । ଆପଣ ଏ କାର୍‌ରେ ସଙ୍ଗେ ସଙ୍ଗେ ପୁରୀ ଚାଲିଯାଆନ୍ତୁ । ମୁଁ ଆପଣଙ୍କ ଗାଡ଼ି ମରାମତି କରି ପୁରୀ ପଠାଇଦେବି ।'' ସେ ମୋତେ ଧନ୍ୟବାଦ ଦେଇ ଚାଲିଗଲେ । ମୁଁ ମଧ୍ୟ ତା'ପରଦିନ ବ୍ରହ୍ମପୁର ଲୋକ ପଠାଇ ଗାଡ଼ି ମରାମତି କରି ପୁରୀ ପଠାଇଦେଲି । ତା'ପରେ ମୁଁ କାର୍ଯ୍ୟବ୍ୟସ୍ତତା ଭିତରେ ସେ କଥା ଭୁଲିଗଲି ।

ମୁଁ ଭାବିଥିଲି, କଥାଟା ସେତିକିରେ ସରିଲା; ମାତ୍ର ଅସୁବିଧାଟା ସେହିଠାରୁ ଆରମ୍ଭ ହେଲା । ମହାରାଣୀ ସେ କଥା ତାଙ୍କ ସ୍ୱାମୀଙ୍କୁ ନିଶ୍ଚୟ କହିଥିବେ । ମହାରାଜା ପି.କେ.ଦେବ ତାଙ୍କର ଅନୁଗତ ଦୟାନିଧି ନାୟକଙ୍କୁ ଡାକି ମୁଁ ମହାରାଣୀଙ୍କ ପରିଚୟ ନ ଜାଣି ସୁଦ୍ଧା ତାଙ୍କୁ କିପରି ସାହାଯ୍ୟ କଲି କହିଲେ ଏବଂ କୁଆଡ଼େ ମୋର ପ୍ରଶଂସା କଲେ । ଦୟାନିଧି ନାୟକ (ତତ୍କାଳୀନ ପୂର୍ତ୍ତମନ୍ତ୍ରୀ) ବଡ଼ ସରଳିଆ ଲୋକ । ମାତ୍ର ମଦ ପିଇଦେଲେ ସେ ସବୁ ଭୁଲିଯାଆନ୍ତି ଏବଂ ଯାହା ଜିଦ୍ କରନ୍ତି, ତା' ନ ହେଲା ଯାଏ ସେ ସନ୍ତୁଷ୍ଟ ହୁଅନ୍ତିନି । ମତେ ଭୁବନେଶ୍ୱର ଡକାଇ ଗୁଡ଼ାଏ ପ୍ରଶଂସା କଲେ ଏବଂ କହିଲେ, ''ମୁଁ ସ୍ଥିର କରିଛି, ତମେ ଭବାନୀପାଟଣା (କଳାହାଣ୍ଡିର ରାଜଧାନୀ) ଯିବ ।'' ସେତେବେଳକୁ ପ୍ରଭାବଶାଳୀ ଏମ୍.ଆଇ.ଏମ୍. ପଟ୍ଟନାୟକ ଭବାନୀପାଟଣାର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥାଆନ୍ତି । ମୋର ଉପର ବ୍ୟାଚ୍‌ର ସୂର୍ଯ୍ୟମଣି ସ୍ୱାଇଁ ଏସ୍. ଡି.ଓ.ଥା'ନ୍ତି । ଏମ୍.ଆଇ.ଏମ୍.ଙ୍କ ପାଖରେ ମୁଁ ରହିବାକୁ ଚାହୁଁ ନ ଥିଲି । କାରଣ ତାଙ୍କର ମୋର ସ୍ୱଭାବ ସମ୍ପୂର୍ଣ୍ଣ ବିପରୀତ । ସେ ବହୁତ ଗର୍ବୀ ଥିଲେ ଏବଂ ରାଜନୀତି କ୍ଷେତ୍ରରେ କ୍ଷମତାର ନିକଟତର ଥିଲେ । ସେ ଭାବିଲେ ଯେ ମୁଁ ଗଲେ କାଳେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ହେବି । ସେତେବେଳେ ସ୍ୱତନ୍ତ୍ର ଜନକଂଗ୍ରେସ ମନ୍ତ୍ରିମଣ୍ଡଳ । ରାଜେନ୍ଦ୍ର ନାରାୟଣ ସିଂହଦେଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ । କଳାହାଣ୍ଡି ମହାରାଜାଙ୍କର ଜଣେ ପାଖଲୋକ ଶ୍ରୀ ଦୟାନିଧି ନାୟକ ଓଡ଼ିଶାର ପୂର୍ତ୍ତମନ୍ତ୍ରୀ ଥାଆନ୍ତି ।

ଡ୍ରାଇଭର ଆହୁରି କହିଲା– ମହାରାଣୀଙ୍କ ଭାଇ (ପୁରୀର ଗଜପତି ମହାରାଜା)ଙ୍କ ଦେହ ଅସୁସ୍ଥ ଥିବାରୁ ସେ ପୁରୀ ଯାଉଥିଲେ, ବାଟରେ ଏ ଅବସ୍ଥା ହେଲା । ମୁଁ ଜିପ୍‌ରେ ଥିବା ଦଉଡ଼ି ସାହାଯ୍ୟରେ ସେ ଗାଡ଼ିକୁ ଟାଣିକରି ଆଣି ବୌଦ ଫେରିଲି । ଫେରିବା ବାଟରେ ବୌଦ୍ଧ ରାଜବାଟୀକୁ ଗଲି । ବୌଦ ରାଜା ନବୀନଦେଓ ମୋର ବନ୍ଧୁ । ତାଙ୍କୁ ସବୁକଥା ବୁଝାଇ ଦୁଇଦିନ ଲାଗି ତାଙ୍କ କାରଟି ମାଗିଲି । ସେତେବେଳକୁ ବୌଦରେ ପେଟ୍ରୋଲ୍ ପମ୍ପ ନ ଥାଏ । ଫୁଲବାଣୀରୁ ବଡ଼ ବ୍ୟାରେଲ୍‌ରେ ୨୦୦ ଲିଟର ତେଲ ଆଣି ଆମେ ମହଜୁଦ୍ କରି ରଖୁ । ତାଙ୍କ ପାଖରେ ଯଥେଷ୍ଟ ପେଟ୍ରୋଲ ନ ଥିବାରୁ ମୁଁ ପେଟ୍ରୋଲ ଦେବି ବୋଲି କହିଲି । ଏସବୁ କାମ କରିବାରେ ଦୁଇ ଘଣ୍ଟା ସମୟ ଚାଲିଯାଇଥାଏ । କ୍ୱାର୍ଟର୍ସକୁ ଫେରି ଦେଖିଲି ସେ ମୋର ଛୋଟ ପୁଅ (ତାକୁ ସେତେବେଳକୁ ଦୁଇ ବର୍ଷ ହୋଇଥାଏ)କୁ କାଖେଇ ବୁଲୁଥାନ୍ତି । ମୋ ସ୍ତ୍ରୀଙ୍କୁ ଡାକି ସେ କିଛି ଖାଇଛନ୍ତି କି ନାହିଁ ପଚାରିଲି । ସେ କହିଲେ – ଯେତେ

କହିଲେ ବି ସେ ଖାଉ ନାହାନ୍ତି । ଖାଲି କହୁଛନ୍ତି– ମୋ' ଭାଇଙ୍କର ଦେହ ଖରାପ । ମତେ ଟିକିଏ ପୁରୀ ପଠାଇଦେବାର ବନ୍ଦୋବସ୍ତ କରନ୍ତୁ । ମୁଁ କହିଲି, ''ସେ କିଏ ଜାଣିଛ ତ ! ସେ କଳାହାଣ୍ଡି ମହାରାଣୀ । ପୁରୀ ଗଜପତିଙ୍କୁ ଦେଖିବାକୁ ଯାଉଛନ୍ତି । ତାଙ୍କ ଅବସ୍ଥା ସାଂଘାତିକ ।''

ଏ ଭିତରେ ଆଉ ଗୋଟିଏ ଘଟଣା ଘଟିଲା । ଚିଫ୍ ଇଞ୍ଜିନିୟର ଥା'ନ୍ତି ପ୍ରବଳପ୍ରତାପୀ ସୟଦ୍ ମମତାଜ ଅଲ୍ଲୀ । ସେ ମୋତେ ଗୋଟେ ଟେଲିଗ୍ରାମ୍ ପଠାଇଲେ, "Meet me without fail" । ମୁଁ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କ ଅନୁମତି ନେଇ ତାଙ୍କୁ ଦେଖାକଲି । ସେ ମୋ'ଠାରୁ ସବୁକଥା ବୁଝିଲେ; ମାତ୍ର ମତେ ଲାଗିଲା ସେ ଯେପରି ମତେ ସନ୍ଦେହ କରୁଛନ୍ତି । ସେ ଭାବିଲେ– ଏସବୁ ମୁଁ ଜାଣିଶୁଣି କରାଉଛି ମନ୍ତ୍ରୀଙ୍କ ପ୍ରିୟପାତ୍ର ହେବାଲାଗି ଓ କଳାହାଣ୍ଡି ଯିବା ଲାଗି । ମାତ୍ର ମୁଁ ସେଠାକୁ ଯିବାକୁ ସମ୍ପୂର୍ଣ୍ଣ ଅନିଚ୍ଛୁକ ବୋଲି ତାଙ୍କୁ କହିଲି । ତା'ପରେ ସେ ମତେ କହିଲେ, ''ମୁଖ୍ୟମନ୍ତ୍ରୀ ତମକୁ ଭେଟିବାକୁ ଚାହୁଁଛନ୍ତି ।'' ମୁଁ କହିଲି, ''ମୁଁ ତ ମୁଖ୍ୟମନ୍ତ୍ରୀଙ୍କୁ ଜାଣି ନାହିଁ କିମ୍ବା ତାଙ୍କ ବାସଭବନ ମଧ୍ୟ ଦେଖି ନାହିଁ ।'' ମତେ ଲାଗିଲା ସେ ମୋ କଥା ଆଦୌ ବିଶ୍ୱାସ କରୁ ନାହାନ୍ତି ଏବଂ ମୁଁ ଭିତରେ ଭିତରେ ରାଜନୀତି କରି ନ ଜାଣିବାର ଅଭିନୟ କରୁଛି ବୋଲି ସେ ଭାବୁଛନ୍ତି। ସେ ଟେଲିଫୋନ୍‌ରେ କାହା ସହିତ କଥା ହେଲେ ଏବଂ ମତେ କହିଲେ, ''କାଲି ସକାଳ ୯ଟାରେ ତମେ ମୁଖ୍ୟମନ୍ତ୍ରୀଙ୍କ କୋଠିରେ ପହଞ୍ଚିବ ଏବଂ ତାଙ୍କ ପ୍ରାଇଭେଟ୍ ସେକ୍ରେଟାରୀକୁ ଦେଖାକରିବ । ସେ ସମସ୍ତ ବନ୍ଦୋବସ୍ତ କରିଦେବେ ।''

ତାଙ୍କ କଥା ଅନୁସାରେ ମୁଁ ପି.ଏମ୍.ଜି. ଛକରେ ଥିବା ମୁଖ୍ୟମନ୍ତ୍ରୀଙ୍କ ସରକାରୀ ବାସଭବନରେ ପହଞ୍ଚିଲି । ମୁଁ ବୌଦରୁ ଆସିଛି ବୋଲି କହିବାମାତ୍ରେ ସେ ମୋତେ କହିଲେ– ମହାରାଜା (ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ) ଆପଣଙ୍କ ଉପରେ ବହୁତ ଖୁସି । ସେ ଉପରେ ଆପଣଙ୍କୁ ଅପେକ୍ଷା କରିଛନ୍ତି ।

ଏତିକି କହି ମତେ ନେଇ ଉପରକୁ ଗଲେ । ତାଙ୍କ ସୁସଜ୍ଜିତ ଡ୍ରଇଂରୁମ୍‌ରେ ମୁଖ୍ୟମନ୍ତ୍ରୀ ଖବରକାଗଜ ପଢୁଥାନ୍ତି । ମୁଁ ନମସ୍କାର କଲାପରେ ମତେ ତାଙ୍କ ପାଖରେ ବସିବାକୁ କହିଲେ ଏବଂ କହିଲେ, ''ଆପଣ ମହାରାଣୀଙ୍କର ଯେଉଁ ଉପକାର କରିଛନ୍ତି, ସେଥିପାଇଁ ଆମେ ବହୁତ ଖୁସି ।'' ମୁଁ କହିଲି, ''ମୁଁ ସେମିତି କିଛି କରି ନାହିଁ । ମୋ ଜାଗାରେ ଯିଏ ବି ଥିଲେ, ସେଇଆ କରିଥାନ୍ତା ।'' ସେ ତାଙ୍କ ସ୍ୱଭାବସୁଲଭ

ଭଙ୍ଗୀରେ ଟିକିଏ ସ୍ମିତହାସ୍ୟ କଲେ । ମହାରାଜା ରାଜେନ୍ଦ୍ର ନାରାୟଣଙ୍କ ଚେହେରା ଅତ୍ୟନ୍ତ ମନୋମୁଗ୍ଧକର । ସେ ସୁନା ଫ୍ରେମର ଚଷମା ପିନ୍ଧୁଥିଲେ ଏବଂ ଦାନ୍ତ ଚିପି ଚିପି ଆସ୍ତେ ଆସ୍ତେ କଥା କୁହନ୍ତି । ତା'ପରେ ମୋ ଲାଗି ଜଳଖିଆ ଆଣିବାଲାଗି ଜଣେ ପରିଚାରିକାକୁ ନିର୍ଦ୍ଦେଶଦେଲେ ଏବଂ ପାଖରେ ବସି ଖୁଆଇଲେ ।

ଜଣେ ସାମାନ୍ୟ ସହକାରୀ ଯନ୍ତ୍ରୀଙ୍କ ପ୍ରତି ଏଭଳି ସହୃଦୟତା ବାସ୍ତବିକ ବିରଳ । କଥାଛଳରେ ମୁଁ କହିଲି, ''ସାର୍ ! ମୁଁ ଢେଙ୍କାନାଳର ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ପଟ୍ଟନାୟକଙ୍କ ନାତି । ଆପଣଙ୍କୁ ମୁଁ ତାଙ୍କ ଘରେ ଆଗରୁ ଦେଖିଛି ।'' ସେ ଆହୁରି ଖୁସିହେଲେ ଏବଂ ଭବିଷ୍ୟତରେ ଦରକାର ହେଲେ ତାଙ୍କୁ ଦେଖାକରିବାକୁ କହିଲେ । ପ୍ରସିଦ୍ଧ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ତାଙ୍କ ବିଷୟରେ ଲେଖିଛନ୍ତି, ''He was a common man among the Maharaja and a Maharaja among the common man.'' ମୁଁ ତାଙ୍କଠାରୁ ବିଦାୟ ନେଇଆସିଲି । ତା'ପରେ ତାଙ୍କ ସଙ୍ଗେ ମୋର ଆଉ ଦେଖାହୋଇନି ।

ବୌଦ ଫେରିବାର କେତେଦିନ ପରେ ମୋର ଅଚାନକ ବଦଳି ଆଦେଶ ଆସିଲା । ମୋର ବଦଳି ହୋଇଥାଏ ଭବାନୀପାଟଣା ଓ ସୂର୍ଯ୍ୟମଣିବାବୁଙ୍କର ବୌଦକୁ ।

ମୁଁ ପୁଣି ମମ୍‌ତାଜ୍ ଅଲ୍ଲୀଙ୍କୁ ଦେଖା କରିବାରେ ସେ କହିଲେ, ''ତୁମେ ରାଜନୀତି କରୁଛ । ମତେ ମନାକରି ସିଆଡ଼େ ମନ୍ତ୍ରୀଙ୍କୁ ଯିବାଲାଗି କହିଦଉଛ ।'' ମୁଁ କହିଲି, ''ସାର୍, ଆପଣ ମତେ ଭୁଲ୍ ବୁଝୁଛନ୍ତି । ମୁଁ ବର୍ତ୍ତମାନ ମନ୍ତ୍ରୀଙ୍କୁ ଦେଖାକରି କହିଦେବି ଯେ, ମୁଁ ଭବାନୀପାଟଣା ଯିବାଲାଗି ଇଚ୍ଛୁକ ନୁହେଁ । ସେ ମୋ ମୁହଁକୁ ଚାହିଁଲେ ଏବଂ ମନ୍ତ୍ରୀଙ୍କ ସହିତ ଟେଲିଫୋନ୍‌ରେ କଥା ହୋଇ ମତେ ସଙ୍ଗେ ସଙ୍ଗେ ଯିବାକୁ କହିଲେ । ମୁଁ ଗଲାମାତ୍ରେ ଦୟାନିଧି ନାୟକ ମତେ ତାଙ୍କ ଶୋଇବାଘରକୁ ଡାକିନେଲେ ଏବଂ ମୁଁ କେବେ ଭବାନୀପାଟଣାରେ ଜଏନ୍ କରୁଛି ବୋଲି ପଚାରିଲେ । ମୁଁ କହିଲି, ''ସାର୍, ମୋ ସ୍ତ୍ରୀଙ୍କ ଦେହ ଅସୁସ୍ଥ, ବେଶୀ ବାଟ ଜିପ୍‌ରେ ନ ଯିବା ଲାଗି ଡାକ୍ତର ପରାମର୍ଶ ଦେଉଛନ୍ତି ।'' ସେ ବହୁତ ବାଧ କରିବା ସତ୍ତ୍ୱେ ମୁଁ ରାଜି ନ ହେବାରୁ କହିଲେ, ''ଠିକ୍ ଅଛି । ମୁଁ ମମ୍‌ତାଜ ଅଲ୍ଲୀଙ୍କୁ କହିଦେଉଛି ସେ ନିର୍ଦ୍ଦେଶ ସ୍ଥଗିତ ରଖିବାକୁ । ମାତ୍ର ନିର୍ଦ୍ଦେଶ କ୍ୟାନସେଲ୍ ହେବନି । ତମ ସ୍ତ୍ରୀଙ୍କ ଦେହ ଭଲ ହେଲେ ତମେ ସେଠି ଜଏନ୍ କରିବ ।'' ଘରପୋଡ଼ିରୁ କୁଟାଖିଏ ପାଇଲେ ବି ଲାଭ ଭାବି

ମୁଁ ରାଜିହେଲି ଏବଂ ଚିଫ୍ ଇଞ୍ଜିନିୟର୍‌ଙ୍କୁ ଦେଖାକରି ସବୁକଥା କହିଲି । ତଥାପି ମତେ ଲାଗିଲା ସେ ମତେ ସନ୍ଦେହ ଚକ୍ଷୁରେ ଦେଖୁଛନ୍ତି ।

ଅଳ୍ପ କିଛି ମାସ ପରେ, ଭବାନୀପାଟଣା ଯିବା ବନ୍ଦ ହୋଇ ଚିଫ୍ ଇଞ୍ଜିନିୟର ଅଫିସରେ Leave Reserve Asst. Engineer ଭାବରେ ପୋଷ୍ଟିଂ ହେଲା ଏବଂ ମୋ ଜାଗାରେ ମୋର ସହପାଠୀ ଯଦୁନାଥ ମହାପାତ୍ର ଯୋଗଦେଲେ । ମତେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଲଳିତମୋହନ ପାତ୍ର କହିଲେ, ''ମୃତ୍ୟୁଞ୍ଜୟବାବୁ ! ଆପଣ ବଡ଼ ସରଳ ଲୋକ । ଆପଣ ଯଦୁବାବୁଙ୍କୁ ଡାକି ଟିକରପଡ଼ାରେ ଭୋଜି କରି ବୁଲେଇଲେ । ସିଏ ମମ୍‌ତାଜ ଅଲ୍ଲୀଙ୍କୁ ଧରି ଆପଣଙ୍କୁ ବିଦାକଲେ । ପି.ଡବ୍ଲ୍ୟୁ.ଡି.ରେ ବହୁତ ବାଜେ ରାଜନୀତି ହୁଏ । ଭବିଷ୍ୟତରେ ଟିକିଏ ଜଗିକରି ଚଳିବେ ।''

ଏପରିଭାବେ ମୋର ଦୁର୍ଯୋଗକୁ ସବୁଠାରୁ ଭଲ ସବ୍‌ଡିଭିଜନ୍ ପାଇ ମଧ୍ୟ ମୁଁ ଲିଭ୍ ରିଜର୍ଭରେ ଯୋଗଦେବାକୁ ବାଧ୍ୟ ହେଲି; ମାତ୍ର ସେଭଳି ଦୁର୍ଦ୍ଦିନରେ ମଧ୍ୟ ମୁଁ ମହାରାଜାଙ୍କୁ ଦେଖା କରିବାକୁ ଯାଇ ନାହିଁ । କାରଣ ଚାକିରି ଜୀବନରେ ଧରାଧରି ବା ରାଜନୀତି କରିବି ନାହିଁବୋଲି ମୁଁ ମନେ ମନେ ପ୍ରତିଜ୍ଞା କରିଥିଲି । ସେଥିଲାଗି ଭବିଷ୍ୟତରେ ଅନେକଥର ଗାଡିଅଧିଆ ବଦଳି ହେଇଛି; ମାତ୍ର ସେଥିଲାଗି ମୋ' ମନରେ ତିଳେମାତ୍ର ଦୁଃଖ ନାହିଁ । ମହାରାଜା ରାଜେନ୍ଦ୍ର ନାରାୟଣଙ୍କ ସହୃଦୟତା ମୋର ଚିରକାଳ ମନେରହିବ ।

□□□

# ରାଜାସାହେବ

ବଡ଼ମ୍ବା ରାଜାଙ୍କ ପୂରା ନାମ ଶ୍ରୀ ନାରାୟଣଚନ୍ଦ୍ର ବୀରବର ମଙ୍ଗରାଜ ମହାପାତ୍ର । ଓଡ଼ିଶାର ୨୬ ଗଡ଼ଜାତ ରାଜ୍ୟ ମଧ୍ୟରୁ ଆୟତନ ଦୃଷ୍ଟିରୁ ଏହା ଗୋଟିଏ ଛୋଟିଆ ରାଜ୍ୟ । ବସ୍ତୁତଃ ମୋର ସାଙ୍ଗ ଅମୂଲ୍ୟ (ଅମୂଲ୍ୟରତ୍ନ ନନ୍ଦ, ଆଇ.ଏ.ଏସ୍.)ର ଗାଁ ତିଗିରିଆ ନ ଥିଲେ ବଡ଼ମ୍ବା ଓଡ଼ିଶାର କ୍ଷୁଦ୍ରତମ ଷ୍ଟେଟ୍‌ର ମାନ୍ୟତା ପାଇଥା'ନ୍ତା । ଏ ନେଇ ଅନେକବାର ଆମର ଥଟ୍ଟା-ପରିହାସ ହୋଇଛି ।

ଭାରତବର୍ଷ ସ୍ୱାଧୀନତା ପାଇବାବେଳେ ମୋର ବୟସ ଛଅ ବର୍ଷ । ତେଣୁ ଓଡ଼ିଶାରେ ପ୍ରଜା ଆନ୍ଦୋଳନ, ଇନ୍‌କିଲାବ୍ ଜିନ୍ଦାବାଦ୍ ଧ୍ୱନି ଦେଇ ଲୋକମାନେ ପ୍ରୋସେସନ୍‌ରେ ଯିବାର ସ୍ମୃତି ବହୁତ କ୍ଷୀଣ । ତା'ର ବର୍ଷକ ପରେ ସର୍ଦ୍ଦାର ପଟେଲଙ୍କ ଦୃଢ଼ ନେତୃତ୍ୱ ଯୋଗୁଁ ଓଡ଼ିଶାର ୨୬ ଜଣଯାକ ରାଜା କଟକର ଲାଟସାହେବଙ୍କ କୋଠିରେ ୧୪ ଡିସେମ୍ବର ୧୯୪୭ ମସିହାରେ (ବର୍ତ୍ତମାନର ଶିଶୁଭବନ) ଓଡ଼ିଶା ସହିତ ମିଶ୍ରଣ ଚୁକ୍ତିରେ ଦସ୍ତଖତ କରିଦେଲେ । ପୂର୍ଣ୍ଣାଙ୍ଗ ଓଡ଼ିଶା ପ୍ରଦେଶ ଗଠିତ ହେଲା ।

ମୁଁ ପରେ ବଡ଼ ହୋଇ ଅଫିସର ହେଲାପରେ ଓଡ଼ିଶାର ବିଭିନ୍ନ ଜାଗାରେ ବିଶେଷତଃ ମୋଗଲବନ୍ଦି ଅଞ୍ଚଳରେ ପୋଷ୍ଟିଂ ହେବା ସମୟରେ ରାଜାମାନଙ୍କ ବିଷୟରେ ବହୁତ ଅତିରଞ୍ଜିତ କଥା ଶୁଣିଛି, ଯଥା– ଗଡ଼ଜାତର ଝିଅବୋହୂମାନଙ୍କର ଇଜ୍ଜତ ଲୁଣ୍ଠନ ହେଉଥିଲା । ପ୍ରଜାମାନେ କର ଭାରରେ ବୁଡ଼ି ରହିଥିଲେ । ରାଜାମାନେ ମଦ୍ୟପାନ କରି ମଉଜ ମଜଲିସ୍‌ରେ କାଳ କାଟୁଥିଲେ ଇତ୍ୟାଦି ଇତ୍ୟାଦି । ପ୍ରସିଦ୍ଧ ଔପନ୍ୟାସିକ ବିଭୂତି ପଟ୍ଟନାୟକଙ୍କ 'ଚପଳଛନ୍ଦା' ପରି ବହି ଏସବୁ କଳ୍ପନାକୁ ଖୋରାକ୍ ଯୋଗାଉଥିଲା । ଗଡ଼ଜାତମାନଙ୍କରେ ଯେ କାଁ ଭାଁ ଅତ୍ୟାଚାର ହେଉ ନ ଥିଲା ତା' ମୁଁ କହୁନି; ମାତ୍ର ଆଜିକାଲି ଯେପରି ଖବରକାଗଜର ପୃଷ୍ଠା ଓଲଟାଇଲେ ନାରୀଧର୍ଷଣ, ନାବାଳିକା କନ୍ୟା ପ୍ରତି ବଳାତ୍କାରର ଚାଞ୍ଚଲ୍ୟକର ବିବରଣୀ ବାହାରୁଛି - ତା' ତୁଳନାରେ ଗଡ଼ଜାତରେ ହେଉଥିବା ଅତ୍ୟାଚାର କିଛି ନୁହେଁ, କହିଲେ ଚଳେ । ବସ୍ତୁତଃ ଏ ଲେଖା ପଢ଼ିବା ପରେ ପାଠକ ମନରେ ସେ ସମୟର ତଥାକଥିତ ଅନ୍ଧାରି ରାଜ୍ୟ ବିଷୟରେ ସମ୍ୟକ୍ ଧାରଣା ଆସିବ ।

ନାରାୟଣଚନ୍ଦ୍ର ବଡ଼ାମ୍ବାରେ ପ୍ରାଇମେରୀ ଶିକ୍ଷା ସମାପ୍ତ କରି 'ରାଜକୁମାର' କଲେଜ ରାୟପୁରକୁ ପଢ଼ିବାପାଇଁ ଗଲେ । ସେ ଯେ କେବଳ ଜଣେ ପ୍ରତିଭାଶାଳୀ ଛାତ୍ର, ଉଭୟ ଓଡ଼ିଆ ଏବଂ ଇଂରାଜୀରେ ସୁବକ୍ତା ଥିଲେ ତା' ନୁହେଁ, ଫୁଟବଲ ଖେଳରେ ତାଙ୍କର ପ୍ରଚଣ୍ଡ ଦକ୍ଷତା ଥିଲା । ରାଜ୍ୟ ଗଲାପରେ ମଧ ସବୁଦିନ ଠିକ୍ ଚାରିଟାବେଳେ ସେ ଫୁଟବଲ ପଡ଼ିଆକୁ ଯାଉଥିଲେ ଏବଂ ଆମ ଘର ଦୁଆରେ ଗାଡ଼ି ରଖି ମୋର ପିତାଙ୍କୁ (ଯେ କି ଜଣେ ଭଲ ଫୁଟବଲ ଖେଳାଳି ଥିଲେ) ସାଙ୍ଗରେ ନେଉଥିଲେ । ସେ ସମୟରେ ବଡ଼ାମ୍ବା ଫୁଟବଲ ଟିମ୍‌ର ବହୁତ ସୁନାମ ଥିଲା ଏବଂ ଓଡ଼ିଶାର ପ୍ରସିଦ୍ଧ ରେଭେନ୍ସା କଲେଜକୁ ହରାଇ ଆଣିଥିବା ସିଲ୍‌ଡ ଆମ କ୍ଲବ୍ ଘରର ଶୋଭାବର୍ଦ୍ଧନ କରୁଥିଲା । ରାୟପୁରରୁ ଶିକ୍ଷା ସମାପ୍ତ କରି ସେ ଆହ୍ଲାବାଦରେ ବି.ଏ. ପଢୁଥିଲେ । ତାଙ୍କ ପଢ଼ିବା ସମୟର ଗୋଟେ ଘଟଣା । ଦିନେ ରାତିରେ ସେ ଶୋଇଥିବା ଅବସ୍ଥାରେ କେତେଜଣ ଡକାୟତ ତାଙ୍କ ରୁମ୍‌ରେ ପଶିଲେ । ସେ ଏକାକୀ ତାଙ୍କ ପଢ଼ା ଚୌକି ସାହାଯ୍ୟରେ ସେମାନଙ୍କୁ ପ୍ରତିରୋଧ କରିଥିଲେ । ଉପରେ ଗଣ୍ଡଗୋଳ ଶୁଣି ତଳେ ଶୋଇଥିବା ଦେଓ ସାହେବ (ପରବର୍ତ୍ତୀ କାଳରେ ଓ.ଏମ୍.ପି.ର ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ) ଗୁଳି ଫୁଟାଇବାରୁ ଡକାୟତମାନେ ପଳେଇ ଯାଇଥିଲେ । ନିଜ ଜୀବନରକ୍ଷା କରିଥିବା ସେ ଚୌକିକୁ ରାଜଗାଦିରେ ବସିଲାବେଳେ ସେ ସାଙ୍ଗରେ ନେଇଆସିଥିଲେ । ପିତାଙ୍କର ଅକାଳ ମୃତ୍ୟୁ ଯୋଗୁଁ ବି.ଏ. ପାସ୍ କରିବା ପୂର୍ବରୁ କର୍ତ୍ତବ୍ୟର ଆହ୍ୱାନରେ ସେ ବଡ଼ାମ୍ବା ଫେରିଆସିଥିଲେ ଏବଂ ରାଜଗାଦିରେ ବସିଥିଲେ । ସେ ଦେଓଗଡ଼ର ସୁପ୍ରସିଦ୍ଧ ରାଜା ସାର୍ ସୁଢ଼ଳଦେବଙ୍କ ନାତୁଣୀଙ୍କୁ ବିବାହ କରିଥିଲେ ।

ରାଜାସାହେବ ବହୁତ ନିର୍ଭୀକ ଓ ସୁଦକ୍ଷ ଶିକାରୀ ଥିଲେ । ମୋର ମନେଅଛି, ଥରେ ସେ ଗୋଟିଏ ବିରାଟ ମହାବଳ ବାଘ ମାରିଥିଲେ ଏବଂ କଚେରୀରେ ସେ ମହାବଳକୁ ଦେଖିବାପାଇଁ ସ୍କୁଲରୁ ଆମେ ସବୁ ପିଲା ଯାଇଥିଲୁ । ବର୍ତ୍ତମାନ ଓଡ଼ିଶାର ମହାବଳ ବାଘ ଲୁପ୍ତପ୍ରାୟ ଏବଂ ଏହି ଦୁର୍ଲଭ ପ୍ରାଣୀକୁ ସମ୍ପୂର୍ଣ୍ଣ ଧ୍ୱଂସମୁଖରୁ ରକ୍ଷା କରିବାପାଇଁ ଭାରତ ସରକାର ବ୍ୟାଘ୍ର ସଂରକ୍ଷଣ ଯୋଜନା ପ୍ରସ୍ତୁତ କରୁଛନ୍ତି ।

ପରେ ମୁଁ କିଲ୍ଲା ଭିତରେ କ୍ୟାଣ୍ଟନମେଣ୍ଟ ଏସ୍.ଡି.ଓ. ଥିଲାବେଳେ ଥରେ କଟକ କ୍ଲବ୍ ଭିତରକୁ ଯାଇଥିଲି । ଏହା ଓଡ଼ିଶାର ସର୍ବ ପୁରାତନ କ୍ଲବ୍ । ପ୍ରବେଶ ଦ୍ୱାରରେ ଯେଉଁ ବିରାଟ ବାଘ ମୁଣ୍ଡଟି ଶୋଭାପାଉଛି, ତାକୁ ବଡ଼ାମ୍ବା ରାଜା ଦାନ କରିଥିବାର ଦେଖିଲି । ତାଙ୍କର ଆଉ ଗୋଟେ ଭଲ ଗୁଣ ହେଲା ଅନ୍ୟ ରାଜାମାନଙ୍କ ପରି ସେ

ମଦ୍ୟପାନ କରୁ ନ ଥିଲେ ଏବଂ ସମଗ୍ର ବଡ଼ମ୍ବା ଷ୍ଟେଟ୍ ସୀମା ଭିତରେ ମଦ୍ୟପାନ ଏବଂ ବିକ୍ରି ଉପରେ କଡ଼ା ନିଷେଧ ଜାରି କରିଥିଲେ; ମାତ୍ର ଗଭୀର ପରିତାପର ସହିତ କହିବାକୁ ପଡୁଛି ଯେ ମୋ ପିଲାଦିନର ସେ ବଡ଼ାମ୍ବା ଆଉ ନାହିଁ । ରାସ୍ତାକଡ଼ରେ ବିଦେଶୀ ମଦଦୋକାନ ଖୋଲାଯାଇଛି । ଗାଁ'କୁ ଗଲାବେଳେ ଏ ଦୃଶ୍ୟ ଦେଖିଲେ ନାରାୟଣ ଚନ୍ଦ୍ରଙ୍କର ତେଜୋଦୀପ୍ତ ମୁଖମଣ୍ଡଳ ମୋ ଆଖି ଆଗରେ ଭାସିଉଠେ ।

ରାଜାସାହେବ ନିରଳସ ବ୍ୟକ୍ତି ଥିଲେ । କାର୍ତ୍ତିକ ମାସରେ ବଡ଼ିଭୋରୁ ଗାଧୋଇ ପାଧୋଇ ତାଙ୍କର ଇଷ୍ଟଦେବ ଗୋପୀନାଥଙ୍କ ପାଖରେ ପୂଜାର୍ଚ୍ଚନା ତଥା ଚଅଁର ପକାଉଥିବାର ଦୃଶ୍ୟ ମୁଁ ନିଜ ଆଖିରେ ଦେଖିଛି । ସେ କେବଳ ଖେଳିବାବେଳେ ପୋଷାକ ପିନ୍ଧିବା ଛଡ଼ା ସଦାବେଳେ କୁଞ୍ଚ କରା ଧୋତି ଓ ଚଦର ପିନ୍ଧୁଥିଲେ । ପ୍ରବଳ ଥଣ୍ଡାରେ ମଧ ଦିନରେ ଦୁଇ ଥର ସ୍ନାନ କରୁଥିଲେ । ସେ ଅତ୍ୟନ୍ତ ସମୟାନୁବର୍ତ୍ତୀ ଥିଲେ । ଠିକ୍ ଦଶଟା ବେଳେ ନିଜ ଗାଡ଼ିରେ କଚେରିକୁ ଯାଉଥିଲେ ଏବଂ ଦିନ ଦୁଇଟା ପର୍ଯ୍ୟନ୍ତ ପ୍ରଜାମାନଙ୍କର ହାରିଗୁହାରି ବୁଝୁଥିଲେ । ସେ ଅତ୍ୟନ୍ତ ଲୋକପ୍ରିୟ ଥିଲେ । ସ୍ୱାଧୀନତା ପରେ ବଲାଙ୍ଗୀରର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଯେତେବେଳେ ଆସି ତାଙ୍କୁ ସ୍ୱତନ୍ତ ଦଳ ପକ୍ଷରୁ ଏମ.ଏଲ୍.ଏ. ହେବାକୁ ଅନୁରୋଧ କଲେ, ସେ ନମ୍ରତାର ସହିତ ତାଙ୍କୁ ପ୍ରତ୍ୟାଖ୍ୟାନ କଲେ; ମାତ୍ର ତାଙ୍କ ଅନୁରୋଧରେ ସ୍ୱତନ୍ତ ପାର୍ଟିର ଏମ୍.ଏଲ୍.ଏ. ଲାଗି ନିଜର ଜଣେ ଅନୁଗତ ବୃନ୍ଦାବନ ସାହୁଙ୍କୁ ଠିଆ କରାଇଲେ । କହିବା ବାହୁଲ୍ୟ, ତାଙ୍କ ଲୋକପ୍ରିୟତା ଯୋଗୁଁ ସେ ବିପୁଳ ଭୋଟରେ କଂଗ୍ରେସ ପ୍ରାର୍ଥୀଙ୍କୁ ହରାଇ ବିଧାନସଭାକୁ ନିର୍ବାଚିତ ହେଲେ । ସେଦିନଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସେ ତାଙ୍କୁ ଥଟ୍ଟାରେ 'ମାନ୍ୟବର' ବୋଲି ଡାକୁଥିଲେ । ତାଙ୍କର ଗୋଟିଏ ସୁନ୍ଦର ଲାଇବ୍ରେରୀ ଥିଲା । ମୁଁ ମାଟ୍ରିକ୍ୟୁଲେସନ୍ ପାସ୍ କଲାପରେ ଛୁଟିରେ କେତେଥର ସେ ଲାଇବ୍ରେରୀକୁ ଯାଇଛି । ତାଙ୍କ ବଡ଼ପୁଅ କୃଷ୍ଣଚନ୍ଦ୍ର ମଙ୍ଗରାଜ ମହାପାତ୍ର ମତେ ବହୁତ ସ୍ନେହ କରୁଥିଲେ । କେତେ ଉପାଦେୟ ପୁସ୍ତକ ମୁଁ ସେ ଲାଇବ୍ରେରୀରୁ ଆଣିଛି । ସବୁ ବହିର ଆରମ୍ଭରେ ଏବଂ ଶେଷରେ ତାରିଖ ସହିତ ତାଙ୍କର ଦସ୍ତଖତ ଥିଲା; ଯାହାକି ଅନ୍ୟ ରାଜାମାନଙ୍କ ପାଖରେ କିମ୍ବା ଆଜିର ଉଚ୍ଚପଦସ୍ଥ ଅଫିସରଙ୍କ ପାଖରେ ଦେଖାଯାଏ ନାହିଁ ।

ମାତ୍ର ବିଧିର ବିଧାନ ବିଚିତ୍ର । ଏଭଳି ଜଣେ ଜ୍ଞାନୀ, ଗୁଣୀ ଜନପ୍ରିୟ ରାଜାଙ୍କର ତିରୋଧାନ ଅକାଳରେ ହେଲା । ୧୯୫୪ ମସିହା ଅକ୍ଟୋବର ୧୫ ତାରିଖ ରାତ୍ରି ୮ଟାରେ ମାତ୍ର ୪୧ ବର୍ଷ ବୟସରେ ସାମାନ୍ୟ ଗୋଟେ ପେନ୍‌ସିଲିନ୍ ଇଞ୍ଜେକ୍‌ସନ୍ ନବାର ପାଞ୍ଚ ମିନିଟ୍ ଭିତରେ ତାଙ୍କର ମୃତ୍ୟୁ ହେଲା । କଟକରୁ ସୁବିଖ୍ୟାତ ଡାକ୍ତର ରଘୁନାଥ ସାହୁ (ପରବର୍ତ୍ତୀକାଳରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜର ଅଧ୍ୟକ୍ଷ) ଏହାକୁ 'ଲକ୍ଷେକରେ ଗୋଟେ ଘଟଣା ଏବଂ ଅତ୍ୟନ୍ତ ଦୁର୍ଭାଗ୍ୟପୂର୍ଣ୍ଣ' ବୋଲି ବର୍ଣ୍ଣନା କରିଥିଲେ । ହଜାର ହଜାର ବଡ଼ାମ୍ବାବାସୀ ଅଶ୍ରୁପୂର୍ଣ୍ଣ ନୟନରେ ତାଙ୍କର ପ୍ରିୟ ରାଜାସାହେବଙ୍କୁ ଶେଷ ବିଦାୟ ଦେଇଥିଲେ; ମାତ୍ର ବଡ଼ମ୍ବାବାସୀଙ୍କ ହୃଦୟରେ ତାଙ୍କ ସ୍ମୃତି ଚିରଦିନ ଅମର ରହିବ ।

''ସର୍ବେ ଚଳିବେ କାଳବଳେ,
ଯଶ ରହିବ ମହୀତଳେ ।''

❑❑❑

# ଓଡ଼ିଶାର ପରମବନ୍ଧୁ
# ଡକ୍ଟର ଅଯୋଧ୍ୟାନାଥ ଖୋସଲା

ଡକ୍ଟର ଖୋସଲାଙ୍କୁ ପ୍ରଥମେ ଦେଖିଲି ବୁର୍ଲା ଇଞ୍ଜିନିୟରିଂ କଲେଜରେ ପାଠ ପଢ଼ିବାବେଳେ । କୌଣସି ଏକ ସରକାରୀ କାମରେ ସେ ବୁର୍ଲା ଆସିଥା'ନ୍ତି ଏବଂ ଆମ ହଷ୍ଟେଲ ଆଗଦେଇ 'ଅଶୋକ ନିବାସ'କୁ ଯାଉଥା'ନ୍ତି । ହଠାତ୍ ତାଙ୍କ କାର୍ ଆମ ହଷ୍ଟେଲ ଫାଟକ ଆଗରେ ଅଟକିଲା । ମାଟିଆ ପ୍ୟାଣ୍ଟ, ଧଳା ଶାର୍ଟ ଓ ମୁଣ୍ଡରେ ଗୋଟେ ଟୋପି ପିନ୍ଧି ଗାଡ଼ିରୁ ଓହ୍ଲାଇଲେ । ପୂରା ଇଞ୍ଜିନିୟରିଂ ପୋଷାକ । ଗାଡ଼ିର ବନେଟ୍ ଉପରେ Topo sheet ବିଛା ହୋଇଥାଏ ଓ ସେ ଗୋଟେ ପେନ୍‌ସିଲ୍ ଧରି ସାଙ୍ଗରେ ଥିବା ହୀରାକୁଦ ବନ୍ଧର ବଡ଼ ବଡ଼ ଇଞ୍ଜିନିୟରମାନଙ୍କୁ କ'ଣ ଗୋଟେ ବୁଝାଉଥା'ନ୍ତି । ସତେଯେପରି ଜଣେ ପ୍ରଫେସର ତା' ପିଲାଙ୍କୁ ପାଠ ପଢ଼ାଉଛି । ସେଇ ମୁହୂର୍ତ୍ତରୁ ସେ ଆମମାନଙ୍କର ହୀରୋ ହୋଇଗଲେ ।

ସେ ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ । ସେ ଓଡ଼ିଶାକୁ ବିଶ୍ୱ-ଦରବାରରେ ପହଞ୍ଚାଇବାର ସ୍ୱପ୍ନ ଦେଖୁଥାଆନ୍ତି । ସେ ଯାଇ ଧରିଲେ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁଙ୍କୁ, ''ମୋର ଜଣେ ଦୂରଦର୍ଶୀ ଆଧୁନିକ Technocrat ଦରକାର, ଯିଏକି ଏ ଦରିଦ୍ର ପ୍ରଦେଶର ଭାଗ୍ୟ ବଦଳେଇ ଦେଇପାରିବ । ଖୋସଲା ସାହେବ ସେତେବେଳେ ଥା'ନ୍ତି Central Water Powers Commission ର ଚେୟାରମ୍ୟାନ୍ । ସେ ପ୍ରଥମେ ରାଜ୍ୟପାଳ ହେବାକୁ ମଙ୍ଗୁ ନ ଥିଲେ । ମାତ୍ର ବିଜୁବାବୁଙ୍କ ବାଧ୍ୟବାଧକତା ଓ ନେହରୁଙ୍କ ପରାମର୍ଶକ୍ରମେ ଶେଷରେ ରାଜି ହେଲେ ।

ଆରମ୍ଭ ହେଲା ବିଜୁବାବୁଙ୍କ ସ୍ୱପ୍ନ 'Decade of Destiny'. ଦଶ ବର୍ଷରେ ଓଡ଼ିଶାର ଭାଗ୍ୟ ବଦଳେଇ ଦେବାର ଯୋଜନା, ଦୁଇଟି ପ୍ରଚଣ୍ଡ ପ୍ରତିଭାର ଅପୂର୍ବ ମିଳନ ।

୧୯୬୩ ମସିହା ଡିସେମ୍ବର ୨ ତାରିଖରେ ମୁଁ ସହକାରୀ ଯନ୍ତ୍ରୀ ହିସାବରେ 'ପାରାଦ୍ୱୀପ ପୋର୍ଟ ପ୍ରୋଜେକ୍ଟ'ରେ ଯୋଗଦେଲି । ଖୋର୍ଦ୍ଧାରୁ ପ୍ରାୟ ୩୦୦ ଟ୍ରକ୍ ସାହାଯ୍ୟରେ ବଡ଼ ବଡ଼ ପଥର ପାରାଦ୍ୱୀପ ପଠାଯାଉଥାଏ । ପ୍ରଥମେ ବ୍ଲାଷ୍ଟିଂ

ହୋଇ ପାହାଡ଼ ଫଟାଯାଏ । ତା'ପରେ ୧୦/୧୨ ଟନ୍ ଓଜନର ଗୋଟିଏ ପଥରକୁ ଲୁହା ଶିକୁଳି ସାହାଯ୍ୟରେ ଟ୍ରକ୍‌ରେ ଲଦାଯାଇ weigh bridge ରେ ଓଜନ କରି ପାରାଦ୍ୱୀପ ପଠାଯାଏ । ସେଠାରେ ଆଉଥରେ ଓଜନ କଲାପରେ ପଥରକୁ ସମୁଦ୍ରରେ ପକାଯାଏ । ଏହିପରି ଭାବରେ Break Water ତିଆରି କରାଗଲା । Chief Engineer cum Chief Administrator ଥାଆନ୍ତି ମାଡ୍ରାସର ଶ୍ରୀନିବାସନ୍ ସାହେବ । ଡକ୍ଟର ଖୋସଲା ଓ ବିଜୁବାବୁ ମୁଣ୍ଡରେ ଗୋଟେ ଲେଖାଏଁ ଟୋପି ପିନ୍ଧି ପ୍ରବଳ ଖରାରେ Break Water କାମ ତଦାରଖ କରିବାର ମୁଁ ନିଜ ଆଖିରେ ଦେଖିଛି । ବିଜୁବାବୁ ମାତ୍ର ଅଢ଼େଇ ବର୍ଷ ମୁଖ୍ୟମନ୍ତ୍ରୀ ରହିଲେ । ମାତ୍ର ତା' ଭିତରେ ତିଆରି ହେଲା ଏକ୍ସପ୍ରେସ୍ ହାଇୱେ ଡୁବୁରୀଠାରୁ ପାରାଦ୍ୱୀପ ପର୍ଯ୍ୟନ୍ତ ସିଧାସଳଖ ରାସ୍ତା, ଯାହା ଉପରେ ୧୮ ଚକିଆ ଯାନ ସବୁ ଘୋରଘର୍ଘର ଶବ୍ଦ କରି ଲୁହାପଥର ବୋହିଲେ । ତିଆରି ହେଲା ସୁନାବେଡ଼ାରେ Aero Engine Factory Project ଏବଂ H.A.L. (Hindustan Aeronautics Limited) । ଏ ପ୍ରୋଜେକ୍ଟରେ ମୁଁ ୧୯୬୫ ଠାରୁ ୧୯୬୯ ପର୍ଯ୍ୟନ୍ତ ଦୀର୍ଘ ୫ ବର୍ଷ କାମ କରିଥିଲି । ସେ ସମୟଟାକୁ ଇଞ୍ଜିନିୟରମାନଙ୍କ ସୁବର୍ଣ୍ଣଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆରମ୍ଭ ହେଲା ଭୁବନେଶ୍ୱରରେ ସୈନିକ ସ୍କୁଲ, ବୁର୍ଲାରେ ଇଞ୍ଜିନିୟରିଂ କଲେଜ, ରାଉରକେଲାରେ ରିଜିଓନାଲ୍ ଇଞ୍ଜିନିୟରିଂ କଲେଜ ଇତ୍ୟାଦି ।

୧୯୬୯ ମସିହାରେ ସୁନାବେଡ଼ାରୁ ବଦଳି ହୋଇ ମୁଁ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ହୋଇ ବୌଦ ଆସିଲି । ସେତେବେଳକୁ ବୌଦ-ସୋନପୁର ରାସ୍ତା ସବୁଦିନିଆ ହୋଇ ନ ଥାଏ । ମନମୁଣ୍ଡାଠାରେ ତେଲ୍ ନଦୀ ଉପରେ ପୋଲ ତିଆରି ଚାଲୁଥାଏ । ଦିନେ ସାଲ୍‌କୀ ନବୀ ପୋଲ ପାଖରେ ଥିବା ଅସ୍ଥାୟୀ ଅଫିସ୍‌ରେ ବସି କାମ ଦେଖୁଥାଏ । ସେତେବେଳେ ସାଲ୍‌କୀବାଘ, ମେହୁରାଣୀ ନଦୀରେ ଅସ୍ଥାୟୀ କାଠପୋଲରେ ଗାଡ଼ି ଯାଉଥାଏ । ହଠାତ୍ ଗୋଟେ ଆମ୍ବାସାଡର ଗାଡ଼ି ଅଫିସ୍ ଆଗରେ ଅଟକିଲା । ଗାଡ଼ିରୁ ବାହାରିଲେ ଭାରତର ସ୍ୱନାମଧନ୍ୟ ଇଞ୍ଜିନିୟର ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଅଯୋଧ୍ୟାନାଥ ଖୋସଲା । ମୁଣ୍ଡରେ ସେଇ ଟୋପି । ମୁଁ ପ୍ରଣାମ କରି ଚୌକିରେ ବସାଇବା ପରେ କହିଲେ, ''ମୁଁ ଏଇବାଟେ ବଲାଙ୍ଗୀର ଯାଉଥିଲି । ସେଠାରେ ଡି.ଏ.ଭି. ସ୍କୁଲ, କାମ ଚାଲିଛି (ଖୋସଲା ସାହେବ ସେତେବେଳେ ଡି.ଏ.ଭି. ଅନୁଷ୍ଠାନର ସର୍ବଭାରତୀୟ ଉପସଭାପତି ଥା'ନ୍ତି । ଜିପ୍ ଦେଖି ଜାଣିଲି ଜଣେ

ଇଞ୍ଜିନିୟର ନିଶ୍ଚୟ ଥିବେ । ଗୋଟି ଗୋଟି କରି ପୋଲର ପ୍ଲାନ୍ ଦେଖିଲେ । କାର୍ଯ୍ୟର ଅଗ୍ରସର କାହିଁକି ସନ୍ତୋଷଜନକ ହେଉନି ଏବଂ ସରିବ କେବେ – ସବୁ ଟିକିନିଖି କରି ବୁଝିଲେ । ମୁଁ ଅର୍ଥାଭାବ କଥା କହିବାରୁ କହିଲେ, "ଅର୍ଥର ଅଭାବ ନାହିଁ, ଉପଯୁକ୍ତ ବିନିଯୋଗର ଅଭାବ, ଯଥା – ମୁଁ ରାଜ୍ୟପାଳ ଥିବାବେଳୁ ଜୋର୍ ଦେଇ କହିଆସୁଛି– କଟକ ପରେ ମହାନଦୀରେ ଯଦି କେଉଁଠି ଦ୍ୱିତୀୟ ପୋଲ ହେବାକଥା, ତାହାହେଲେ ଏହି ବୌଦଠାରେ 'କିଆକଟା'ରେ ହେବା ଉଚିତ । ତାହାହେଲେ ସମ୍ବଲପୁର-ବ୍ରହ୍ମପୁର ଭିତରେ ଦୂରତା ପାଖାପାଖି ୧୦୦ କିଲୋମିଟର କମିଯିବ । ମାତ୍ର ତା' ନ ହୋଇ ତମ ମନ୍ତ୍ରୀମାନେ ମାମୁ ଘରକୁ ଯିବାଲାଗି ମହାନଦୀରେ ପୋଲ କରୁଛନ୍ତି । ଓଡ଼ିଶାର ଏଇଟା ଦୁର୍ଭାଗ୍ୟ । ସବୁଥିରେ ରାଜନୀତି ।" ଏବେ ମହାନଦୀରେ ୯ଟା ଜାଗାରେ ପୋଲ ହେଲାଣି । 'କିଆକଟା'ରେ ମଧ୍ୟ ହୋଇସାରିଲାଣି । ସୁବର୍ଣ୍ଣପୁର (ବାଙ୍କି) ପୋଲ ତିଆରି ଚାଲିଛି । ଖୋସଲା ସାହେବଙ୍କ ସ୍ୱପ୍ନ ସାକାର ହେବାକୁ ଯାଉଛି ।

ତା'ପରେ ତାଙ୍କ ସଙ୍ଗେ ଦେଖା କଳିଙ୍ଗା ଡାକବଙ୍ଗଳାରେ । ମୁଁ ସେତେବେଳକୁ ଫୁଲବାଣୀରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥାଏ । ଜୁନିଅର ଇଞ୍ଜିନିୟର ଥାଆନ୍ତି ପାତ୍ରବାବୁ । ସେ ସେଠାରେ ଅନେକଦିନ ରହିଥିବାରୁ ତାଙ୍କୁ ଆମେ ସମସ୍ତେ ତାଙ୍କୁ 'କଳିଙ୍ଗା ପାତ୍ର' ବୋଲି ଡାକୁଥିଲୁ । ସେ କଳିଙ୍ଗାର ଡି.ଏ.ଭି. ସ୍କୁଲ କାମ ତଦାରଖ କରୁଥାଆନ୍ତି । ଖୋସଲା ସାହେବ ତାଙ୍କୁ ଭାରି ଭଲପାଉଥା'ନ୍ତି । ଥରେ ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି ଚିଫ୍ ଇଞ୍ଜିନିୟର ଥିଲାବେଳେ ତା'ର ବଦଳି ହେଲା । ଡି.ଏ.ଭି. ବାଲାଙ୍କର ଭାଳେଣି ପଡ଼ିଲା, କାମ କିଏ ଦେଖିବ । କଥାଟା ଦିଲ୍ଲୀରେ ଖୋସଲା ସାହେବଙ୍କ କାନକୁ ଗଲା । ସେ ଏ.ବି. ମହାନ୍ତିଙ୍କୁ ଗୋଟେ ଚିଠି ଲେଖିଲେ, "I will treat it as a personal favoure if the transfer order of Sri Patro is cancelled." । କହିବାବାହୁଲ୍ୟ, ଚିଠି ପାଇବାର ଦୁଇ ଘଣ୍ଟା ପରେ ତାଙ୍କର ବାତିଲ ହେବା ଅର୍ଡର ବାହାରିଗଲା । ଓଡ଼ିଶାର ସମସ୍ତ ତୁଙ୍ଗ ଇଞ୍ଜିନିୟର ତାଙ୍କୁ ଅତ୍ୟନ୍ତ ଭକ୍ତି ଓ ଶ୍ରଦ୍ଧା କରୁଥିଲେ ।

ଖୋସଲା ସାହେବ ଓଡ଼ିଶାକୁ ଅନ୍ତରର ସହିତ ଭଲପାଉଥିଲେ । ନିଜ ହାତରୁ ପଇସା ଖର୍ଚ୍ଚ କରି ରାଉରକେଲାରେ ତାଙ୍କର ସ୍ୱର୍ଗତ ପତ୍ନୀଙ୍କ ନାମରେ ସୁଶୀଳାବତୀ ପଲିଟେକ୍‌ନିକ୍ ସ୍ଥାପନ କରିଥିଲେ । ଏପରିକି ଏଥିଲାଗି ତାଙ୍କ ସ୍ୱର୍ଗତ ପତ୍ନୀଙ୍କ ଅଳଙ୍କାର

ମଧ୍ୟ ଦାନ କରିଥିଲେ । ଖୋସଲା ସାହେବ କଳିଙ୍ଗା ଡାକବଙ୍ଗଳାରେ ରହୁଥିବାବେଳେ ଥରେ କହିଲେ, "ଆଗେ ମୁଁ ଓଡ଼ିଶା ଆସିବାବେଳେ ତମ ସରକାର ମତେ ରାଜ୍ୟ ଅତିଥି କରୁଥିଲେ ଏବଂ ଗାଡ଼ି ଖଣ୍ଡେ ଦଉଥିଲେ; ମାତ୍ର ଏବେ ସେଟା ଉଠାଇ ଦେଇଛନ୍ତି ।" ନୂତନ ଓଡ଼ିଶାର ଅନ୍ୟତମ ବିନ୍ଧାଣି ଅଯୋଧ୍ୟାନାଥ ଖୋସଲାଙ୍କ ପ୍ରତି ସରକାରଙ୍କର ଏ ପ୍ରକାର ବୈମାତୃକ ମନୋଭାବ ମତେ ଗଭୀର ଦୁଃଖ ଦେଲା । ମାତ୍ର ଆମେମାନେ ପୂଜ୍ୟପୂଜାରେ ସଦାବେଳେ ପଛୁଆ ବୋଲି ମୁଁ ଜଣେ ବନ୍ଧୁଙ୍କଠାରୁ ଶୁଣିଛି । ଥରେ କିଛି ଲୋକ ସେ କଲେଜ ଲାଗି ଆଉକିଛି ଟଙ୍କା ଆଣିବାଲାଗି ତାଙ୍କ ପାଖକୁ ଦିଲ୍ଲୀ ଯାଇଥିଲେ । ସେ ତାଙ୍କ ବୋହୂଙ୍କୁ ଚେକ୍ ବହି ଆଣିବାପାଇଁ କହିଲେ ଏବଂ ସଙ୍ଗେ ସଙ୍ଗେ ୧୦,୦୦୦ ଟଙ୍କା ଚେକ୍ ଲେଖିଦେଲେ । ସେମାନେ ଫେରିଲାବେଳେ ତାଙ୍କ ବୋହୂ କହିଲେ, "ଆପଣମାନେ କିଛି ଭାବିବେ ନାହିଁ; ତାଙ୍କ ଆକାଉଣ୍ଟରେ ଆଉ ଟଙ୍କା ନାହିଁ । ଆମେ ତାଙ୍କୁ ସେଟା ଜଣାଉ ନାହୁଁ । ସେ ଶୁଣିଲେ, ମନଦୁଃଖ କରିବେ । ଆପଣମାନେ ଚେକ୍‌ଟା ଫେରାଇଦିଅନ୍ତୁ । ନଚେତ୍ ସେଟା ବ୍ୟାଙ୍କରୁ ଫେରିଆସିବ ।"

ଖୋସଲା ସାହେବ ଆଉ ନାହାନ୍ତି । ସମସ୍ତେ ତ ଦିନେ ନା ଦିନେ ଯିବେ । ମାତ୍ର ଓଡ଼ିଶାବାସୀଙ୍କ ହୃଦୟରେ ତାଙ୍କର ଅମ୍ଳାନ ସ୍ମୃତି ଚିରଦିନ ଜାଜ୍ୱଲ୍ୟମାନ ହୋଇ ରହିବ ।

❑❑❑

# ଗିରୀଶ ଚନ୍ଦ୍ର ପଟ୍ଟନାୟକ
## ବୁଢ଼ା ସାର୍

ଗିରୀଶ ସାରଙ୍କ ପୂରା ନାମ ଅନେକେ ଜାଣି ନ ଥିବେ । କାରଣ ସମସ୍ତେ ତାଙ୍କୁ ବୁଢ଼ାସାର୍ ନାଁ'ରେ ଡାକୁଥିଲେ । ତାଙ୍କ ସାଙ୍ଗରେ ମୋର ପ୍ରଥମେ ଚିହ୍ନା ହୁଏ, ମୁଁ କରଞ୍ଜିଆରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥିବାବେଳେ । ଥରେ ମୁଁ କାର୍ଯ୍ୟ ଉପଲକ୍ଷେ ଠାକୁରମୁଣ୍ଡା ଗସ୍ତରେ ଯାଇଥାଏ । କାର୍ଯ୍ୟସାରି ଡାକବଙ୍ଗଳା ବାରଣ୍ଡାରେ ବସିଥାଏ । ଏଇ ସମୟରେ କଳା ହୋଇ ଜଣେ ବାଙ୍ଗରା ଭଦ୍ରଲୋକ ଗେଟ୍ ଖୋଲି ଭିତରକୁ ଆସିଲେ । ମୁଣ୍ଡର ବାଳ ସମ୍ପୂର୍ଣ୍ଣ ଧଳା । ମୁହଁରେ ଅଳ୍ପ ଦାଢ଼ି । ପରିଧାନରେ ଆଣ୍ଠୁ ଲୁଚୁ ନ ଥିବା ଖଦଡ଼ ଧୋତି ଓ ଖଦଡ଼ ହାଫ୍ ଶାର୍ଟ । ପୂରା ଗାନ୍ଧିବାଦୀ । ପରିଚୟ ଦେଇ କହିଲେ - ସେ ଠାକୁରମୁଣ୍ଡା ଆଦିବାସୀ ହାଇସ୍କୁଲର ପ୍ରଧାନଶିକ୍ଷକ । ସ୍କୁଲର କିଛି ମରାମତି କାମ ଲାଗି ମତେ ଅନୁରୋଧ କରିବାକୁ ଆସିଛନ୍ତି । ତାଙ୍କ ଚେହେରାରେ କ'ଣ ଏପରି ଗୋଟେ ଆକର୍ଷଣୀୟ ବ୍ୟକ୍ତିତ୍ୱ ଥିଲା କେଜାଣି, ପ୍ରଥମ ଦେଖାରେ ହିଁ ମତେ ଭଲଲାଗିଲା । ନିକଟରେ ଉପସ୍ଥିତ ଥିବା ଓଭରସିୟର ପାଣିବାବୁଙ୍କୁ ତା' ପରଦିନ ସ୍କୁଲକୁ ଯାଇ ଆବଶ୍ୟକୀୟ ମରାମତିର ଗୋଟେ ପ୍ଲାନ୍ ଏବଂ ଏଷ୍ଟିମେଟ୍ କରି ସାତ ଦିନ ମଧ୍ୟରେ ମତେ ଅଫିସ୍‌ରେ ଦେବାଲାଗି ନିର୍ଦ୍ଦେଶ ଦେଲି ଏବଂ ମାସକ ମଧ୍ୟରେ କାମ ଆରମ୍ଭ ହେଲେ ମୁଁ ଆରଥରକୁ ଠାକୁରମୁଣ୍ଡା ଆସିଲେ ସ୍କୁଲ ପରିଦର୍ଶନରେ ଯିବାର ପ୍ରତିଶ୍ରୁତି ଦେଲି । ତା'ପରେ ବୋଧହୁଏ ଆଉ ଥରେ ଦୁଇଥର ଦେଖା ହୋଇଥିବ । କିଛିଦିନ ପରେ ମୁଁ ବଦଳି ହୋଇ କଟକ ଚାଲିଆସିଲି ।

ମୋର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟରକୁ ପ୍ରମୋସନ ହେବା ପରେ ମୋର ପ୍ରଥମେ କେନ୍ଦ୍ରାପଡ଼ା ଏକ୍ସପ୍ରେସ୍‌ୱେ ଡିଭିଜନ୍, ତା'ପରେ କଟକ ମ୍ୟୁନିସିପାଲିଟିରେ, ସେଠାରୁ ବ୍ରିଜ୍ କନଷ୍ଟ୍ରକସନ୍‌ରେ ପୋଷ୍ଟିଂ ହେଲା । ସେଠି ଆଉ ସରକାରୀ ଘର ମିଳିଲାନି । ଗୋଟେ ଭଡ଼ାଘର ଖୋଜା ଚାଲିଲା । ଦିନେ କଥା ଛଳରେ ମୋର ଆଜୀବନ ଶୁଭାକାଂକ୍ଷୀ ଓଡ଼ିଶାର ପୂର୍ବତନ ଚିଫ୍ ଜଷ୍ଟିସ୍ ଶ୍ରୀଯୁକ୍ତ ଗତିକୃଷ୍ଣ ମିଶ୍ରଙ୍କୁ ମୁଁ ଭଡ଼ାଘର କଥା କହିଲି । ସେ ସଙ୍ଗେ ସଙ୍ଗେ କହିଲେ, ''ଆମ 'ସାନକୁନୁ' (ଶ୍ରୀ ପି.କେ. ମିଶ୍ର,

ଆଇ.ପି.ଏସ୍. ଏବଂ ତାଙ୍କ ପୁତୁରା) ମହାନଦୀ ବିହାରରେ ଗୋଟେ ଘର କରିଛି । ମୁଁ ତାକୁ କହିଦଉଛି ତମେ ସେଠି ରହିବ।'' ସତକୁ ସତ ଚାରି / ପାଞ୍ଚ ଦିନ ପରେ ମୁଁ ଦିଲ୍ଲୀରୁ ତାଙ୍କଠାରୁ ଫୋନ୍ କଲ୍ ପାଇଲି । ସେ ସେତେବେଳକୁ ଦିଲ୍ଲୀରେ ଆଇ.ବି. ରେ ଆଇ.ଜି. ହିସାବରେ କାମ କରୁଥା'ନ୍ତି । ତାଙ୍କ ସ୍ତ୍ରୀ ଶ୍ରୀମତୀ ରାନୁ ରଥ ଓଡ଼ିଶା ରେଡକ୍ରସ ସୋସାଇଟିର ସେକ୍ରେଟାରୀ । ବିନା ଉପକ୍ରମଣିକାରେ ମତେ କହିଲେ, ''କକେଇ (ଶ୍ରୀଯୁକ୍ତ ଗତିକୃଷ୍ଣ ମିଶ୍ର) ମତେ ଆପଣଙ୍କ ବିଷୟରେ ସବୁ କହିଛନ୍ତି । ଆପଣ ୧ ତାରିଖରୁ ଘରେ ରହନ୍ତୁ । ମୋର ଜଣେ ଅଫିସର ସେ ଘର ବୁଲାଇ ଦେଖାଇଦେବ ।'' ଭଡ଼ା କଥା ପଚାରିବାରୁ କହିଲେ, ''ସେ ବିଷୟରେ ଚିନ୍ତା କରନ୍ତୁ ନାହିଁ । ସରକାର ଯାହା ଭଡ଼ା ବାବଦକୁ ଦେବେ ଆପଣ ମତେ ଦେବେ ।'' ଏହିପରି ଭାବରେ ପଦେ କଥାରେ ମୁଁ ସେ ଘରେ ନିଜ ଘର ନ ସରିବା ପର୍ଯ୍ୟନ୍ତ ଦୀର୍ଘ ପାଞ୍ଚ ବର୍ଷ ରହିଲି । ଜୀବନରେ ଅନେକ ଲୋକଙ୍କ ସଂସ୍ପର୍ଶରେ ଆସିଛି; ମାତ୍ର ଶ୍ରୀ ଓ ଶ୍ରୀମତୀ ମିଶ୍ରଙ୍କ ପରି ଭଦ୍ରବ୍ୟକ୍ତି ଆଜିକାଲି ଦୁନିଆରେ ବିରଳ । ଏ ଘର କଥା ଲେଖିବାର କାରଣ ହେଲା ବୁଢ଼ାସାରଙ୍କ ସହିତ ଆମର ପୁନଃସମ୍ପର୍କ ସ୍ଥାପନ ଯାହାକି ତାଙ୍କ ମୃତ୍ୟୁପର୍ଯ୍ୟନ୍ତ ରହିଲା । ସେ ଘରେ ରହିବାର କିଛିଦିନ ପରେ ମୋର ପ୍ରତିବେଶୀ ବିଶ୍ୱାଳବାବୁ, ଯିଏକି ଟେଲିଫୋନ୍ ଡିପାର୍ଟମେଣ୍ଟରେ ଚାକିରି କରୁଥାନ୍ତି, ମୋ ଘରକୁ ବୁଲି ଆସିଥିଲେ । ମୋ' ସ୍ତ୍ରୀଙ୍କର ପିଲାମାନଙ୍କୁ ପଢ଼ାଇବାରେ ବହୁତ ଆଗ୍ରହ ଥିଲା । ଯୋଗକୁ ସେ କ୍ୱାର୍ଟର୍ସରେ ଗୋଟେ ଆଉଟ୍ ହାଉସ୍ ଥିଲା । ବୁଢ଼ା ସାର୍ ସେତେବେଳକୁ ଚାକିରିରୁ ଅବସର ନେଇ ବିଶ୍ୱାଳବାବୁଙ୍କ ଘରେ ରହୁଥିଲେ । ସେ ବହୁଗ୍ରାମ ସ୍କୁଲରେ ଶିକ୍ଷକତା କରୁଥିଲାବେଳେ ବିଶ୍ୱାଳବାବୁ ତାଙ୍କ ଛାତ୍ର ଥିଲେ । ତାଙ୍କର ଦୁଇ ପୁଅ ଓ ଦୁଇ ଝିଅ । ଝିଅ ଦୁଇ ଜଣ ମୋ ସ୍ତ୍ରୀଙ୍କ ପାଖରେ ଟିଉସନ୍ ହେଲେ । ବୁଢ଼ାସାର୍ ସେଠି ଅଙ୍କ ପଢ଼ାନ୍ତି । କହିବାକୁ ଗଲେ ବିଶ୍ୱାଳବାବୁଙ୍କ ଦୁଇ ପୁଅଙ୍କୁ ସେ ମଣିଷ କରିଛନ୍ତି । ବଡ଼ ପୁଅ ସୁନୀଲ ଜଣେ ମେଧାବୀ ଛାତ୍ର ଏବଂ ବର୍ତ୍ତମାନ ଷ୍ଟୁଆର୍ଟ ସାଇନ୍ସ କଲେଜରେ ଫିଜିକ୍ସର ଅଧ୍ୟାପକ । ସେ ଘରେ ଗୋଟେ କୋଚିଂ କ୍ଲାସ୍ ଖୋଲିଛି ଏବଂ ସେଥିରେ ଆଡ୍‌ମିଶନ୍ ପାଇବାପାଇଁ ଛାତ୍ରମାନଙ୍କ ମଧ୍ୟରେ ପ୍ରବଳ ପ୍ରତିଯୋଗିତା । ସାନଟା T.C.S.ରେ ଯୋଗଦେଇ ଜର୍ମାନୀରେ ଅଛି । ବିଶ୍ୱାଳବାବୁ ମତେ ଅନେକଥର କହିଛନ୍ତି ଯେ ସେ ନିଜେ ଓ ତାଙ୍କର ପରିବାର ଆଜି ଯାହା ହୋଇଛନ୍ତି, ସବୁ ବୁଢ଼ାସାରଙ୍କ ଯୋଗୁଁ । ତାଙ୍କର ଏପରି ଅନେକ ଗୁଣମୁଗ୍ଧ ଛାତ୍ରଛାତ୍ରୀ ଓଡ଼ିଶାରେ ଏବଂ ବିଦେଶରେ ଅଛନ୍ତି ।

ସାର୍ ତାଙ୍କ ଛାତ୍ରମାନଙ୍କର ଖବର ରଖିବା ସଙ୍ଗେ ସଙ୍ଗେ ତାଙ୍କ ପିଲାମାନଙ୍କ ପଢ଼ାପଢ଼ି ଉପରେ ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ । ଯେତେବେଳେ କୌଣସି ପିଲାର ଅଙ୍କ କିମ୍ବା ଇଂରେଜୀରେ କିଛି ଦୁର୍ବଳତା ଦେଖୁଥିଲେ, ସେ ବିନା ନିମନ୍ତ୍ରଣରେ ସେହି ଛାତ୍ର ଘରେ ମାସ ମାସ ଧରି ରହୁଥିଲେ ଏବଂ ତା'ର ପରୀକ୍ଷା ସରିବା ପରେ କଟକ ଫେରୁଥିଲେ । ମୁଁ ଅନେକ ଦିନ ଯାଏ ଜାଣି ନ ଥିଲି, ତାଙ୍କ ସ୍ତ୍ରୀ ସେଇ ମହାନଦୀ ବିହାରରେ ଗୋଟେ ଭଡ଼ାଘରେ ରହୁଛନ୍ତି ବୋଲି । ମାତ୍ର ବିଶ୍ୱାଳବାବୁଙ୍କ ଘର ବସ୍ତୁତଃ ତାଙ୍କର ହେଡ୍‌କ୍ୱାର୍ଟର ଥିଲା ଏବଂ ସେଠାରୁ ସେ ବିଭିନ୍ନ ଜାଗାକୁ ଯାଉଥିଲେ ।

ସାର୍‌ଙ୍କର formality ବୋଲି କୌଣସି ଜିନିଷ ନ ଥିଲା । ଥରେ ଥରେ ସକାଳୁ ଗାଧୋଇ ପାଧୋଇ ତାଙ୍କ ଖଦଡ଼ ମୁଣାକୁ କାନ୍ଧରେ ପକାଇ ଚାଲିଆସିବେ । ମୁଁ ଟୁର୍‌ରେ ଯିବାର ଥିଲେ, ଖାଉଥିବାର ଦେଖିଲେ ପଚାରିବେ- କ'ଣ ହୋଇଛି ? ଯଦି ଶୁଣିବେ ଉପମା ସମ୍ବର ବା ଚଟଣି ହୋଇଛି, ସେ... କହିବେ, ''ବହୁତ ଭଲ ମୁଁ ଏଠି ଖାଇବି ।'' ତା' ପରେ ପାଖ ଚୌକିରେ ବସିବେ । ତାଙ୍କର ଏ ପ୍ରକାର ଆନ୍ତରିକତା ମତେ ଏବଂ ମୋ ସ୍ତ୍ରୀଙ୍କୁ ବହୁତ ଭଲଲାଗେ । ତା'ପରେ ସେ କୁଆଡ଼େ ଯାଆନ୍ତି ଏବଂ କେତେବେଳେ ଫେରନ୍ତି, ତା' କେବଳ ଭଗବାନ୍‌ଙ୍କୁ ଜଣା। ବେଳେବେଳେ ରାତିରେ କେଉଁ ପୁରାତନ ଛାତ୍ର ଘରେ ପଡ଼ଉ ପଡ଼ଉ ରହିଯା'ନ୍ତି । ଦୁଇ / ତିନି ଦିନ ପରେ ଫେରନ୍ତି । ବିଶ୍ୱାଳବାବୁଙ୍କ ସ୍ତ୍ରୀ ରାତି ଦଶଟା ଯାଏ ଚାହିଁକି ରହିଥିବେ । ଯଦି ତାଙ୍କୁ ମୁଁ ପଚାରେ,''ସାର୍, ଆପଣ ଏମିତି ନ କହି ରହିଯାଉଛନ୍ତି ବିଚରା ବିଶ୍ୱାଳ ଏବଂ ତା' ସ୍ତ୍ରୀ ହଇରାଣ ହଉଛନ୍ତି,'' ସେ ପିଲାଙ୍କ ପରି ଟିକିଏ ହସିଦେବେ ଏବଂ କହିବେ, ''ଜଣେଇବାକୁ ମନେପଡ଼ିଲାନି ।''

ପ୍ରକୃତରେ ସେ ଥିଲେ ଏକ ପ୍ରକାର ଜ୍ଞାନପାଗଳ । ଥିବେ ଥିବେ, ହଠାତ୍ ଦୁଇ ମାସ ତାଙ୍କର ପତ୍ତା ମିଳିବନି । ଫେରିବା ପରେ କହିବେ ତାଙ୍କର ଜଣେ ପୁରାତନ ଛାତ୍ରର ଝିଅ ମାଟ୍ରିକ୍ ପରୀକ୍ଷା ଦେବ । ସେ ଅଙ୍କରେ ବହୁତ ଦୁର୍ବଳ । ମତେ ଗୋଟେ ଚିଠି ଲେଖିଥିଲା । ତେଣୁ ବଲାଙ୍ଗୀର ଚାଲିଗଲି । ବିଶ୍ୱାଳବାବୁଙ୍କ ଦୁଇ ଝିଅ ଅଙ୍କରେ ଏବଂ ଇଂରାଜୀରେ ବହୁତ ଦୁର୍ବଳ ଥିଲେ । ମୋ ସ୍ତ୍ରୀ ତାଙ୍କୁ ଇଂରାଜୀ ପଢ଼ାଏ । ସେ ଜଣକୁ ବଡ଼ହୁଣ୍ଡୀ ଏବଂ ଆରଜଣକୁ ସାନହୁଣ୍ଡୀ ବୋଲି ଡାକେ । ଯୋଗକୁ ସେ ଦୁଇଜଣଯାକ ମାଟ୍ରିକ୍ ପାସ୍ କରିଗଲେ । ସେଟା କେବଳ ବୁଢ଼ାସାର୍ ଏବଂ ମୋର ସ୍ତ୍ରୀଙ୍କର ପରିଶ୍ରମ ଯୋଗୁଁ ସମ୍ଭବପର ହେଲା ବୋଲି ବିଶ୍ୱାଳବାବୁ ମତେ ଅନେକଥର

କହିଛନ୍ତି । ମୁଁ ଚାକିରିରୁ ଅବସର ନେଲାପରେ ମଧ୍ୟ ସେ ମୋ' ଘରକୁ ଆସନ୍ତି । ଥରେ କହିଲେ, ''ସାର୍, ମାଡାମ୍ ଶୁଣିଲେ ଖୁସି ହେବେ 'ସାନ୍‌ହୁଣ୍ଡୀ' ଏବେ ଦିଲ୍ଲୀରେ ପିଏଚ୍.ଡି. କରୁଛି ।'' ସେ ଜଣେ ଅତ୍ୟନ୍ତ ପରୋପକାରୀ ଓ କୃତଜ୍ଞ ଲୋକ, ଯାହାକି ଆଜିକାଲିର ଦୁନିଆରେ ବହୁତ କମ୍ ଦେଖିବାକୁ ମିଳେ ।

ସାର୍‌ଙ୍କର ଅଗଣିତ ଛାତ୍ରଛାତ୍ରୀ ଓଡ଼ିଶାରେ ଏବଂ ଓଡ଼ିଶା ବାହାରେ ସୁନାମ ଅର୍ଜନ କରିଛନ୍ତି । ସେ ବହୁଗ୍ରାମ ସ୍କୁଲରେ ଶିକ୍ଷକତା କରିବାର ବହୁ ଆଗରୁ ଉଦଳାର କୁଶଳଦାରେ କିଛିଦିନ ଶିକ୍ଷକତା କରିଥିଲେ । ବର୍ତ୍ତମାନ ଓଡ଼ିଶାର ଉଚ୍ଚପଦସ୍ଥ ଆଇ.ଏ.ଏସ୍. ଅଫିସର ଶ୍ରୀ ଅରବିନ୍ଦ ବେହେରାଙ୍କ ବାପା ନିଜ ଖର୍ଚ୍ଚରେ ନିଜ ଜାଗାରେ ସେ ସ୍କୁଲ ସ୍ଥାପନ କରିଥିଲେ । ସାର୍‌ଙ୍କଠାରୁ ଶୁଣିଛି, ସେ ଜଣେ ଆଦର୍ଶ-ସ୍ଥାନୀୟ ଲୋକ ଥିଲେ ଏବଂ ଶେଷପର୍ଯ୍ୟନ୍ତ ସ୍କୁଲରେ ନିଜେ ପାଠ ପଢ଼ାଉଥିଲେ ଏବଂ ପରେ ଥରେ ଉଦଳାକୁ ପ୍ରଧାନମନ୍ତ୍ରୀ ଗ୍ରାମ୍ୟ ସଡ଼କ ଯୋଜନାରେ ଯିବାକୁ ପଡ଼ିଲା । ସେତେବେଳେ ସେ ସ୍କୁଲ ପରିଦର୍ଶନ କରି ମୁଁ ବହୁତ ଆନନ୍ଦିତ ହେଲି ।

ସେଇ ସମୟର ଘଟଣା । ବୀରଭଦ୍ର ସିଂ ବୋଲି ଗୋଟିଏ ଆଦିବାସୀ ପିଲା ସେ ସ୍କୁଲରେ ସାର୍‌ଙ୍କ ଛାତ୍ର ଥିଲା । ତାକୁ ସାର୍ ବହୁତ ସାହାଯ୍ୟ କରିଥିଲେ । ପରେ ବିଜୁ ପଟ୍ଟନାୟକଙ୍କବେଳେ ସେ ଓଡ଼ିଶାର ମନ୍ତ୍ରୀ ହେଲେ । ଥରେ ମୋ ସାଙ୍ଗରେ ଭୁବନେଶ୍ୱର ଗଲାବେଳେ ସାର୍ ତାଙ୍କୁ ବୀରଭଦ୍ରବାବୁଙ୍କ ଘରେ ଛାଡ଼ିବାକୁ କହିଲେ । ଆମେ ପ୍ରାୟ ୯ଟା ବେଳକୁ ମନ୍ତ୍ରୀଙ୍କ ଘରେ ପହଞ୍ଚିଲୁ । ତାଙ୍କ ସ୍ତ୍ରୀ ଆସି ସାର୍‌ଙ୍କୁ ମୁଣ୍ଡିଆ ମାରି ଆମକୁ ଚା' ଜଳଖିଆ ଦେଲେ; ମାତ୍ର ବିଜୁ ପଟ୍ଟନାୟକଙ୍କ ଡାକରା ପାଇ ସେ ସକାଳୁ ସକାଳୁ ନ ଖାଇ ଚାଲିଯାଇଛନ୍ତି ଶୁଣି ତାଙ୍କ ସ୍ତ୍ରୀଙ୍କ ଉପରେ ବହୁତ ବିରକ୍ତ ହେଲେ । ଏତିକିବେଳେ ବୀରଭଦ୍ରବାବୁ ପହଞ୍ଚିଲେ ଏବଂ ସାର୍‌ଙ୍କୁ ମୁଣ୍ଡିଆ ମାରିଲେ । ମୁଁ ରାଇରଙ୍ଗପୁର ଏସ୍.ଡି.ଓ. ଥିବାବେଳୁ ତାଙ୍କ ସଙ୍ଗେ ପରିଚୟ ଥାଏ । ମତେ ଦେଖି ବହୁତ ଖୁସି ହେଲେ । ତାଙ୍କର ପେଟବେମାରି ଥିବାରୁ ସକାଳୁ ଖାଲି ପେଟରେ ଗଲେ ସେଟା ବଢ଼ିବ । କିଛି ନ ହେଲେ ଚୁଡ଼ା, ଚିନି ଟିକିଏ ଖାଇକରି ଯିବାକୁ ତାଙ୍କୁ ତାଗିଦ୍ କଲେ । ମତେ ଲାଗିଲା ସାର୍ ତାଙ୍କୁ ସେ କୁଶଳଦା ସ୍କୁଲର ପିଲା ବୋଲି ଭାବୁଛନ୍ତି । ସେ ଯେ ଯା' ଭିତରେ ଓଡ଼ିଶାର ଜଣେ ମନ୍ତ୍ରୀ ହେଲେଣି, ସେ କଥା ତାଙ୍କର ଖିଆଲ ନାହିଁ । ଛାତ୍ରମାନଙ୍କ ଉପରେ ତାଙ୍କର ପ୍ରଗାଢ଼ ସ୍ନେହ ଏବଂ କର୍ତ୍ତୃତ୍ୱ ରହୁଥିଲା । ସେମାନେ ମଧ୍ୟ ତାକୁ ବିନା ଦ୍ୱିଧାରେ ସ୍ୱୀକାର କରୁଥିଲେ । ଆଜିକାଲି ଗୁରୁଛାତ୍ରର ଏ ପ୍ରକାର ସମ୍ପର୍କ ଆଉ ଦେଖିବାକୁ ମିଳୁନି ।

ଥରକର ଘଟଣା । ସାର୍ ପଇସାପତ୍ର ବାବଦରେ ସମ୍ପୂର୍ଣ୍ଣ ଉଦାସୀନ । ଟିଉସନ୍ କରି କାହାଠାରୁ ପଇସାଟିଏ ନବା ମୁଁ ତାଙ୍କର କୌଣସି ଛାତ୍ରଛାତ୍ରୀମାନଙ୍କଠାରୁ ଶୁଣିନି । ବରଂ ବହୁ ଗରିବ ମେଧାବୀ ପିଲାଙ୍କୁ ଘରେ ରଖି ଖୁଆଇପିଆଇ ପାଠପଢ଼ାଇ ମଣିଷ କରିଛନ୍ତି । ତା' ଭିତରୁ କିଏ ଗାଈ ଚରାଉଥିଲା ତ କିଏ ବିଡ଼ି ବଳୁଥିଲା । ସେମାନେ ଓ ତାଙ୍କ ପିଲାମାନେ ବର୍ତ୍ତମାନ ଓଡ଼ିଶାର ବିଶିଷ୍ଟ ବ୍ୟକ୍ତି; କିନ୍ତୁ ତାଙ୍କୁ ପଚାରିଲେ କହିବେ ପଇସା ବହୁତ ଅଛି । ତାଙ୍କ ପିଲାମାନେ (ପୁରାତନ ଛାତ୍ର / ଛାତ୍ରୀଙ୍କୁ ପିଲା ବୋଲି ଡାକନ୍ତି) ମଝିରେ ମଝିରେ ଟଙ୍କା ପଠାଉଛନ୍ତି, ଏପରିକି ଆମେରିକାରୁ ମଧ୍ୟ ଡଲାରରେ ଟଙ୍କା ଆସୁଛି । ଥରେ ମୋ' ମନରେ ଆସିଲା ଏଟା ସତ ନା ମିଛ ପରୀକ୍ଷା କରିବା ।

ମହାନଦୀ ବିହାର ପାଖରେ ଅପର୍ଣ୍ଣା ନଗରରେ ମୋର ଘର ତିଆରି ଚାଲିଥାଏ । ମଝିରେ ମଝିରେ ସରକାରୀ ଲୋନ୍ ଅଭାବରୁ ବର୍ଷ ବର୍ଷ କାମ ବନ୍ଦ ହୋଇପଡୁଥାଏ । ଥରେ କାଠ ନ ମିଳିବାରୁ ଦୁଇ ବର୍ଷ କାମ ବନ୍ଦ ହେଲା । ଘର କାମ ଶୀଘ୍ର ସାରିବାକୁ ସାର୍ ବାରମ୍ବାର ମତେ ତାଗିଦ୍ କରୁଥା'ନ୍ତି । ସତେଯେପରି ମୋର ନୁହେଁ, ତାଙ୍କ ନିଜ ଘର ତିଆରି ହେଉଛି । ଥରେ ମୋ' ସାଙ୍ଗରେ ଜଳଖିଆ ଖାଇବାବେଳେ ପଚାରିଲେ, 'ପଟ୍ଟନାୟକବାବୁ' ଆପଣ ଟିକିଏ ଚିନ୍ତିତ ଜଣାପଡୁଛନ୍ତି । ମୋର ଟିକିଏ ମଜା କରିବାକୁ ଇଚ୍ଛା ହେଲା । ଜୀବନରେ ମୁଁ କାହାଠାରୁ ଲୋନ୍ ନେଇନି, ଦରକାର ବେଳେ ଅନ୍ୟକୁ ଦେଇଛି । ମୁଁ ମିଛରେ କହିଲି, ''ସାର୍, ଜି.ପି.ଏଫ୍. ରୁ ଲକ୍ଷେ ଟଙ୍କା ଉଠାଇବା ପାଇଁ ଦେଇଛି, ସାଙ୍କସନ୍ ଅର୍ଡର ଆସିନି । ଲୁହାଛଡ଼ କିଣିବାକୁ ପଡ଼ିବ, ଟ.୩୦,୦୦୦ ନିହାତି ଦରକାର ।'' ସାର୍ ସଙ୍ଗେ ସଙ୍ଗେ କହିଲେ, 'ଟଙ୍କା ମିଳିଯିବ' । ମୁଁ କହିଲି- କେବେ ମିଳିବ ? ସେ କହିଲେ ଆଜି ମତେ ଦଶଟା ବେଳକୁ କଲେଜଛକ ପୋଷ୍ଟ ଅଫିସକୁ ନେଇଯିବେ । ମୁଁ ଟଙ୍କା ଡ୍ର କରି ଦେଇଦେବି ।

ସତକୁ ସତ ଦିନ ଏଗାରଟା ସୁଦ୍ଧା କଲେଜଛକ ପୋଷ୍ଟ ଅଫିସରୁ ଟ.୩୦,୦୦୦ ଆଣି ମୋ' ହାତରେ ଦେଲେ । ଏଭଳି ଜଣେ ଦେବୋପମ ଲୋକ ସହିତ ଥଟ୍ଟା ଖେଳିଥିବାରୁ ମୁଁ ମନେ ମନେ ବହୁତ ଲଜ୍ଜିତ ହେଲି ଏବଂ ପନ୍ଦର ଦିନ ପରେ ମୋର ଲୋନ ସାଙ୍କସନ୍ ହୋଇଗଲା କହି ସେ ଟଙ୍କା ଫେରାଇଦେଲି । ପରେ ଜାଣିଲି, ଗୋଟିଏ ଗରିବ ହରିଜନ ପିଲାକୁ ପାଖରେ ରଖି ତା'ର ପଢ଼ାଶୁଣାର ସମ୍ପୂର୍ଣ୍ଣ ବ୍ୟୟଭାର ସମ୍ଭାଳିଥିବାରୁ ସେ ପିଲା ମଝିରେ ମଝିରେ ସାର୍‌ଙ୍କ ପାଖକୁ ଆମେରିକାରୁ

ଗୁରୁଦକ୍ଷିଣା ପଠାଏ । ସେ ଟଙ୍କାକୁ ନିଜ ପାଇଁ ଖର୍ଚ୍ଚ ନ କରି ସେ ପୋଷ୍ଟ ଅଫିସ୍‌ରେ ରଖିଦିଅନ୍ତି । ସେ ଟଙ୍କାରେ ତା' ପାଇଁ କଟକ କିମ୍ବା ଭୁବନେଶ୍ୱରରେ ଜାଗା ଖଣ୍ଡେ କିଣିଦେବାକୁ ତାଙ୍କର ଇଚ୍ଛା ଥାଏ ।

ମୋଟ ଉପରେ ଦେଖିବାକୁ ଗଲେ ତାଙ୍କ ପରି ଛାତ୍ରବତ୍ସଳ ଶିକ୍ଷକ ମୋ ଜୀବନରେ ମୁଁ ଖୁବ୍ କମ୍ ଦେଖିଛି ।

ବୁଢ଼ାସାର୍ ଆଜି ଆମ ଗହଣରେ ନାହାନ୍ତି । ପରିଣତ ବୟସରେ ନିଜ ପୁଅ ବୋହୂଙ୍କ ପାଖରେ ଦିଲ୍ଲୀଠାରେ ଶେଷନିଶ୍ୱାସ ତ୍ୟାଗ କଲେ; ମାତ୍ର ତାଙ୍କର ଅଗଣିତ ଛାତ୍ର/ଛାତ୍ରୀଙ୍କ ପାଖରେ ତାଙ୍କର ସ୍ମୃତି ଚିରଦିନ ଅମଳିନ ରହିବ ।

''ସର୍ବେ ଚଳିବେ କାଳବଳେ
କଥା ରହିବ ମହୀତଳେ ।''

❑❑❑

## ''ଐସା ଭି ହୋ ଯାତା ହୈ''
## ଆକବର ଅଲ୍ଲୀ ଖାନ୍

ସ୍ଥାନ ଫୁଲବାଣୀ । ୧୯୭୨ ମସିହାର କଥା । ମୋର ସ୍ପଷ୍ଟବାଦିତା ଯୋଗୁଁ ମୋର ଦ୍ୱିତୀୟଥର ଲାଗି ଫୁଲବାଣୀ ଜିଲ୍ଲାରେ ପୋଷ୍ଟିଙ୍ଗ୍ ହୋଇଥାଏ । ସେ ସମୟରେ ଲୋକମାନେ ଫୁଲବାଣୀ ଜିଲ୍ଲାକୁ ଥଟ୍ଟାରେ ୧୩ ନମ୍ବର ଜିଲ୍ଲା ବୋଲି କହୁଥାନ୍ତି (ସେତେବେଳେ ଓଡ଼ିଶାରେ ସମୁଦାୟ ୧୩ଟି ଜିଲ୍ଲା ଥିଲା ।) କଲେକ୍ଟର ଥା'ନ୍ତି ପି.ଏସ୍. ରାଓ, ଆଇ.ଏ.ଏସ୍. । ସେ ବହୁତ ଭଦ୍ରଲୋକ; ମାତ୍ର ଟିକିଏ ଡରୁଆ ପ୍ରକୃତିର । ହଠାତ୍ ସେ ଜିଲ୍ଲାକୁ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଆକବର ଅଲ୍ଲୀ ଖାନ୍‌ଙ୍କର ଦୁଇଦିନିଆ ଗସ୍ତ ପଡ଼ିଲା । କଲେକ୍ଟର ସବୁ ଡିପାର୍ଟମେଣ୍ଟର ସଭା ଡକାଇ ରାଜ୍ୟପାଳଙ୍କର ଗସ୍ତ ଯେମିତି ସୁରୁଖୁରୁରେ ହୁଏ, ତା'ର ବ୍ୟବସ୍ଥା କରିବାକୁ ନିର୍ଦ୍ଦେଶ ଦେଲେ । ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ହିସାବରେ ମୋର ଦାୟିତ୍ୱ ହେଲା– ସେ ରହିବା ସ୍ଥାନ ଫୁଲବାଣୀ ସର୍କିଟ୍‌ହାଉସ୍ ଓ କଳିଙ୍ଗା ଡାକବଙ୍ଗଳାକୁ ସୁସଜ୍ଜିତ କରିବା ଏବଂ ସେ ଯାଉଥିବା ରାସ୍ତାକୁ ସଜାଡ଼ି ଦୁଇ କଡ଼ରେ ନାଲି ମୋରମ୍ ପକାଇବା । ବିଦ୍ୟୁତ୍ ବିଭାଗକୁ କୁହାଗଲା ହୀରାକୁଦ ଓ ବାଲିମେଳାରୁ ଆସିଥିବା ୩୩ କେ.ଭି. ଲାଇନ୍‌ରୁ ନିରବଚ୍ଛିନ୍ନ ବିଦ୍ୟୁତ୍ ସେବା ଯୋଗାଇଦେବା ଏବଂ ଜେନେରେଟର୍ ପ୍ରସ୍ତୁତ କରି ରଖିବା ।

ମିଟିଂରେ ମୁଁ କହିଲି– ସବୁ ତ ହେବ; ମାତ୍ର ଶାସ୍ତ୍ର କହୁଛି ଯେ

''ଯୋ ଧ୍ରୁବାଣୀ ପରିତେଜ୍ୟ
ଅଧ୍ରୁବାଣୀ ନିଶେବତେ
ଧ୍ରୁବାଣି ତସ୍ୟ ନଶ୍ୟନ୍ତି
ଅଧ୍ରୁବଂ ନଷ୍ଟା ମେ ବହି ।''

ତେଣୁ କନ୍ୟାଶ୍ରମ ଗସ୍ତ ସମୟରେ ଅନ୍ତତଃ ୩/୪ଟା ଲଣ୍ଠଣରେ ତେଲ ପୂରାଇ ଜାଳିକରି ରଖାଯାଉ ।'' ସମସ୍ତେ ହସିଲେ; ମାତ୍ର କଲେକ୍ଟର ବିଡିଓଙ୍କୁ କହିଲେ, ''ପଟ୍ଟନାୟକବାବୁ ଯାହା କହୁଛନ୍ତି କର ।''

'ଅମୂଲ୍ୟ' (ଅମୂଲ୍ୟରତ୍ନ ନନ୍ଦ, ଆଇ.ଏ.ଏସ୍.)ର ବ୍ୟାଚ୍‌ମେଟ୍ ହିସାବରେ ମୋ ସଙ୍ଗେ ତାଙ୍କର ଭଲ ସଦ୍‌ଭାବ ଥାଏ । କହିବା ବାହୁଲ୍ୟ, ସନ୍ଧ୍ୟାବେଳେ ରାଜ୍ୟପାଳ କନ୍ୟାଶ୍ରମରେ ଗାଡ଼ିରୁ ଓହ୍ଲାଇଲାବେଳକୁ ହଠାତ୍ ଆଲୁଅ ଚାଲିଗଲା । ଜେନେରେଟରରେ

ଦେଖିଲାବେଳକୁ ତେଲ ନାହିଁ । ରାଜ୍ୟପାଳଙ୍କ ଗସ୍ତ ଲଣ୍ଠନ ଆଲୁଅରେ ହେଲା; ମାତ୍ର ମହାନୁଭବ ରାଜ୍ୟପାଳ ସେଥିଲାଗି ଆଦୌ ବିରକ୍ତି ପ୍ରକାଶ କଲେ ନାହିଁ ।

ଦୁଇଦିନିଆ ଗସ୍ତର ଶେଷ କାର୍ଯ୍ୟକ୍ରମ ଥିଲା କଳିଙ୍ଗା ଡାକବଙ୍ଗଳାରେ ମଧ୍ୟାହ୍ନଭୋଜନ ଏବଂ ଅପରାହ୍ନରେ ସେଠାରୁ ଗୋପାଳପୁର ଯାତ୍ରା ଓ ରାତ୍ରିଯାପନ । ମଧ୍ୟାହ୍ନଭୋଜନ ସାରି ରାଜ୍ୟପାଳ ବିଶ୍ରାମ ନେଉଥା'ନ୍ତି । ଆମେ ସମସ୍ତେ ଖାଇସାରି ବାହାରେ ଗପସପରେ ବ୍ୟସ୍ତ । ଏ ସମୟରେ ଏଭଳି ଏକ ଘଟଣା ଘଟିଲା, ଯାହା ଭାବିଲାବେଳକୁ ଏତେ ବର୍ଷ ପରେ ମଧ ମୋ ଦେହ ଶୀତେଇଉଠେ ।

ରାଜ୍ୟପାଳଙ୍କ ଏ.ଡି.ସି. ଥା'ନ୍ତି ଶ୍ରୀଯୁକ୍ତ ଉମାଶଙ୍କର ମିଶ୍ର ଆଇ.ପି.ଏସ୍. (ପରବର୍ତ୍ତୀ କାଳରେ ସି.ବି.ଆଇ.ର ନିର୍ଦ୍ଦେଶକ) । ତାଙ୍କ ଲୁଗାପଟା ଆଣିବାକୁ ସେ ଡ୍ରାଇଭରକୁ ନିର୍ଦ୍ଦେଶ ଦେଲେ । ସେ ଜାମାପଟା ଆଣିଦେଲା; ମାତ୍ର ଭୁଲ୍‌ବଶତଃ ଗାଡ଼ିର ଚାବିଟା ଡିକି ଭିତରେ ରଖି ବନ୍ଦ କରିଦେଲା । ତା'ର ଅଟୋମେଟିକ୍ ଲକିଂ ସିଷ୍ଟମ୍ । ତେଣୁ ଡିକି ଖୋଲି ଚାବି ବାହାରିପାରିବନି । ଚାବି ନ ହେଲେ, Steering (Automatic locking system) ମଧ ଚାଲିବନି । ମୋଟ ଉପରେ ଗାଡ଼ି ସେଠାରୁ ଇଞ୍ଚେ ବି ଆଗକୁ ଯାଇପାରିବନି ।

ଡ୍ରାଇଭର ଭୟରେ ଶେତା ପଡ଼ିଗଲା ଏବଂ ଡରି ଡରି A.D.C. ଙ୍କୁ ସବୁକଥା କହିଲା । ସେ ମଧ କ୍ଷଣକପାଇଁ ସ୍ତବ୍ଧ ହୋଇଗଲେ । ମାତ୍ର ସଙ୍ଗେ ସଙ୍ଗେ ସେ ଓ କଲେକ୍ଟର ଏ ବିଷୟରେ କ'ଣ କରାଯାଇପାରିବ ଭାବିବାରେ ଲାଗିଲେ । ମୁଁ ସେ ଦୁଇଜଣଙ୍କୁ କହିଲି, "ଯଦି ଆପଣମାନେ ଅନୁମତି ଦେବେ, ତେବେ ମୁଁ ଭଞ୍ଜନଗରରୁ (କଳିଙ୍ଗା ଘାଟୀ ତଳେ ଥିବା ସହର) ଗୋଟେ କମାର ମଗାଇବି ଏବଂ ଛେଣି ଦ୍ୱାରା ତାଲାକୁ ଭାଙ୍ଗିବାପାଇଁ ଚେଷ୍ଟା କରିବି ।" ଉମାବାବୁ କହିଲେ, "ତମେ ସଙ୍ଗେ ସଙ୍ଗେ ଜିପ୍ ପଠାଅ ।"

ମୁଁ ଜିପ୍ ସାଙ୍ଗରେ ମୋର ଜଣେ ପୁରୁଣା ଓଭରସିଅର ପାତ୍ରବାବୁଙ୍କୁ ପଠାଇଲି ଏବଂ ଯେତେ ଚଞ୍ଚଳ ଗୋଟେ କମାରକୁ ଧରି ଆଣିବାକୁ ନିର୍ଦ୍ଦେଶ ଦେଲି । ଏକ ଘଣ୍ଟା ମଧରେ ସେ ଆସି ପହଞ୍ଚିଲା; ମାତ୍ର ସମସ୍ତ ଚେଷ୍ଟା ସତ୍ତ୍ୱେ ବିଦେଶରେ ନିର୍ମିତ ସେ ଗାଡ଼ିର ଚାବି ଖୋଲିଲାନି । ଏ ଭିତରେ ଗାଡ଼ିର ଅନ୍ୟ ଚାବି ଧରି ରାଜ୍ୟପାଳଙ୍କର ଜରୁରିକାଳୀନ ଗାଡ଼ି ଆସିବାକୁ A.D.C. ଅନୁରୋଧ କରିଥା'ନ୍ତି । ମାତ୍ର ସେଠାରୁ ଭୁବନେଶ୍ୱର ୩୫୦ କି.ମି. । ଯେତେ ଦ୍ରୁତଗତିରେ ଆସିଲେ ମଧ୍ୟ ୪/୫ ଘଣ୍ଟାରୁ କମ୍ ଲାଗିବ ନାହିଁ । ବଙ୍ଗଳା ଭିତରେ ୩୦ ଖଣ୍ଡ ଜିପ୍ ଗଦା ହୋଇଥାଏ । ମାତ୍ର ଗୋଟେ ହେଲେ କାର୍ ନାହିଁ । ଭାବିଲି ଏଇଥରକ ପ୍ରକୃତରେ ଚାକିରିଟା ଗଲା ।

ଠିକ୍ ଏହି ସମୟରେ ଫାଟକ ଦେଇ ଗୋଟିଏ ଫିଆଟ୍ କାର ବଙ୍ଗଳା ଭିତରକୁ ପଶିଲା । ଦକ୍ଷିଣାଞ୍ଚଳର ରାଜସ୍ୱ ଡିଭିଜନାଲ କମିସନର ଶ୍ରୀଯୁକ୍ତ ବି.ସି. ମାଥୁର (ଆଇ.ଏ.ଏସ୍) ଓହ୍ଲାଇଲେ । ମାଥୁର ସାହେବ ବିଚକ୍ଷଣ ଅଫିସର୍ । ସେ ଆମମାନଙ୍କ ମୁହଁକୁ ଚାହିଁଦେଇ ବୁଝିନେଲେ କିଛି ଗୋଟାଏ ସାଂଘାତିକ ଘଟଣା ଘଟିଛି । କଲେକ୍ଟର ଓ ଏସ୍.ପି. ତାଙ୍କୁ ସବୁକଥା ସଂକ୍ଷେପରେ କହିଲେ । ଅନ୍ୟ କାର୍‌ଟି ରାଜଭବନ ଛାଡ଼ି ସାରିଥିବା କଥା ମଧ ଜଣାଇଲେ । ସେ ପାଞ୍ଚ ମିନିଟ୍ ଖଣ୍ଡେ ଗଭୀର ଭାବରେ କ'ଣ ଚିନ୍ତା କଲେ । ବିପଦ ସମୟରେ ବିଚକ୍ଷଣ ଅଫିସରମାନେ କିଭଳି ପରିସ୍ଥିତି ସମ୍ଭାଳନ୍ତି, ତାହା ମୁଁ ପ୍ରଥମେ ଦେଖିଲି । ୪ଟାରେ ରାଜ୍ୟପାଳଙ୍କ କବାଟ ଖୋଲିଲା ଏବଂ ରାଜ୍ୟପାଳ ଆକବର ଅଲ୍ଲୀ ଖାନ୍ ହସି ହସି ରୁମ୍‌ରୁ ବାହାରିଲେ ।

ମାଥୁର ସାହେବ ସଙ୍ଗେ ସଙ୍ଗେ ତାଙ୍କ ପାଖକୁ ଚାଲିଗଲେ ଏବଂ ନମସ୍କାର କରି କହିଲେ, "Sir. A Himalayan Blunder has been committed by me". ଉପସ୍ଥିତ ଥିବା ଅଫିସରମାନଙ୍କ ଭିତରେ ସର୍ବୋଚ୍ଚ ଅଫିସର ଭାବରେ ନିଜର କୌଣସି ଦୋଷ ନ ଥାଇ ମଧ ସବୁ ଦୋଷକୁ ନିଜ ମୁଣ୍ଡ ଉପରକୁ ନେଇଗଲେ । ଏ ମଧରେ ADC ଓ ଜିଲ୍ଲାପାଳ କ'ଣ କ'ଣ ପଦକ୍ଷେପ ନେଇଛନ୍ତି ଏବଂ ୪ ଘଣ୍ଟା ମଧ୍ୟରେ ଦ୍ୱିତୀୟ ଗାଡ଼ି ଚାବି ନେଇ ପହଞ୍ଚିବାର ସୂଚନା ଦେଲେ । ତା'ପରେ କହିଲେ, ''ସାର୍, ଆଉ ଗୋଟେ ପ୍ରସ୍ତାବ ଅଛି । If your excellency permits I am prepared to drive your excellency in my personal car. ତାହାହେଲେ ଆମେ ଠିକ୍ ସମୟରେ ଗୋପାଳପୁରରେ ପହଞ୍ଚିବା ଏବଂ କାଲିର ଗସ୍ତକ୍ରମ ପୂର୍ବ ନିର୍ଦ୍ଧାରିତ ସୂଚୀ ଅନୁସାରେ ଚାଲିବ ।''

ରାଜ୍ୟପାଳ ଟିକିଏ କ'ଣ ଭାବିଲେ ଏବଂ ମାଥୁର ସାହେବଙ୍କ କାନ୍ଧରେ ହାତରଖି କହିଲେ, ''ମାଥୁର୍ ଚଲୋ ! ତୁମାରା କାର୍ ମେଁ ଯାଏଁଗେ । 'ଐସା ବି ହୋ ଯାତା ହେ ।' ସମସ୍ତଙ୍କ ମୁହଁରୁ କଳାବାଦଲ ହଟିଗଲା । ବହୁତ ବର୍ଷ ପରେ ହାଇଦ୍ରାବାଦ ଠାରେ Crisis management ଉପରେ ଗୋଟେ ୧୫ ଦିନିଆ ସେମିନାରରେ ଯୋଗଦେବାର ସୌଭାଗ୍ୟ ମତେ ମିଳିଥିଲା । ୩୦/୪୦ ଜଣ ଆଇ.ଏ.ଏସ୍., ଆଇ.ପି.ଏସ୍., ଆଲାଏଡ୍ ସର୍ଭିସ୍‌ର ଅଫିସରଙ୍କ ମଧରେ ମୁଁ ଥିଲି ଏକମାତ୍ର ଇଞ୍ଜିନିୟର । ନିଜ ଜୀବନର ସବୁଠାରୁ ବଡ଼ ବିପଦର କିପରି ମୁକାବିଲା କଲି ବୋଲି ବକ୍ତବ୍ୟରେ ଏହି ଘଟଣା ଉଲ୍ଲେଖ କରି ମୁଁ ଉଚ୍ଚ ପ୍ରଶଂସିତ ହୋଇଥିଲି । ଆଜି ଏତେ ବର୍ଷ ପରେ ବି ସେ କଥା ମନେପଡ଼ିଲେ ରୁମ ଟାଙ୍କୁରି ଉଠେ ଓ ବିଚକ୍ଷଣ ଅଫିସର ମାଥୁର ସାହେବ ତଥା କ୍ଷମା ଓ ଉଦାରତାର ପ୍ରତିମୂର୍ତ୍ତି ଆକବର ଅଲ୍ଲୀ ଖାନ୍‌ଙ୍କ ପାଖରେ ସ୍ୱତଃ ମୁଣ୍ଡ ନଇଁଯାଏ । ❑❑❑

# ଅଶୋକ ମୋବାୟୀ
# ଆଭିଜାତ୍ୟସମ୍ପନ୍ନ ଶାସକ

୧୯୭୧ ମସିହାର ଘଟଣା । ମୁଁ ଅଳ୍ପଦିନ ହେଲା ସୁନ୍ଦରଗଡ଼ରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ହିସାବରେ ଯୋଗଦେଇଥାଏ । କ୍ୱାର୍ଟର୍ସ ମରାମତି ଚାଲୁଥିବାରୁ ସରକାରୀ ଡାକବଙ୍ଗଳାରେ ରହୁଥାଏ । ସନ୍ଧ୍ୟା ସମୟ, ବଙ୍ଗଳା ଆଗରେ ଗୋଟେ ଧଳା ଜିପ୍ ରହିଲା । ଜିପ୍‌ରୁ ଓହ୍ଲାଇଲେ ଜଣେ ସୁଦର୍ଶନ ବପୁବନ୍ତ ଭଦ୍ରଲୋକ । ସିଧା କରମର୍ଦ୍ଦନ କରି କହିଲେ, ''ମୁଁ ଅଶୋକ ମୋବାୟୀ, ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ । ଜଣେ କିଏ ମତେ କହିଲା, ତମେ ଭଲ ବ୍ୟାଡ୍‌ମିଣ୍ଟନ୍ ଖେଳ, ମୋ' ସାଙ୍ଗରେ ଆସ, ଖେଳିବା ।'' ବାସ୍, ସେଇ ମୋର ତାଙ୍କ ସହିତ ପ୍ରଥମ ଦେଖା । ପରେ ସେ ବନ୍ଧୁତା ନିବିଡ଼ ହୋଇଛି ଆମ ଦୁଇ ପରିବାର ଭିତରେ । ତାଙ୍କ ବାପା, ମା', ସେ କଟକ୍ ଜିଲ୍ଲାପାଳ ଥିଲାବେଳେ ଆମ ଘରକୁ (ବଡ଼ମ୍ବାଗଡ଼) ଯାଇଛନ୍ତି ଓ ଆମ ଘରେ ଖାଇଛନ୍ତି । ତାଙ୍କ ପୁଅଝିଅ ସହିତ ମୋ ପୁଅଝିଅଙ୍କର ପ୍ରଗାଢ଼ ସ୍ନେହ ରହିଛି । ତାଙ୍କ ସ୍ତ୍ରୀଙ୍କ ଓ ମୋ'ସ୍ତ୍ରୀଙ୍କ ମଧ୍ୟରେ ବନ୍ଧୁତା ବହୁତ ନିବିଡ଼ ହୋଇଛି ।

ମୋବାୟୀ ସାହେବ ପ୍ରକୃତରେ ଥିଲେ ଜଣେ ଆଭିଜାତ୍ୟସମ୍ପନ୍ନ ଭଦ୍ରଲୋକ । ପ୍ରଥମ ଦେଖାରେ ହିଁ ସେ ଜଣକୁ ଆପଣାର କରିନେବେ । ତାଙ୍କ ବାପା ରେଳବାଇରେ ଚିଫ୍ ଇଞ୍ଜିନିୟର ଥିଲେ । ସେମାନେ କାଶ୍ମୀରୀ ବ୍ରାହ୍ମଣ । (ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁଙ୍କ ସହିତ ତାଙ୍କ ବାପାଙ୍କର ପାରିବାରିକ ସମ୍ବନ୍ଧ ଥିଲା । ତାଙ୍କ ସାନଭଉଣୀ ରଞ୍ଜନାର ନେହରୁଙ୍କ କୋଳରେ ବସିଥିବାର ପିଲାବେଳର ଫଟୋ ମୁଁ ଦେଖିଛି । ମାତ୍ର ଏତେ ବଡ଼ଲୋକ ହୋଇ ମଧ୍ୟ ତାଙ୍କ ମନରେ ଆଦୌ ଗର୍ବ ନ ଥିଲା । ଦିଲ୍ଲୀରେ ଜନ୍ମ ହୋଇଥିଲେ ମଧ୍ୟ ଓଡ଼ିଶା ତାଙ୍କର କର୍ମଭୂମି ଥିଲା । ଓଡ଼ିଶାକୁ ସେ ଓ ତାଙ୍କର ପରିବାର ବହୁତ ଭଲପାଉଥିଲେ । ସଦାବେଳେ ଓଡ଼ିଆରେ କଥାବାର୍ତ୍ତା କରୁଥିଲେ । ତାଙ୍କ ସାନଭଉଣୀ ରଞ୍ଜନା (ଇନ୍ଦିରାଗାନ୍ଧୀଙ୍କ ପ୍ରିନ୍‌ସିପାଲ୍ ସେକ୍ରେଟାରୀ ପି.ଏନ୍.ହାକ୍‌ସାରଙ୍କର ବୋହୂ) ଓ ଝିଅ ବବୁଆ ଉଭୟେ ଓଡ଼ିଶୀ ନୃତ୍ୟରେ ପ୍ରବୀଣା । ତାଙ୍କ ପରିବାର ସଙ୍ଗୀତପ୍ରିୟ ଥିଲେ । ଥରେ ଆମ ଘରକୁ ବୁଲି ଗଲାବେଳେ ତାଙ୍କ ବାପା, କେ.ଏଲ୍.ସାଇଗଲ୍‌ଙ୍କର ଗୋଟେ ଗୀତ ବୋଲିଲେ, ସେଥିରେ ପୁଅବୋହୂ ନୀତୁ (ସଙ୍ଗୀତରେ ଏମ୍.ଏ.) ତାଳ ଦଉଥାନ୍ତି ।

ମୋବାୟୀ ସାହେବ ମତେ ବହୁତ ସ୍ନେହ କରୁଥିଲେ । ରାଉରକେଲା ଟୁର୍‌ରେ ଗଲାବେଳେ ବେଳେବେଳେ ତାଙ୍କ କାର୍ (ORN-1)ରେ ମତେ ସାଙ୍ଗରେ ନେଇଯାଉଥିଲେ । ରାଉରକେଲା ହାଉସ୍‌ରେ, ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ ଏମ୍.ଡି. ଅଗ୍ରଓ୍ୱାଲ୍ ସାହେବ ସ୍ୱୟଂ ତାଙ୍କୁ ସ୍ୱାଗତ ଜଣାଉଥିଲେ । ମଧ୍ୟାହ୍ନଭୋଜନ ବେଳେ ନାନାପ୍ରକାର ସୁସ୍ୱାଦୁ ଖାଦ୍ୟ ଆମକୁ ଦିଆହେଲା ସମୟରେ ଅଗ୍ରଓ୍ୱାଲ ସାହେବ ତାଙ୍କ ଟିଫିନ୍‌ରୁ ଶୁଖିଲା ରୁଟି, ଗୋଟେ ଭଜା ଓ ଆଚାର ଖାଇବାର ମୁଁ ନିଜେ ଦେଖିଛି । ପରେ ସେ ପ୍ରମୋଶନ ପାଇ ଷ୍ଟିଲ୍ ଅଥରିଟି ଅଫ୍ ଇଣ୍ଡିଆର ଚେୟାରମ୍ୟାନ୍ ହୋଇଥିଲେ । ମୋବାୟୀ ସାହେବ ବହୁତ ଖାଦ୍ୟପ୍ରିୟ ଥିଲେ । ଥରେ କୌଣସି ଏକ ପୂଜାବେଳେ ଆମ ଘରେ ୧୦/୧୨ ରକମର ପିଠାପଣା ହୋଇଥାଏ । ମୋ ମା' ଚମତ୍କାର ରାନ୍ଧନ୍ତି । ସେ ଖାଇବା ବଢ଼ା ହେଲାପରେ ମତେ ପଚାରିଲେ, ''ଆଚ୍ଛା ! ଓଡ଼ିଶାର ଲୋକ କ'ଣ ଏତେ ରକମର ଖାଆନ୍ତି ? ତାହାହେଲେ ତ ଦରମାର ୯୦ ଭାଗ କେବଳ ଖାଇବାରେ ଖର୍ଚ୍ଚ ହେଉଥିବ ।'' ତା'ପରେ ମଜାରେ କହିଲେ, ''ଶୁଣ ମୃତ୍ୟୁଞ୍ଜୟ ! ତମକୁ ମନମୋହନ ସିଂ (ସେତେବେଳେ ଭାରତରେ ଅର୍ଥମନ୍ତ୍ରୀ ଓ ବର୍ତ୍ତମାନର ପ୍ରଧାନମନ୍ତ୍ରୀ) ଯଦି କେବେ ଖାଇବାକୁ ଡାକିବେ, ତେବେ ତୁମେ ମନା କରିଦେବ । କାରଣ ଥରେ ମତେ ଡାକିଥିଲେ । ରୋଟି, ଡାଲି ଆଉ ଭେଣ୍ଡିଭାଜି । ଆଉ କିଛି ନାହିଁ ।''

ସେ ସୁନ୍ଦରଗଡ଼ କଲେକ୍ଟର ଥିଲାବେଳର ଘଟଣା । ଥରେ ଆମେ ହେମଗିରି ଗସ୍ତରେ ଯାଇଥାଉ । ମତେ ପଚାରିଲେ, ''ହେମ ମାନେ କ'ଣ ?'' ମୁଁ କହିଲି, 'ସୁନା' । ସେ କହିଲେ, 'ଗିରି' ମାନେ ? ମୁଁ କହିଲି– ପାହାଡ଼ । ସେ କହିଲେ– ବର୍ତ୍ତମାନ ବୁଝିଲ ତ ? ଏ ପାହାଡ଼ ଭିତରେ କେଉଁଠି ନା କେଉଁଠି ସୁନ୍ଦରଗଡ଼ର ମହାରାଜାମାନଙ୍କର ସୁନା ଲୁଚା ହୋଇଛି । ଆମେ ଖୋଜିଲେ ପାଇବା ।'' ତା'ପରେ ଗୋଟେ ପୁରୁଣା ଦେଉଳ ଭିତରେ ଗୁରୁଣ୍ଡି ଗୁରୁଣ୍ଡି ପଶିବାକୁ ଚେଷ୍ଟା କରୁଥିଲେ । ସୁନା ତ ଯାହା ମିଳିଲା, ତା' ଭିତରୁ ଗୋଟେ ଭାଲୁ ଓ ତା' ଛୁଆ ବାହାରିଲେ । ସେଦିନ ଗୋଟେ ନିଶ୍ଚିତ ଦୁର୍ଘଟଣାରୁ ଆମେ ସମସ୍ତେ ରକ୍ଷା ପାଇଗଲୁ ।

କଟକ କଲେକ୍ଟର ଥିବା ସମୟର ଘଟଣା । ଦିନେ ରବିବାର ସକାଳୁ ଆମେ ଗପ କରୁଥିଲାବେଳେ ଗୋଟେ ଫୋନ୍ ଆସିଲା । ସେ ଦୁଇ ମିନିଟ୍ କଥା ହେଲାପରେ "cannot be done" କହି ଫୋନ୍‌ଟିକୁ ରଖିଦେଲେ । ତା'ପରେ ମତେ ଚାହିଁ କହିଲେ, ''ତମ ମନ୍ତ୍ରୀ ଲକ୍ଷ୍ମଣ ମଲ୍ଲିକ ଫୋନ୍ କରିଥିଲେ । ସକାଳୁ ସକାଳୁ ଗ୍ରାମସେବକ ବଦଳି ବାତିଲ୍ କରିବା ଲାଗି ।'' ସେତେବେଳେ ନନ୍ଦିନୀ ଶତପଥୀ

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି । ତାଙ୍କୁ ଛାଡ଼ିଦେଲେ ସେ ଅନ୍ୟ କାହାର ରାଜନୀତିରେ ହସ୍ତକ୍ଷେପ ଜମା ପସନ୍ଦ କରୁ ନ ଥିଲେ ।

କଟକ ସହର ହଜାରେ ବର୍ଷର ପୁରୁଣା ସହର । ଆସ୍ତେ ଆସ୍ତେ ଗାଡ଼ି ସଂଖ୍ୟା ବଢ଼ିବାରେ ଲାଗିଥାଏ । ମୋବାୟୀ ସାହେବ ସ୍ଥିର କଲେ– କଟକ ରାସ୍ତା ଚଉଡ଼ା କରିବାକୁ ପଡ଼ିବ । ସେତେବେଳେ ଆଜିକାଲି ପରି ରାସ୍ତା ଚୌଡ଼ା ହେବାଠାରୁ ମ୍ୟୁନିସିପାଲିଟିର ନର୍ଦ୍ଦମା ସଫା ହେବାପର୍ଯ୍ୟନ୍ତ ସବୁ କାମ ହାଇକୋର୍ଟର ନିର୍ଦ୍ଦେଶରେ ହେଉ ନ ଥିଲା । କଲେଜ ଛକ ଠାରୁ ଜବରଦଖଲ ଭଙ୍ଗାକାମ ଆରମ୍ଭ ହେଲା । ସାଙ୍ଗରେ ଥାଆନ୍ତି ଦୁର୍ଦ୍ଧର୍ଷ ଏସ୍.ପି. ଭି. ଆପ୍ପାରାଓ । ଦୁଇ ଦିନ ପରେ ହାଇକୋର୍ଟଙ୍କ ନିର୍ଦ୍ଦେଶକ୍ରମେ କାମ ବନ୍ଦ ହେଲା । ସେଦିନୁ ଆଜିପର୍ଯ୍ୟନ୍ତ ଆଉ କେହି କଲେକ୍ଟର ଏ କାମ ହାତକୁ ନେବାକୁ ସାହସ କରି ନାହାନ୍ତି । ଗାଡ଼ି ଓ ମୋଟରସାଇକେଲ ସଂଖ୍ୟା ଆଶାତୀତ ଭାବେ ବଢ଼ିଚାଲିଛି । ବଜ୍ରକବାଟୀ କିମ୍ବା ବାଲୁବଜାର ଦେଇ ହାଇକୋର୍ଟକୁ ଗଲାବେଳେ ମୋବାୟୀ ସାହେବଙ୍କ ସ୍ମୃତି ମନକୁ ଆସେ ।

ଥରେ ମୁଖ୍ୟମନ୍ତ୍ରୀଙ୍କର କଟକ ସହରକୁ ଟୁର୍ ଥିଲାବେଳେ ସେ କିଲ୍ଲା ଭିତରେ ମୋ ଘରେ ବସି ମୁଢ଼ି ନଡ଼ିଆକୋରାରେ ଚିନି ଗୋଳାଇ ଖାଉଥିଲେ । ମୁଁ ମୁଖ୍ୟମନ୍ତ୍ରୀଙ୍କ ଗସ୍ତ କଥା ମନେପକାଇବାରୁ କହିଲେ, "ମୁଖ୍ୟମନ୍ତ୍ରୀଙ୍କ ନିଜ ଘର କଟକ । ସେ ସରକାରୀ ଏବଂ ବେସରକାରୀ କାମରେ ମାସକୁ ୧୫ ଥର କଟକ ଆସିବେ । କଟକରେ ୭ ଜଣ ଆଡିସ୍‌ନାଲ୍ ଡିଷ୍ଟ୍ରିକ୍ ମାଜିଷ୍ଟ୍ରେଟ୍ ଅଛନ୍ତି । ଜଣେ ସାଙ୍ଗରେ ରହିବେ; ମାତ୍ର ଜିଲ୍ଲା ଭିତରକୁ ବାଙ୍କୀ, ବଡ଼ମ୍ବା, କେନ୍ଦ୍ରାପଡ଼ା ଗଲେ କଲେକ୍ଟର ଯିବାକୁ ବାଧ୍ୟ । ପ୍ରୋଟୋକଲ୍‌ରେ ମଧ୍ୟ ଏ କଥା ଅଛି । ଏବେ ରାଜନେତାମାନଙ୍କ ଆଗରେ କଲେକ୍ଟରମାନଙ୍କର ଦୁରବସ୍ଥା ଦେଖିଲେ ମୋର ମୋବାୟୀ ସାହେବଙ୍କ କଥା ମନେପଡ଼େ ।

ମୋବାୟୀ ସାହେବଙ୍କ ଝିଅର ଦିଲ୍ଲୀରେ ବାହାଘର ହେଲା । ମତେ ନିମନ୍ତ୍ରଣ ମିଳିଲା । ମୁଁ ସେତେବେଳକୁ ଚିଫ୍ ଇଞ୍ଜିନିୟର ଅଫିସ୍‌ରେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥାଏ । ଯିବାକୁ ବହୁତ ଇଚ୍ଛା ଥିଲେ ମଧ୍ୟ ଟିକିଏ ଅସୁବିଧା ଅଛି ବୋଲି କହିଲି । ସେ କହିଲେ, "ମୃତ୍ୟୁଞ୍ଜୟ ! ମୁଁ ଓଡ଼ିଶାରୁ କେବଳ ଦୁଇ ଜଣଙ୍କୁ ଡାକିଛି । ଜଣେ, ଯେ ମୋ'ଠାରୁ କଟକ କଲେକ୍ଟର ଚାର୍ଜ ନେଇଥିଲେ– ଶ୍ରୀ ସତ୍ୟରଞ୍ଜନ ପାଲ ଏବଂ ତମେ । ତା'ପରେ 'ବବୁଆ ସାଙ୍ଗରେ କଥା ହୁଅ' କହି ତାକୁ ଫୋନ୍ ଧରାଇଦେଲେ । ସେ କହିଲା, "ଅଙ୍କଲ୍, ଆପଣଙ୍କୁ ଯେ କୌଣସିମତେ ଆସିବାକୁ ପଡ଼ିବ । ନଚେତ୍ ମୋ ମନରେ ଚିରଦିନ ଗୋଟେ ଦୁଃଖ ରହିଯିବ ।" ବବୁଆକୁ ମୁଁ ବହୁତ ସ୍ନେହ କରୁଥିଲି । ଏବେବି ଓଡ଼ିଶା ଆସିଲେ ସେ ମୋ' ପାଖରେ ରହେ ।

ଅଗତ୍ୟା ଟ୍ରେନ୍‌ରେ ଟିକେଟ୍ କରି ଚାରି / ପାଞ୍ଚ ଦିନ ଲାଗି ଦିଲ୍ଲୀ ବାହାରିଲି ଏବଂ ମୋର ବାଲ୍ୟବନ୍ଧୁ ତଥା ଭାରତ ସରକାରଙ୍କର ତଦାନୀନ୍ତନ ସ୍ୱାସ୍ଥ୍ୟ ବିଭାଗର ସେକ୍ରେଟାରୀ ଶ୍ରୀ ଅମୂଲ୍ୟରତ୍ନ ନନ୍ଦଙ୍କ ଘରେ ରହିଲି । ଉତ୍ସବ ଦିନ ସନ୍ଧ୍ୟାରେ ପହଞ୍ଚିଲାବେଳକୁ ମଣ୍ଡପ ବିଶିଷ୍ଟ ଅତିଥିମାନଙ୍କଦ୍ୱାରା ଭରପୂର । ମୋବାୟୀ ସାହେବ, ତାଙ୍କ ବୃଦ୍ଧା ମାତା, ଭଉଣୀ ରଞ୍ଜନା ଓ ମିସେସ୍ ମୋବାୟୀ ମତେ ଦେଖି ବହୁତ ଖୁସି ହେଲେ । ବବୁଆ କହିଲା, ''ଅଙ୍କଲ୍ ! ମୁଁ ଜାଣିଥିଲି ଆପଣ ନିଶ୍ଚୟ ଆସିବେ ।'' ମୋବାୟୀ ସାହେବ ଦୁଇ ଜଣ ବିଦେଶ ମନ୍ତ୍ରୀଙ୍କ ପାଖରେ ସ୍ପେଶିଆଲ୍ ସେକ୍ରେଟାରୀ ଭାବରେ କାମ କରିଥିଲେ ଏବଂ ଉଭୟଙ୍କର ଅତ୍ୟନ୍ତ ପ୍ରିୟ ଥିଲେ । ମୁଁ ବୁଲୁ ବୁଲୁ ଦେଖିଲି ଗୋଟେ କଣରେ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଅଟଳବିହାରୀ ବାଜପେୟୀ ବସିଛନ୍ତି । ସମସ୍ତେ ତାଙ୍କୁ ନମସ୍କାର କରି ଯାଉଛନ୍ତି । ମୁଁ ମଧ ନମସ୍କାର କଲି ଏବଂ ସେ ଟିକିଏ ହସିଲେ । ମୋର କାହିଁକି କେଜାଣି ମନେହେଲା ମୋବାୟୀ ସାହେବ ଭିଡ଼ ଭିତରେ ଅତିଥିମାନଙ୍କୁ ସ୍ୱାଗତ କରୁ କରୁ ତାଙ୍କୁ ଦେଖିପାରି ନାହାନ୍ତି । ମୁଁ ତାଙ୍କ ପାଖକୁ ଯାଇ ସେ କଥା କହିବାରୁ ସେ ତାଙ୍କ ସ୍ୱଭାବସୁଲଭ ଭଙ୍ଗୀରେ କହିଲେ, ''ଆରେ ! ମୁଁ ତାଙ୍କୁ ସେଠି ବସେଇ ଦେଇଆସିଛି । ବୁଢ଼ାକୁ ବୁଖାର୍ ଅଛି । ତାଙ୍କୁ ହଇରାଣ କରନି ।''

କେତେଦୂର ସ୍ନେହ ଥିଲେ ଦେହ ଅସୁସ୍ଥ ଥିବା ସତ୍ତ୍ୱେ ବାଜପେୟୀଙ୍କ ପରି ଲୋକଜଣଙ୍କ ବାହାଘରକୁ ଆସିପାରେ, ସେ କଥା ଭାବି ମତେ ଆଶ୍ଚର୍ଯ୍ୟ ଲାଗିଲା । ତା'ପରେ ମତେ ପଚାରିଲେ, ''ଆଉ ! ତୁମେ ପରା କହୁଥିଲ ପ୍ରଧାନମନ୍ତ୍ରୀଙ୍କୁ ଦେଖିବ ଏବଂ କଥା ହେବ ?'' ମୁଁ 'ହଁ' କଲାରୁ କହିଲେ– ରାତି ୧୧ଟା ୪୦ ମିନିଟ୍ ପରେ ମୋ ପାଖେ ପାଖେ ରହିବ । ୧୧ଟା ୪୫ ମିନିଟ୍‌ରେ ପ୍ରଧାନମନ୍ତ୍ରୀ ଆସିବେ । ମୋର ବନ୍ଧୁ ଅମୂଲ୍ୟକୁ କହିବାରୁ ସେ କଥାଟାକୁ ହସରେ ଉଡ଼ାଇଦେଲା ଏବଂ କହିଲା, ''ଆଜିର ଖବରକାଗଜ ଦେଖିନ କି ? ଆଜି ରାଷ୍ଟ୍ରପତି ଭବନରେ ରୁଷର ରାଷ୍ଟ୍ରପତିଙ୍କ ସମ୍ମାନାର୍ଥେ 'Banquet' ଅଛି । ପ୍ରଧାନମନ୍ତ୍ରୀ ଆସିବେ କେମିତି ? '' ମୋ ମନଟା ଟିକେ ଫିକା ପଡ଼ିଗଲା । ମାତ୍ର ତା' ପରମୁହୂର୍ତ୍ତରେ ଭାବିଲି ମୋବାୟୀ ସାହେବ ତ ମତେ କେବେ ମିଛ କହନ୍ତିନି । ମୁଁ ଅମୂଲ୍ୟକୁ କହିଲି, ''ତମେ ଖାଇସାରି ଗୁଲୁ (ମୋ ପୁଅ ଯିଏ ସେତେବେଳେ Jet Airways ରେ ଚାକିରି କରୁଥିଲା)କୁ ନେଇ ଘରକୁ ଚାଲିଯାଅ । ମୁଁ ପରେ ଯିବି ।''

ଠିକ୍ ୧୧ଟା ୪୫ ମିନିଟ୍‌ରେ ପ୍ରଧାନମନ୍ତ୍ରୀଙ୍କ କାଫିଲା ସାମିଆନା ଭିତରକୁ ଆସିଲା ଏବଂ ତୃତୀୟ ଗାଡ଼ିରୁ ଓହ୍ଲେଇଲେ ହସ ହସ ମୁହଁରେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ନରସିଂହ ରାଓ । ତାଙ୍କର ପ୍ରଥମ ପ୍ରଶ୍ନ ଥିଲା, "Ashok ! So baby is getting married" ? ତା'ପରେ ମୋବାୟୀ ସାହେବ ତାଙ୍କ ପରିବାରବର୍ଗଙ୍କ

ସହିତ ପରିଚୟ କଲାପରେ ମତେ ଦେଖାଇ କହିଲେ, "Sir, my brother from Odisha." ମୁଁ ନମସ୍କାର କଲି । ତା'ପରଦିନ ମୁଁ ଓଡ଼ିଶା ଫେରିବା ପୂର୍ବରୁ ମୋ ପୁଅ ମୋ ହାତକୁ ଗୋଟେ ବନ୍ଦ ଲଫାପା ବଢ଼ାଇଦେଇ କହିଲା, ''ଅଙ୍କଲ୍ କହିଛନ୍ତି, ଏଟା ତୋ ବାପାଙ୍କୁ ଦେଇଦେବୁ ।'' ଖୋଲି ଦେଖିଲାବେଳକୁ ମୋ ନାଁ'ରେ ଦିଲ୍ଲୀ-ଭୁବନେଶ୍ୱରର ଗୋଟେ ଫେରନ୍ତା ଏୟାର୍ ଟିକେଟ । କୃତଜ୍ଞତାରେ ମୋ ଆଖି ଛଳଛଳ ହୋଇଗଲା ।

ମୋବାୟୀ ସାହେବଙ୍କ ସହିତ ମୋର ଘନିଷ୍ଠ ପରିଚୟକୁ ନେଇ ଅନେକ ବନ୍ଧୁ ଈର୍ଷାନ୍ୱିତ ହୋଇଛନ୍ତି । ସେ ମଧ୍ୟ ସେ କଥା ଜାଣିଛନ୍ତି ଏବଂ ମତେ କହିଛନ୍ତି— ଏତେ ବନ୍ଧୁତାସତ୍ତ୍ୱେ ତମେ କେବେହେଲେ ମୋ ବନ୍ଧୁତ୍ୱର ସୁଯୋଗ ନେଇନ । ଯେଉଁଟା କି ତମ ଓଡ଼ିଶାରେ ପ୍ରାୟ ଦେଖାଯାଏ ନାହିଁ ।

ଚାକିରି ସରିବାର ୧୫ ବର୍ଷ ଆଗରୁ ମୋବାୟୀ ସାହେବ ଯେତେବେଳେ ସ୍ୱେଚ୍ଛାକୃତ ଅବସର ନେଇଗଲେ, ସେତେବେଳେ ତାଙ୍କ ସାଙ୍ଗସାଥୀ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ପଚାରିବାରେ କହିଲେ, ''ଶୁଣ ! ତମେ ମାଉଣ୍ଟ ଏଭେରେଷ୍ଟରେ ପହଞ୍ଚିଲା ପରେ ଯୁଆଡ଼େ ଗଲେ ବି ତଳକୁ ଯିବ । ଦୁଇ ଜଣ ପ୍ରଧାନମନ୍ତ୍ରୀଙ୍କ ପାଖରେ କାମ କରିବାପରେ ଆଉ ଓଡ଼ିଶା ଫେରିଯାଇ ବଦଳି ଆଦେଶକୁ ଦସ୍ତଖତ କରିବାରେ କ'ଣ ନୂଆ କଥା ଅଛି ?'' ଚାକିରିର ପ୍ରାକ୍-କାଳରେ ତାଙ୍କୁ ଦେଖିଥିଲି । ମୋ ଚାକିରି ସରିବା ପରେ ବି ଦେଖୁଛି । ସେଇ ହସ ହସ ମୁହଁ, ସେଇ ଆନ୍ତରିକତା । ଦିଲ୍ଲୀରେ ଦେଖାହେଲେ ସେଇ ସ୍ନେହପୂର୍ଣ୍ଣ ସମ୍ଭାଷଣ, ''ଏୟ ! ମୃତ୍ୟୁଞ୍ଜୟ ! ଆସ, ଆଜି ଆମ ଘରେ ଖାଇକରି ଯିବ । କଥା ହେବା ।''

ଭଗବାନ୍ ତାଙ୍କୁ ଦୀର୍ଘାୟୁ କରନ୍ତୁ ।

❑❑❑

## କୁମାରୀ ଶାନ୍ତାଶୀଲା ନାୟାର
## ଏକ ଚୁମ୍ବକୀୟ ବ୍ୟକ୍ତିତ୍ୱ

ଜଣେ ଜଣେ ଏଭଳି ବ୍ୟକ୍ତି ଥାଆନ୍ତି, ଯାହାଙ୍କ ସଂସ୍ପର୍ଶରେ ଥରେ ଆସିଲେ ଚିରଦିନ ଲାଗି ତମ ମନରେ ଗୋଟେ ଛାପ ରହିଯାଏ । ଏଭଳି ଏକ ବ୍ୟକ୍ତିତ୍ୱ ଥିଲେ ଶାନ୍ତାଶୀଲା ନାୟାର । ମୁଁ ସେତେବେଳେ କଟକର ମ୍ୟୁନିସିପାଲିଟି ଇଞ୍ଜିନିୟର । କଟକ ଭୁବନେଶ୍ୱରରେ କଲ୍ୟାଣ ମଣ୍ଡପର ନାଁ ଶୁଣାଯାଇ ନ ଥାଏ । କଥା ଉଠିଲା ଜଣେ ଅଫିସର୍ ମାଡ୍ରାସ ଯାଇ ସେଠିକାର କଲ୍ୟାଣ ମଣ୍ଡପଗୁଡ଼ିକ ଅନୁଧ୍ୟାନ କରି ଗୋଟେ ତାଲିକା ପ୍ରସ୍ତୁତ କରିବେ । ଓଡ଼ିଶା ସରକାରଙ୍କର ତତ୍କାଳୀନ ନଗର ଉନ୍ନୟନ ମନ୍ତ୍ରୀ ସ୍ୱର୍ଗତ ବଟକୃଷ୍ଣ ଜେନା ଏଥିଲାଗି ମତେ ବାଛିଲେ ଏବଂ Director of Municipal Administrationଙ୍କ ସୁପାରିସ ପତ୍ର ଧରି ମୁଁ ମାଡ୍ରାସ ଅଭିମୁଖେ ଯାତ୍ରା କଲି ।

ମୋର ମାଡ୍ରାସ ନଗରୀକୁ ସେ'ଟା ପ୍ରଥମ ଯାତ୍ରା । ତେଣୁ ମତେ ନେବାପାଇଁ ଷ୍ଟେସନ୍‌କୁ ଗୋଟେ ଗାଡ଼ି ପଠାଇବାକୁ ଜଣେ ବନ୍ଧୁଙ୍କୁ ଅନୁରୋଧ କଲି । ସେ କହିଲେ, ''ଆପଣ ବ୍ୟସ୍ତ ହୁଅନ୍ତୁନି । ଆମର ସେଠାରେ ଅଫିସ୍ ଅଛି । ଆମ ଓଡ଼ିଆ ଡ୍ରାଇଭର ଆପଣଙ୍କ ନାଁ ଲେଖି ଷ୍ଟେସନ୍‌ରେ ଗାଡ଼ିଧରି ଅପେକ୍ଷା କରିଥିବ ଏବଂ ଆପଣଙ୍କୁ ଆମ ଗେଷ୍ଟ୍ ହାଉସ୍‌କୁ ନେଇଯିବ ।'' ମାଡ୍ରାସ ମେଲ୍ ଠିକ୍ ସକାଳ ୫ଟାରେ ଷ୍ଟେସନ୍‌ରେ ପହଞ୍ଚିଲା । ମୁଁ ଜିନିଷପତ୍ର ଧରି ବାହାରକୁ ଆସି ସବୁ ଟାକ୍ସି ପାଖକୁ ଗଲି; ମାତ୍ର କୌଣସିଠାରେ ଆମ ଓଡ଼ିଆ ଭଦ୍ରବ୍ୟକ୍ତିଙ୍କର ପତ୍ତା ମିଳିଲାନି । ଅନ୍ୟ ଡ୍ରାଇଭରମାନଙ୍କୁ ମତେ ନେବାକୁ କହିବାରୁ ତାମିଲରେ ଉତ୍ତର ମିଳିଲା "No Hindi, No English, Tamil Tamil." ସେତେବେଳେ ମାଡ୍ରାସରେ ଭାଷା ଆନ୍ଦୋଳନ ତୀବ୍ର ହୋଇଥାଏ ।

ଏହି ସମୟରେ ଜଣେ ଭଦ୍ରବ୍ୟକ୍ତି (ବୟସ ୭୦ ଉପରେ ହେବ) ମୋ' ପାଖକୁ ଆସି ଶୁଦ୍ଧ ଇଂରାଜୀରେ ପଚାରିଲେ, "Gentleman! Are you in trouble?" ମୁଁ ମୋର ଦୁର୍ଦ୍ଦଶା ଏବଂ ମୋ ଡ୍ରାଇଭର ସମୟାନୁବର୍ତ୍ତିତା କଥା କହିବାରୁ ସେ ଅଳ୍ପ ହସିଲେ ଏବଂ ମତେ ତାଙ୍କ କାର୍‌ରେ କୌଣସି ଏକ ଭଲ ହୋଟେଲରେ ଛାଡ଼ିଦେବା ପାଇଁ ପ୍ରସ୍ତାବ ଦେଲେ । ସେତେବେଳକୁ ତାଙ୍କ ପରିବାର ଲୋକମାନେ ଗାଡ଼ିରେ ବସିସାରିଥା'ନ୍ତି । ମୁଁ ତାଙ୍କୁ ଧନ୍ୟବାଦ ଜଣାଇ ମୋ' ଲାଗି ଗୋଟେ ଟ୍ୟାକ୍ସିର ବନ୍ଦୋବସ୍ତ କରାଇଦେବାକୁ ଓ ମ୍ୟୁନିସିପାଲ କର୍ପୋରେସନ୍ ଅଫିସ ନିକଟବର୍ତ୍ତୀ

କୌଣସି ଏକ ଭଲ ହୋଟେଲରେ ମତେ ଛାଡ଼ିଦେବାକୁ ଅନୁରୋଧ କଲି । ସେ ସଙ୍ଗେ ସଙ୍ଗେ ଗୋଟେ ଟ୍ୟାକ୍ସିକୁ ଡାକି ତାମିଲ୍ ଭାଷାରେ କ'ଣ କହିଲେ ଏବଂ ହୋଟେଲରେ ଓହ୍ଲାଇ ତାକୁ ୮୦ ଟଙ୍କା ଦେବାପାଇଁ କହିଲେ । ମୁଁ ତାଙ୍କୁ ଧନ୍ୟବାଦ ଦେଇ ହୋଟେଲକୁ ଗଲି । ଏବେ ମଧ୍ୟ ସେଇ ସହୃଦୟ ଭଦ୍ରବ୍ୟକ୍ତିଙ୍କ ମୁହଁ ଆଖି ଆଗରେ ଭାସିଯାଏ ।

ହୋଟେଲରେ ମୋର ନିତ୍ୟକର୍ମ ସାରି ଜଳଖିଆ ଖାଇ ଦଶଟାବେଳକୁ ଗୋଟେ ଅଟୋରିକ୍ସା ଭଡ଼ା କରି ମ୍ୟୁନିସିପାଲ କର୍ପୋରେସନ୍ ଅଫିସ୍‌ରେ ପହଞ୍ଚିଲି । ବ୍ରିଟିଶ ଅମଳର ସୁଉଚ୍ଚ ଦ୍ୱିତଳ କୋଠା । ପାହାଚରେ ଲାଲ୍‌ରଙ୍ଗର ଗାଲିଚା ପଡ଼ିଛି । ଆମର ଚୌଧୁରୀବଜାରର ପୁରୁଣା କୋଠା (ଯେଉଁଠାରେ ସାମ୍ନା ଫାଟକରେ ଗୋଟେ ଗୋଟେ ଷଣ୍ଢ ନିର୍ବିଘ୍ନରେ ପାକୁଳି କରୁଥାଏ ।) କଥା ମନେପଡ଼ି ହସ ଲାଗିଲା । ଅଫିସର୍‌ମାନଙ୍କର ନାମ ଲେଖା ବୋର୍ଡକୁ ପଢ଼ି ପଢ଼ି ଯାଉଥାଏ । ଦୁଇ ଜଣ ସୁପରିଣ୍ଟେଣ୍ଡେଣ୍ଟ ଇଞ୍ଜିନିୟର ଓ ଛଅ ସାତ ଜଣ ମୋ'ପରି ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କ ନାଁ ଲେଖା ହୋଇଥାଏ । ବିରାଟ କର୍‌ପୋରେସନ୍ । ସେତେବେଳେ ମାଡ୍ରାସରେ ରାଷ୍ଟ୍ରପତି ଶାସନ ଚାଲୁଥାଏ । ରାଜ୍ୟପାଳ ଥାଆନ୍ତି ଶ୍ରୀଯୁକ୍ତ ପି.ସି. ଆଲେକ୍‌ଜାଣ୍ଡର, ଆଇ.ଏ.ଏସ୍. (ରିଟାୟାର୍ଡ) । ମୁଁ ମ୍ୟୁନିସିପାଲ କମିସନରଙ୍କ ଅଫିସ୍ ରୁମ୍ ପାଖରେ ପହଞ୍ଚି ତାଙ୍କ ପ୍ରାଇଭେଟ୍ ସେକ୍ରେଟାରୀଙ୍କୁ ମୋର ଆସିବାର ଉଦ୍ଦେଶ୍ୟ ଜଣାଇଲି ଏବଂ କମିସନରଙ୍କୁ ସାକ୍ଷାତ କରାଇଦେବା ପାଇଁ ଅନୁରୋଧ କଲି । ସେ ସଙ୍ଗେ ସଙ୍ଗେ କହିଲେ, ''ଆଜି କର୍‌ପୋରେସନ୍ ଷ୍ଟ୍ରାଇକ୍ ଥିବାରୁ ମାଡାମ୍ ଅତି ବ୍ୟସ୍ତ ଅଛନ୍ତି । ତେଣୁ ଦେଖା ହୋଇପାରିବନି । ଆପଣ କାଲି ଆସନ୍ତୁ ।'' ସକାଳ କଥା ମନେପଡ଼ି ମତେ ଲାଗିଲା-- ଆଜି ବୋଧେ ବେଳଟା ଠିକ୍ ନାହିଁ । ମନରେ କ'ଣ ଭାବି ପ୍ରାଇଭେଟ୍ ସେକ୍ରେଟାରୀଙ୍କୁ ଖଣ୍ଡେ କାଗଜ ମାଗିଲି ଏବଂ ମନେ ମନେ ଭାବିଲି ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଲେଖିଲେ ମାଡାମ୍ ବୋଧେ ଡାକିବେ ନାହିଁ । ତାଙ୍କ ପାଖରେ ତ ଅଧଡଜନେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଅଛନ୍ତି । ପିଲାଦିନୁ ମୋର ହସ୍ତାକ୍ଷର ଉପରେ ଟିକିଏ ଗର୍ବ ଥାଏ । ସ୍କୁଲରେ ହସ୍ତାକ୍ଷର ଲାଗି ମୁଁ ବରାବର ଦଶରୁ ଆଠ କିମ୍ବା ନ' ପାଉଥିଲି ।

ହଠାତ୍ ମୋ ନାଁ ଏବଂ 'Chief Municipal Engineer, Cuttack, Municipal Corporation, Odisha' ଲେଖି କମିସନରଙ୍କୁ ଦେବାକୁ କହିଲି । ଅନିଚ୍ଛାସତ୍ତ୍ୱେ ସେ ମୋ ଲେଖା ନେଇ ଭିତରକୁ ଗଲେ । ଦୁଇ ତିନି ମିନିଟ୍ ଭିତରେ ରୁମ୍‌ରୁ ବାହାରି କମିସନର୍ ଡାକୁଛନ୍ତି ବୋଲି କହିଲେ । ମତେ ଲାଗିଲା ଯେ ସେ

ନିଜେ ଯେପରି ଆଶ୍ଚର୍ଯ୍ୟ ହୋଇଯାଇଛନ୍ତି । ମୁଁ ରୁମ୍ ଭିତରକୁ ଗଲି । ସୁନ୍ଦର ଭାବରେ ସଜ୍ଜିତ ପ୍ରକୋଷ୍ଠ । ଟେବୁଲ ଉପରେ ସୁଶୋଭିତ ଫୁଲଦାନି । ଚୌକି ଉପରେ ଶୁଭ୍ରବସ୍ତ୍ର ପରିହିତା ମ୍ୟୁନିସିପାଲ କମିସନର୍ ଶାନ୍ତାଶୀଲା ନାୟାର । ସେତେବେଳ ପର୍ଯ୍ୟନ୍ତ ସେ ମୋ କାଗଜଟା ହାତରେ ଧରିଥାଆନ୍ତି ଏବଂ ମୋତେ ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ଚାହୁଁଥାନ୍ତି । ମୁଁ ନମସ୍କାର କଲାପରେ ସେ ମୋତେ ବସିବାକୁ କହିଲେ । ମତେ ଲାଗିଲା, ମୁଁ ନିଜେ ମୋ ହସ୍ତାକ୍ଷର ନ ଲେଖି ଟାଇପ୍ କରି ପଠାଇଥିଲେ, ବୋଧହୁଏ ସେ ମୋତେ ଡାକି ନ ଥା'ନ୍ତେ । ମୁଁ ଦେଖିଲି ଉତ୍ତମ ହସ୍ତାକ୍ଷର ବେଳେ ବେଳେ ମଣିଷକୁ ବହୁତ ସାହାଯ୍ୟ କରେ ।

ତା'ପରେ ସେ ବେଲ୍ ଟିପିଲେ ଏବଂ ପି.ଏ.କୁ କହିଲେ, "Put me to Collector Dindigul". ଫୋନ୍ ଆସିବା ପରେ କହିଲେ, "Saranji ! another Mrutyunjay Pattnaik from your state. Another brilliant officer." (ମୃତ୍ୟୁଞ୍ଜୟ ଷଡ଼ଙ୍ଗୀ, ଆଇ.ଏ.ଏସ୍., ସେ ବର୍ତ୍ତମାନ ଭାରତ ସରକାରଙ୍କର ଲେବର୍ ସେକ୍ରେଟାରୀ) । ସେତେବେଳେ ମୁଁ ଜାଣିପାରିଲି ସେ ମୃତ୍ୟୁଞ୍ଜୟ ଷଡ଼ଙ୍ଗୀ, ଆଇ.ଏ.ଏସ୍.ଙ୍କ ସହିତ କଥା ହେଉଛନ୍ତି ଏବଂ ତାଙ୍କୁ ଷଡ଼ଙ୍ଗୀ ନ କହି ସରଂଜୀ ବୋଲି ଉଚ୍ଚାରଣ କରୁଛନ୍ତି । ସେ ମୋ ଭାଇର ବ୍ୟାଚ୍ ମେଟ୍ । କଥା ସରିଗଲା ପରେ ସେ ମୋ ଆଡ଼କୁ ଚାହିଁ କହିଲେ, "Mr. Pattnaik, you are hiding many things from me. You have not told that your younger brother is Dist. Magistrate Mathura." ମୁଁ କହିଲି, "Madam ! I did not think it was necessary." She replied of course it is necessary. You are in the family." ମୁଁ ସେଦିନ ଜାଣିଲି ଆଇ.ଏ.ଏସ୍. ବାଲାଙ୍କର ଭ୍ରାତୃଭାବ କେତେ ନିବିଡ଼ । ପରବର୍ତ୍ତୀ କାଳରେ ମୁଁ ସାରା ଭାରତରେ ଏହାର ଅନେକ ଉଦାହରଣ ଦେଖିଛି; ମାତ୍ର ଦୁଃଖର ସହିତ ମତେ କହିବାକୁ ପଡୁଛି ଯେ ଆମ ଇଞ୍ଜିନିୟରମାନଙ୍କ ମଧ୍ୟରେ ସେତେଟା ଆତ୍ମୀୟତା ନାହିଁ ।

ତା'ପରେ ସେ ସୁପରିଣ୍ଟେଣ୍ଡେଣ୍ଟ ଇଞ୍ଜିନିୟରଙ୍କୁ ଡକାଇଲେ ଏବଂ ନିର୍ଦ୍ଦେଶ ଦେଲେ ଗୋଟେ ସାତଦିନିଆ କାର୍ଯ୍ୟକ୍ରମ କରି ମତେସବୁ କଲ୍ୟାଣମଣ୍ଡପ ବୁଲାଇ ଦେଖାଇବାକୁ ଏବଂ ତା'ର ଆନୁଷଙ୍ଗିକ ସମସ୍ତ ତଥ୍ୟ ଦେବାକୁ । କର୍ପୋରେସନ୍‌ର official photographer ଙ୍କୁ ସଙ୍ଗରେ ନେବାକୁ ମଧ୍ୟ ନିର୍ଦ୍ଦେଶ ଦେଲେ । ତା'ପରେ ମତେ ପଚାରିଲେ, ''ଆପଣ ଏଠାକୁ କିପରି ଆସିଛନ୍ତି ?'' ମୁଁ କହିଲି, ''ମାଡାମ୍, ମୁଁ ପାଖରେ ଗୋଟେ ହୋଟେଲରେ ରହୁଛି । ତେଣୁ ଅଟୋରିକ୍ସାରେ ଆସିଛି ।

ସଙ୍ଗେ ସଙ୍ଗେ କରପୋରେସନ୍‌ରୁ ଗୋଟେ କାର୍ ମୁଁ ଭୁବନେଶ୍ୱର ଫେରିବା ପର୍ଯ୍ୟନ୍ତ ମୋ ପାଖରେ ରହିବ ବୋଲି ଅର୍ଡର କରିଦେଲେ । ମୁଁ କର୍ପୋରେସନ୍ ଅତିଥି ଭବନରେ ରହିବା ପାଇଁ ଇଚ୍ଛୁକ କି ନାହିଁ ପଚାରିଲେ । ମୁଁ କହିଲି, ''ମାଡାମ୍, ମୁଁ ଯେଉଁଠାରେ ଅଛି, ସେଇଟା ଭଲ ହୋଟେଲ ଏବଂ ଦକ୍ଷିଣ ଭାରତୀୟ ଖାଦ୍ୟ ମୋର ଭାରି ପ୍ରିୟ ।'' ଫେରିବା ବେଳେ ତାଙ୍କ ନିଜ ଅଫିସ୍ କାରରେ ମୋତେ ହୋଟେଲରେ ଛାଡ଼ିବାପାଇଁ ଆଦେଶ ଦେଲେ । ଅଧଘଣ୍ଟା ପୂର୍ବରୁ ତାଙ୍କ ରୁମ୍‌କୁ ଯିବାକୁ ଅନୁମତି ମିଳିବ କି ନାହିଁ ମୋର ସନ୍ଦେହ ଥିଲା । ବର୍ତ୍ତମାନ ଆଶାତୀତ ଭାବରେ ତାଙ୍କର ସାହାଯ୍ୟ, ସହୃଦୟତା ତଥା କର୍ମତତ୍ପରତା ମତେ ଅଭିଭୂତ କରିଦେଲା । ଧନ୍ୟବାଦ ଜଣାଇ ମୁଁ ବିଦାୟ ନେଇ ଆସିଲି ଏବଂ ଯିବା ପୂର୍ବରୁ ତାଙ୍କୁ ଦେଖା କରିବି ବୋଲି ପ୍ରତିଶ୍ରୁତି ଦେଲି ।

କହିବା ବାହୁଲ୍ୟ, ତାଙ୍କର ଏବଂ ସୁପରିଣ୍ଟେଣ୍ଡେଣ୍ଟ ଇଞ୍ଜିନିୟରଙ୍କର ଅକୁଣ୍ଠ ସହଯୋଗ ଫଳରେ ମୁଁ ଡିପାର୍ଟମେଣ୍ଟ ଲାଗି ଫଟୋ ସହିତ ସୁନ୍ଦର ତଥ୍ୟପୂର୍ଣ୍ଣ ରିପୋର୍ଟ ପ୍ରସ୍ତୁତ କଲି, ଯାହାକି ମୋର ବରିଷ୍ଠ ଅଫିସରମାନଙ୍କୁ ବହୁତ ପ୍ରୀତ କଲା । ମାନ୍ୟବର ମନ୍ତ୍ରୀ ଶ୍ରୀଯୁକ୍ତ ବଟକୃଷ୍ଣ ଜେନା (ସେ ଆଉ ଇହଧାମରେ ନାହାନ୍ତି) ଏ ରିପୋର୍ଟ ଦେଖି ମତେ ବହୁତ ପ୍ରଶଂସା କଲେ ।

ତାଙ୍କ ସଙ୍ଗେ ସେଇ ଥରକର ଦେଖା । ଅନେକଦିନ ପରେ ଖବରକାଗଜରେ ଦେଖିଲି ଯେ ନାଲ୍‌କୋ କାରଖାନା ପରିଦର୍ଶନ କରିବାକୁ ଭାରତ ସରକାରଙ୍କର ଖଣିବିଭାଗର ସଚିବ ଶ୍ରୀମତୀ ଶାନ୍ତାଶୀଳା ନାୟାର ଓଡ଼ିଶା ଆସୁଛନ୍ତି । ସେ ଅତ୍ୟନ୍ତ କାର୍ଯ୍ୟବ୍ୟସ୍ତ ଥିବାରୁ ବହୁତ ଇଚ୍ଛା ଥିଲେ ମଧ ମୁଁ ତାଙ୍କୁ ସୌଜନ୍ୟମୂଳକ ସାକ୍ଷାତ କରିପାରିଲି ନାହିଁ । ମୁଁ ସେତେବେଳେ ପୂର୍ତ୍ତ ବିଭାଗର ଚିଫ୍ ଇଞ୍ଜିନିୟର ଥାଏ । ମାତ୍ର ସେହି ଶୁଭ୍ର ବସ୍ତ୍ର ପରିହିତା ହାସ୍ୟମୟୀ, ସ୍ପଷ୍ଟବାଦୀ, କର୍ମତତ୍ପର ଆଇ.ଏ.ଏସ୍. ଅଫିସରଙ୍କ ଛବି ମୋ' ଆଖି ଆଗରେ ଭାସିଉଠିଲା । ମୋ କାନରେ ଯେପରି କିଏ କହିଉଠିଲା, "Another Mrutyunjay, another brilliant officer from Odisha." ଭଗବାନ୍ ତାଙ୍କୁ ଦୀର୍ଘାୟୁ କରନ୍ତୁ ।

□□□

## ଅମୂଲ୍ୟରତ୍ନ ନନ୍ଦ
## ତୁଙ୍ଗ ପ୍ରଶାସକ ଓ ଅନ୍ତରଙ୍ଗ ବନ୍ଧୁ

ଅମୂଲ୍ୟ ବିଷୟରେ ଲେଖିଲାବେଳେ କେଉଁଠୁ ଆରମ୍ଭ କରିବି ଏବଂ କ'ଣ ଲେଖିବି ଜାଣିପାରୁନି । ସେ ମୋର ଶୈଶବର ବନ୍ଧୁ । ତାଙ୍କ ବାପା ଶ୍ରୀଯୁକ୍ତ ଜନାର୍ଦ୍ଦନ ନନ୍ଦ ଆମ ଗାଁ ବଡ଼ମ୍ବାରେ ଡାକ୍ତର ଥିଲେ । ଆମେ ପିଲାବେଳେ ଗୋଟେ ସ୍କୁଲରେ ପଢୁଥିଲୁ । ପରେ ବଦଳି ହୋଇ ଚାଲିଯିବାରୁ ସେ ରେଭେନ୍ସା କଲିଜିଏଟ୍‌ରେ ପଢ଼ିଲା ଏବଂ ଦଶମ ଶ୍ରେଣୀ ବେଳକୁ ତାଙ୍କ ବାପା ଅବସର ନେଲେ । ତାଙ୍କ ଗାଁ ପି.ଏମ୍. ଏକାଡେମୀରେ ପଢ଼ି ସେଠାରୁ ସେ ମାଟ୍ରିକ୍ ପରୀକ୍ଷା ଦେଲା । ସେତେବେଳେ ପରୀକ୍ଷା କେନ୍ଦ୍ର ଥାଏ ଆଠଗଡ଼ର ବିଶ୍ୱନାଥ ବିଦ୍ୟାପୀଠ । ସେତେବେଳେ ପ୍ରତ୍ୟେକ ଭଲ ଛାତ୍ର ମନରେ ଗୋଟିଏ ଗୋପନ ଇଚ୍ଛା ଥାଏ, କେମିତି ସମଗ୍ର ଓଡ଼ିଶାରୁ ପ୍ରଥମ ଦଶଜଣଙ୍କ ମଧ୍ୟରେ ସ୍ଥାନ ଅଧିକାର କରିବ ।

ଯେଉଁଦିନ ପରୀକ୍ଷା ସରିଲା, ଆମେ ଦୁଇ ଜଣ ଆଠଗଡ଼ର 'ବାଉତୀ' ମନ୍ଦିରରେ ଠାକୁରାଣୀଙ୍କୁ ଦର୍ଶନ କରି ଫେରୁଥିଲୁ । ମୁଁ କହିଲି, ''ଅମୂଲ୍ୟ, ଗଣିତରେ Height & Distance ଅଙ୍କଟା ଭୁଲ୍ ହୋଇଗଲା । ୧୮ ନମ୍ବର ଗଲା ।'' ସେତେବେଳେ ଅଙ୍କରେ ୨୦୦ରୁ ୨୦୦ ନ ରଖିଲେ ପ୍ରଥମ ଦଶଜଣଙ୍କ ଭିତରେ ରହିବା ଆଶା ବୃଥା ବୋଲି ଆମ ପ୍ରଧାନ ଶିକ୍ଷକ ବାରମ୍ବାର ଚେତାବନୀ ଦେଉଥିଲେ । ସେ କହିଲା, ''ବ୍ୟସ୍ତ ହୁଅନି । ପ୍ରଶ୍ନଟା ଭୁଲ୍ ଅଛି, ମୋର ମଧ୍ୟ ଭୁଲ୍ ହୋଇଛି । ତମେ ନିଶ୍ଚୟ ପ୍ରଥମ ଦଶ ଜଣଙ୍କ ଭିତରେ ଯିବ ।'' ପରୀକ୍ଷାଫଳ ସମାଜରେ ବାହାରିଲା । ଦେଖିଲାବେଳକୁ ଯାଜପୁରର ଶ୍ରୀ ସହଦେବ ସାହୁ (ପରବର୍ତ୍ତୀ କାଳରେ ଓଡ଼ିଶାର ଚିଫ୍ ସେକ୍ରେଟାରୀ) ପ୍ରଥମ ହୋଇଛି ଏବଂ ମାତ୍ର ଦୁଇ ନମ୍ବର କମ୍ ରଖି ଅମୂଲ୍ୟ ଦ୍ୱିତୀୟ ସ୍ଥାନ ଅଧିକାର କରିଛି । ଭଗବାନ୍‌ଙ୍କ କୃପାରୁ ରେଭେନ୍ସା କଲିଜିଏଟ୍‌ର ସୁବୀର ରାଓ ଏବଂ ମୋହନ ସୁବୁଦ୍ଧି ହାଇସ୍କୁଲରୁ ମୁଁ -- ଉଭୟେ ନବମ ସ୍ଥାନ ଅଧିକାର କରିଛୁ । ଆଉ ଗୋଟିଏ ନମ୍ବର କମିଥିଲେ ପ୍ରଥମ ଦଶ ଜଣଙ୍କ ଭିତରେ ଯିବା ସ୍ୱପ୍ନଟା ସ୍ୱପ୍ନରେ ରହିଯାଇଥାନ୍ତା । ମୋ'ଠାରୁ ଏକ ନମ୍ବର କମ୍ ରଖି ପାସ୍ କରିଥିବା ବାଲେଶ୍ୱରର ତରୁଣକୃଷ୍ଣ କମିଲା ପରେ ଆଇ.ଏ.ଏସ୍. ପାଇ ଆସାମର ଚିଫ୍ ସେକ୍ରେଟାରୀ ରୂପେ ଅବସର ନେଲେ।

ଆମେ ଦୁହେଁ ରେଭେନ୍‌ସା କଲେଜରେ ନାମ ଲେଖାଇଲୁ । ଦୈବଯୋଗକୁ ୱେଷ୍ଟ ହଷ୍ଟେଲରେ ଏକାଠି ରହିଲୁ । ମୋର ଯେତେଦୂର ମନେପଡୁଛି ମୋର ରୁମ୍

ନଂ-୬ ଏବଂ ଅମୂଲ୍ୟର ରୁମ୍ ନଂ-୩ ଥିଲା । ମୋର ଇଚ୍ଛା ଥିଲା ଆଇ.ଏସସି. ପରୀକ୍ଷା ପରେ ବି.ଏ.କୁ ବଦଳାଇ ରାଜନୀତି ବିଜ୍ଞାନ ଅନର୍ସ ନେଇ ଆଇ.ଏ.ଏସ୍. ପାଇବା ଲାଗି ପ୍ରସ୍ତୁତି କରିବି । ମାତ୍ର କଥାରେ ଅଛି, 'ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ' । ସେ ବର୍ଷ ପ୍ରଶ୍ନପତ୍ର ପ୍ରଘଟ ହେବାରୁ ଦୁଇଥର ପରୀକ୍ଷା ହେଲା ଏବଂ ମୋର ପରୀକ୍ଷାରେ ଖରାପ ହେଲା । ଦୁଇ ନମ୍ବର ଲାଗି ମୁଁ ପ୍ରଥମ ଶ୍ରେଣୀରୁ ବଞ୍ଚିତ ହେଲି, ଯାହାକି ପରବର୍ତ୍ତୀ ଜୀବନରେ ମୋର ଗତିପଥକୁ ସମ୍ପୂର୍ଣ୍ଣ ବଦଳାଇ ଦେଇଥିଲା ।

ସହଦେବ ତା'ର ପୂର୍ବ ସ୍ଥାନ ବଜାୟ ରଖି ଓଡ଼ିଶାରେ ପ୍ରଥମ ହେଲା ଏବଂ ବି.ଏ.ରେ ନାଁ ଲେଖାଇଲା । ଅମୂଲ୍ୟ ଆଇ.ଏ.ରେ ପ୍ରଥମ ଶ୍ରେଣୀ ପାଇ ବି.ଏ.ରେ ନାଁ ଲେଖାଇଲା । ମୋର ଫଳ ଖରାପ ହୋଇଥିବାରୁ ମୁଁ ଲୁଚି ଲୁଚି ବି.ଏ.ରେ ନାଁ ଲେଖାଇଲି । ସେତେବେଳେ ଓଡ଼ିଶାରେ ନିର୍ମାଣ ଯୁଗ ଚାଲିଥାଏ । ସମସ୍ତେ ଇଞ୍ଜିନିୟରିଂକୁ ମୁହାଁଇଥା'ନ୍ତି । ମୋର ମଧ୍ୟ ବୁର୍ଲା ଇଞ୍ଜିନିୟରିଂ କଲେଜରେ ନାମ ଲେଖା ପାଇଁ ଚିଠି ଆସିଲା । ଆଇ.ଏ.ଏସ୍. ହେବା ଆଶା ତ୍ୟାଗକରି ଯାଇ ବୁର୍ଲା କଲେଜରେ ନାମ ଲେଖାଇଲି । ମାତ୍ର ଫଳ ଯାହା ହେବାର କଥା ହେଲା । ଇଞ୍ଜିନିୟରିଂରେ ଆଦୌ ମନ ଲାଗିଲାନି । ପ୍ରଥମ ବର୍ଷ ଫଳ ବହୁତ ଖରାପ ହେଲା । ସେତେବେଳେ ଅମୂଲ୍ୟ ମୋତେ ବହୁତ ବୁଝାଇଛି, ''ମୃତ୍ୟୁଞ୍ଜୟ ! ମୋ କଥା ମାନ । ତମର ଇଂରାଜୀ ତୃତୀୟ ପେପର୍‌ରେ ବହୁତ ଭଲ ନମ୍ବର ଥିଲା । (ସେତେବେଳେ ଆଇ.ଏ. / ଆଇ.ଏସ୍‌ସି.ରେ ୩୦୦ ନମ୍ବର ଥିଲା ।) ତମେ କଳାକୁ ପରିବର୍ତ୍ତନ କରିଦିଅ ।''

ଆମର ମଧ୍ୟବିତ୍ତ ପରିବାର । ମୋ ତଳେ ଦଶ ଜଣ ଭାଇଭଉଣୀ । ମୁଁ ସବୁଠାରୁ ବଡ଼ । ତେଣୁ ଆଇ.ଏ.ଏସ୍. ପରୀକ୍ଷା ଦେବାକୁ ସାହସ ହେଲାନି । ସହଦେବ ସାହୁ ଓ ଅମୂଲ୍ୟ କୃତିତ୍ୱର ସହ ଏମ୍.ଏ. ପାସ୍ କରି ଆଇ.ଏ.ଏସ୍. ହେଲେ । ମୁଁ ଓଡ଼ିଶା ସରକାରଙ୍କ ଅଧୀନରେ ଆସିଷ୍ଟାଣ୍ଟ ଇଞ୍ଜିନିୟର ହୋଇ ୧୯୬୩ ମସିହାରେ ଚାକିରିରେ ଯୋଗଦେଲି ।

ଆଇ.ଏ.ଏସ୍. ପାଇବା ଆଗରୁ ଅମୂଲ୍ୟ କିଛିଦିନ ପାଇଁ ଖଲ୍ଲିକୋଟ ରାତ୍ରିକାଳୀନ କଲେଜରେ ଲେକ୍‌ଚରର୍ ଥିଲା । ତା'ର ଭଡ଼ାଘରର ମାଲିକ ଖୁବ୍ କୃପଣ ଥିଲେ । ଯଦିଓ ସେ ଭଲରୂପେ ଜାଣିଥାନ୍ତି ଯେ ଅଧ୍ୟାପକମାନେ ୫/୬ ତାରିଖରେ ଦରମା ପା'ନ୍ତି, ତଥାପି ସେ ପହିଲା ଦିନ ଆସି ଘରଭଡ଼ା ମାଗିବ । ଅମୂଲ୍ୟକୁ ବହୁତ ଖରାପ ଲାଗେ । ତା'ପରେ ଖବରକାଗଜରେ ବାହାରିଲା ଯେ ସେ ସେଇ ବର୍ଷ ଆଲାଏଡ୍ ପାଇଛି

ଏବଂ ଇନ୍‌କମ୍ ଟ୍ୟାକ୍ସ ଚାକିରି ଲାଗି ମନୋନୀତ ହୋଇଛି । ବାସ୍ ! ଘରଭଡ଼ାବାଲା ଆଉ ଟଙ୍କା ମାଗିବ କ'ଣ ? ପ୍ରଭୂତ ଯୌତୁକ ସାଙ୍ଗକୁ ନିଜର ସ୍ଥୂଳକାୟା କନ୍ୟାର ବିବାହ ପ୍ରସ୍ତାବ ନେଇ ଆସିଲା । କହିବା ବାହୁଲ୍ୟ, ଅମୂଲ୍ୟ ଅତ୍ୟନ୍ତ ନମ୍ରତାର ସହିତ ତାକୁ ପ୍ରତ୍ୟାଖ୍ୟାନ କଲା ।

ଏ ସମୟରେ ଆଉ ଗୋଟେ ମଜା ଘଟଣା ଘଟିଲା । ବି.ଏ. ପଢ଼ିବାବେଳୁ ଅମୂଲ୍ୟର ଜଣେ କଲେଜ ଅଧ୍ୟାପକଙ୍କର ଅପୂର୍ବ ସୁନ୍ଦରୀ କନ୍ୟା ସହିତ ମଧୁର ସଂପର୍କ ଗଢ଼ିଉଠିଥିଲା । ସେ ଅତି ସୁନ୍ଦର ଗୀତ ଗାଇପାରେ ଏବଂ ଆମ ବନ୍ଧୁ ଜଣେ ସଙ୍ଗୀତ ରସିକ । ଆହ୍ଲାବାଦରେ ପଢ଼ିବାବେଳେ ବହୁତ ସାହସ ସଞ୍ଚୟ କରି ନିଜ ମନକଥା କହିଲା ଏବଂ ଅଧ୍ୟାପକ ଚାକିରି ପାଇବ ବୋଲି ସେ ନିଶ୍ଚିତ ବୋଲି ଜଣାଇଲା । ମାତ୍ର ଅଧ୍ୟାପକଜଣକ ଜଣେ ସାମାନ୍ୟ ଅଧ୍ୟାପକକୁ ତାଙ୍କର ସୁନ୍ଦରୀ କନ୍ୟାକୁ ବିବାହ ଦେବାକୁ ସମ୍ପୂର୍ଣ୍ଣ ଅନିଚ୍ଛୁକ ଥିଲେ । ଭାଗ୍ୟ ବଳରୁ ତା'ର ଦୁଇ ବର୍ଷ ପରେ ସେ ଆଇ.ଏ.ଏସ୍. ପାଇଗଲା । ସେତେବେଳେ ଆଇ.ଏ.ଏସ୍. ଚାକିରିକୁ ମର୍ତ୍ତ୍ୟର ଇନ୍ଦ୍ରପଦ କୁହାଯାଉଥାଏ । ସଙ୍ଗେ ସଙ୍ଗେ ଅଧ୍ୟାପକଜଣକ ବିବାହ ପ୍ରସ୍ତାବ ନେଇ ହାଜର ଏବଂ ଅମୂଲ୍ୟରତ୍ନ ଯେ କିଭଳି ଜଣେ ଉଜ୍ଜ୍ୱଳ ରତ୍ନ, ତାହା ସେ ପ୍ରଥମରୁ ଜାଣିଥିଲେ ବୋଲି କହିଲେ । ମାତ୍ର ନିଜର ସ୍ୱାଭିମାନ ହେତୁ ଏବଂ ପ୍ରଥମରୁ ପ୍ରତ୍ୟାଖ୍ୟାତ ହୋଇଥିବାରୁ ସେ ସେଠାରେ ବାହା ହୋଇପାରିଲାନି । ମାତ୍ର ମୁଁ ପରେ ଦେଖିଛି, ସେ ଝିଅ ଏବଂ ତା'ର ଅନ୍ୟ ଭଉଣୀମାନେ ଅମୂଲ୍ୟ ଉଚ୍ଚ ପଦବୀରେ ଥିବାବେଳେ ତା'ର ବହୁତ ସୁଯୋଗ ନେଇଛନ୍ତି ।

ଥରକର କଥା । ସେତେବେଳକୁ ସେ ପୁରୀରେ କଲେକ୍ଟର ଭାବେ ଅବସ୍ଥାପିତ ହୋଇଥାଏ । ମୁଁ ରାଇରଙ୍ଗପୁରରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥାଏ । ମତେ ଥରେ କଟକରୁ ସାଙ୍ଗରେ ନେଇକରି ଗଲା । ମୁଁ କହିଲି, ‘‘ଚାଲ ! ତମେ କେମିତି କଲେକ୍ଟର ହୋଇଛ, ଦେଖିବା । ଆମେ ଦୁଇ ଜଣ ତା' ଶୋଇବାଘରେ ଶୋଇଲୁ । ଶ୍ରୀମତୀ ନନ୍ଦ କିଛିଦିନ ପାଇଁ ତାଙ୍କ ବାପଘରକୁ ଯାଇଥାଆନ୍ତି । ସକାଳ ଭ୍ରମଣ ପରେ ଦୁଇ କପ୍ ଚା' ପାଇଁ ସେ ପୂଝାରୀକୁ କହିଲା; ମାତ୍ର ଅଧଘଣ୍ଟା ଗଲାପରେ ଚା' ନ ଆସିବାର ଦେଖି ମୁଁ ରୋଷେଇଘରକୁ ଗଲି ଏବଂ ଦେଖିଲି ସେ ପିଅନଟି ବଡ଼ ବିବ୍ରତ ଅବସ୍ଥାରେ ଅଛି । ବହୁତ ପଚାରିବାରେ ସେ କହିଲା, ‘‘ସାର୍, କାଲିଠାରୁ ଗ୍ୟାସ୍ ସରିଯାଇଛି'' । ମା' ତ ନାହାନ୍ତି, କାହାକୁ କହିବି ?'' ମତେ ବହୁତ ହସ ଲାଗିଲା । ମୁଁ ଶୋଇବା ଘରକୁ ଫେରି ତାକୁ ପଚାରିଲି -- ତମ ସି.ଏସ୍.ଓ.ଙ୍କ ନାଁ କ'ଣ ଓ ତାଙ୍କ ଟେଲିଫୋନ୍ ନମ୍ବର କେତେ ? ତା'ପରେ ସି.ଏସ୍.ଓ. ତୀର୍ଥବାସୀବାବୁଙ୍କୁ

(ଆମ ଗାଁ ଲୋକ, ପରେ କଟକର ଜିଲ୍ଲାପାଳ)ଙ୍କୁ କହିଲି, ''ତୀର୍ଥବାସୀବାବୁ ! ତମେ ଜିଲ୍ଲାପାଳ ଏବଂ ମୁଁ ସକାଳୁ ଚା' ଖାଇନୁ, କାରଣ ଘରେ ଗ୍ୟାସ୍ ନାହିଁ ।'' ସେ କିଛି କହିଲେନି । ପନ୍ଦର ମିନିଟ୍ ପରେ ବାହାରେ ଜିପ୍ ରହିଲା । ସେ ଦୁଇଟା ଗ୍ୟାସ୍ ଧରି ପହଞ୍ଚିଲେ ଏବଂ ମତେ କହିଲେ, ବୁଝିଲ ! ଇଜିନାବାବୁ ! (ମୋର ଡାକ ନାଁ) କଲେକ୍ଟର ଦରମା ପାଇବା ଦିନ ଦୁଇଟା ଗ୍ୟାସ୍ ପାଇଁ ଟଙ୍କା ଅଗ୍ରିମ ଦିଅନ୍ତି କେବଳ କୋଠିରୁ ଫୋନ୍ ଗଲେ ଗ୍ୟାସ୍ ପଠାଇ ଦିଆହୁଏ । ଏଥର କେହି ଫୋନ୍ କରି ନାହାନ୍ତି ।'' ବହୁତ ହସ ହେଲା । ସମସ୍ତେ ମିଶି ଏକାଠି ଚା' ପିଇଲୁ ।

ଆଉ ଥରକର କଥା । ସେ ସେଣ୍ଟ୍ରାଲ୍ ଡିଭିଜନ ଆର୍.ଡି.ସି. ଥାଏ । ନୂଆବର୍ଷ ପଡ଼ିଲା । ମୁଁ କହିଲି, ''ତମେ ତ ୫ଟି ଜିଲ୍ଲାର ମାଲିକ । ଜଣେ କଲେକ୍ଟରଙ୍କୁ କୁହ ଗୋଟେ ପିକ୍‌ନିକ୍‌ର ବ୍ୟବସ୍ଥା କରିବା ଲାଗି ।'' ଅମୂଲ୍ୟ ଅତ୍ୟନ୍ତ ସରଳ ଥିଲା ଏବଂ କାହାକୁ ସାମାନ୍ୟ ଅସୁବିଧାରେ ପକାଇବାକୁ ଚାହୁଁ ନ ଥିଲା । ତା' ତିନି ଝିଅ ମୋତେ କହିଲେ, ''ଅଙ୍କଲ୍ ! ନନା ଯଦି ଦାୟିତ୍ୱ ନେବେ, ତେବେ ନୂଆବର୍ଷରେ ଉପାସ ରହିବା ସାର ହେବ । ଆପଣ ଏଥର ବ୍ୟବସ୍ଥା କରନ୍ତୁ ।'' ବହୁତ ଆଲୋଚନା ପରେ ଟାଙ୍ଗୀ 'ପ୍ରମୋଦ ଉଦ୍ୟାନ'ରେ ବିରିୟାନୀ ମଧ୍ୟାହ୍ନ ଭୋଜନ ହେବାର ସ୍ଥିର ହେଲା । ମୃତ୍ତିକା ସଂରକ୍ଷଣ ଅଧିକାରୀ (Soil Conservation Officer) ଶ୍ରୀଯୁକ୍ତ ବିଜୟରାମ୍ ଦାସ ଆମର ବନ୍ଧୁ । ସେ କହିଲେ, ''ମୃତ୍ୟୁଞ୍ଜୟବାବୁ, ମୁଁ ସେଠି ସବୁ ବନ୍ଦୋବସ୍ତ କରିଦେଉଛି । ଆପଣ କେବଳ ବିରିୟାନୀ ବନ୍ଦୋବସ୍ତ କରନ୍ତୁ ।'' ମୁଁ ସେତେବେଳକୁ କଟକ ମ୍ୟୁନିସିପାଲିଟି କର୍‌ପୋରେସନ୍‌ର ମ୍ୟୁନିସିପାଲ୍ ଇଞ୍ଜିନିୟର । ଜଣେ ଦକ୍ଷ ଜୁନିୟର ଇଂଜିନିୟର ସୁଦାମ ସାହୁଙ୍କୁ ସକାଳ ଜଳଖିଆ ଓ ବିରିୟାନୀ ବନ୍ଦୋବସ୍ତ କରିବାକୁ କହିଲି ଓ ତାଙ୍କ ପାଇଁ ଗୋଟେ ଗାଡ଼ିର ବ୍ୟବସ୍ଥା କରିଦେଲି । ସକାଳ ୯ଟା ସୁଦ୍ଧା ତା'ର ଏବଂ ମୋ ପରିବାର 'ପ୍ରମୋଦ ଉଦ୍ୟାନ' ଅଭିମୁଖେ ଚାଲିଗଲେ । ତା'ର କ'ଣ କାମ ଥିବାରୁ ଆମେ ଦୁହେଁ ୨/୩ ଘଣ୍ଟା ପରେ ଯିବାକୁ ସ୍ଥିର ହେଲା । ଆମେ ୧୨ଟା ବେଳକୁ ସେଠି ପହଞ୍ଚିଲୁ । ଆର୍.ଡି.ସି. ଯାଉଛନ୍ତି ବୋଲି ତାଙ୍କୁ ସ୍ୱାଗତ କରିବାପାଇଁ ବିଜୟରାମ୍‌ବାବୁ ଦୁଇ ଜଣ ଅଫିସର ପଠାଇଥାଆନ୍ତି । ଆମେ ଦୁହେଁ ଗାଡ଼ିରୁ ଓହ୍ଲାଇଲୁ । ଦୁଇଜଣଯାକ ଅଫିସର ଦୁଇଟିଯାକ ମାଳ ଆଣି ମୋ ବେକରେ ପକାଇଲେ । ଅମୂଲ୍ୟ ମୁରୁକି ମୁରୁକି ହସୁଥାଏ । ତା'ପରେ ମୁଁ ତାଙ୍କୁ ଅମୂଲ୍ୟକୁ ଦେଖାଇ କହିଲି, "Meet Mr. A.R.Nanda, R.D.C." ସେମାନେ ଏତେ ଅପ୍ରସ୍ତୁତ ହୋଇଗଲେ ଯେ ତାଙ୍କୁ ଖାଇଲାବେଳକୁ ଖୋଜିଲାବେଳକୁ ମିଳିଲେନି । ଆଉ କେଉଁ ଅଫିସର ହୋଇଥିଲେ ମନେ ମନେ ବହୁତ ବିରକ୍ତ ହୋଇଥା'ନ୍ତା ।

ମାତ୍ର ଅମୂଲ୍ୟ ତ ରତ୍ନ । କହିଲା, ''ପରିଚୟ ଦେବା କ'ଣ ଦରକାର ଥିଲା ? ତମକୁ ତ ଯେ କେହି ଦେଖିଲେ ଆର୍.ଡି.ସି. ବୋଲି ଭାବିବେ । ମୋ କଥା ମାନି ପରୀକ୍ଷାଟା ଦେଲନି, ନ ହେଲେ ଏତେବେଳକୁ ନିଜେ ଆର୍.ଡି.ସି. ହୋଇ ବସିଥାଆନ୍ତ ।'' ମୋ' ମନର ସୁପ୍ତ ଅଭିଳାଷ ବୁଝି ମୋର ସାନଭାଇ ଗୋପବନ୍ଧୁ ଆଇ.ଏ.ଏସ୍. ହେଲା (ଏବେ ସେ ଉତ୍ତର ପ୍ରଦେଶରେ ଉଚ୍ଚ ପଦବୀରେ କାର୍ଯ୍ୟରତ) । ଏମିତି ବହୁତ ମଜା ହେଲା । ପିଲାମାନେ ବହୁତ ଉପଭୋଗ କଲେ । ତା'ର ବହୁବର୍ଷ ପରେ ବିଜି (ତା'ର ବଡ଼ ଝିଅ) ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପ୍ରଫେସର । ମୁଁ ତାଙ୍କ ଘରକୁ ଗଲାବେଳେ କହିଲା, ''ଅଙ୍କଲ୍ ! ବହୁତ ବିରିୟାନୀ ଖାଇଛୁ; ମାତ୍ର 'ପ୍ରମୋଦ ଉଦ୍ୟାନ' ବିରିୟାନୀ ସବୁବେଳେ ମନେରହିବ ।'' ଅମୂଲ୍ୟ ପରି ତା'ର ଧର୍ମପତ୍ନୀ ଓ ପିଲାମାନେ ମଧ୍ୟ ବହୁତ ସ୍ନେହୀ ।

ଆଉ ଥରକର କଥା । ମୁଁ ଚାକିରିରୁ ଅବସର ନେଲାପରେ ଝିଅ ପାଖକୁ କାଶ୍ମୀର ବୁଲିଯାଇଥିଲି । ଫେରିବାବେଳେ ତା' ପାଖରେ ଦୁଇ ତିନି ଦିନ ଥିଲି । ଅମୂଲ୍ୟ ସେତେବେଳକୁ ଭାରତ ସରକାରଙ୍କ ସ୍ୱାସ୍ଥ୍ୟ ବିଭାଗର ସେକ୍ରେଟାରୀ ଥାଏ । ମୁଁ ଦିନେ ସକାଳୁ ତାକୁ କହିଲି, ''ଭାରତ ସରକାରଙ୍କ ସେକ୍ରେଟାରୀମାନେ କେମିତି ଅଫିସ୍ କରନ୍ତି, ମୁଁ ଟିକିଏ ଦେଖିବି ।'' ସେ କହିଲା, ''ଠିକ୍ ଅଛି । ତମେ ୧୧ଟା ୩୦ ମିନିଟ୍‌ବେଳକୁ ଅଫିସ୍ ଆସ । ମୋର ୧୦ଟା ୩୦ ମିନିଟ୍‌ରେ ମିଟିଂ ଅଛି । ମୁଁ ଗାଡ଼ି ପଠାଇ ଦେଉଛି ।'' ଫାଟକ ପାଖରେ ପହଞ୍ଚିବା ବେଳକୁ ତା'ର ପ୍ରିନ୍‌ସିପାଲ ପ୍ରାଇଭେଟ୍ ସେକ୍ରେଟାରୀ ତଳେ ଅପେକ୍ଷା କରି ଠିଆ ହୋଇଥା'ନ୍ତି । ମତେ ତା' ରୁମ୍‌କୁ ନେଇଗଲେ ଏବଂ କହିଲେ – ସାର୍ ମିଟିଂରେ ଅଛନ୍ତି । ଏବେ ଆସିଯିବେ । ଦଶ ମିନିଟ୍ ପରେ ସେ ଫେରିଲା । ତା'ପରେ ତା'ର ମିଟିଂ ଓ ସାକ୍ଷାତର ତାଲିକାକୁ ମତେ ବଢ଼େଇଦେଲା । ମୁଁ ଦେଖିଲି ଯେ ୨.୩୦ ମିନିଟ୍ ପର୍ଯ୍ୟନ୍ତ ବିଭିନ୍ନ ଲୋକଙ୍କ ସହ ଓ ଅନୁଷ୍ଠାନରେ ତା'ର କାମ ଅଛି । ମତେ କହିଲା, ''ରୁମ୍‌ର ସେକଡ଼େ ଚଉକି, ସୋଫା ପଡ଼ିଛି । ସେଠି ଖବରକାଗଜ ପତ୍ରିକା ଅଛି; ବସି ପଢ଼ୁଥାଅ । ଦରକାର ପଡ଼ିଲେ ମୁଁ ତମକୁ ଏ ଟେବୁଲକୁ ଡାକିବି, ଘ ୨.୩୦ରେ ଖାଇବା ।'' କେତେ ଲୋକ ଆସୁଥାଆନ୍ତି, ଯାଉଥାଆନ୍ତି । ହଠାତ୍ ଜଣେ ସୁଟ୍ ପରିହିତ ସୁଦର୍ଶନ ଯୁବକ ତା' ରୁମ୍‌କୁ ଆସିଲେ । ଅମୂଲ୍ୟ ମତେ ତା' ପାଖକୁ ଡାକିଲା । ପରେ ଜାଣିଲି, ସେ ଉତ୍ତରପ୍ରଦେଶ ସରକାରଙ୍କର ଜଣେ ଉଚ୍ଚପଦସ୍ଥ କର୍ମଚାରୀ । ସେ ନିଜ କାର୍ଯ୍ୟଦକ୍ଷତା ବିଷୟରେ ବହୁତ କହିଲେ ଏବଂ ତା' ଭିତରେ ମୋର ସାନଭାଇ ଗୋପବନ୍ଧୁ, ଯିଏକି ସେତେବେଳେ ଉତ୍ତରପ୍ରଦେଶ ସରକାରଙ୍କ ଅଧୀନରେ ସ୍ୱାସ୍ଥ୍ୟବିଭାଗ ସେକ୍ରେଟାରୀ ରୂପେ କାର୍ଯ୍ୟ କରି

ନିଜର ନିଷ୍ଠା ଏବଂ ସାଧୁତା ବଳରେ ବହୁତ ପ୍ରଶଂସା ଅର୍ଜନ କରିଥାଏ, ତା'ର ନିନ୍ଦା କଲେ । ଅମୂଲ୍ୟ ଚୁପ୍‌ଚାପ୍ ସବୁ ଶୁଣୁଥାଏ । ତା'ପରେ ମୋ ଆଡ଼କୁ ଚାହିଁ ତାଙ୍କୁ କହିଲା, ''Meet my childhood friend Mrutyunjaya Pattnaik. Incidentally he is the elder brother of Gopabandhu.''

ସେ ଭଦ୍ରବ୍ୟକ୍ତିଙ୍କର ମୁହଁର ଅବସ୍ଥା ସେତେବେଳେ ଦେଖିବାର କଥା । ତା' ଡିପାର୍ଟମେଣ୍ଟରେ ସେତେବେଳେ ଜଏଣ୍ଟ ସେକ୍ରେଟାରୀ ପଦବୀ ଖାଲି ପଡ଼ିଥାଏ । ସେ ଗଲାପରେ କହିଲା, ''ମୃତ୍ୟୁଞ୍ଜୟ ! ତମେ ବର୍ତ୍ତମାନ ଗୋପବନ୍ଧୁଙ୍କୁ ଫୋନ୍ କରି ପଚାର, ସେ ଏ ଡିପାର୍ଟମେଣ୍ଟକୁ ଆସିବାକୁ ଇଚ୍ଛୁକ ନା ନାହିଁ ? ମୁଁ ପନ୍ଦର ଦିନ ଭିତରେ ତା'ର ନୋଟିଫିକେସନ୍ କରାଇଦେବି । ମୁଁ ତା' ପରି ଅଫିସର ନ ଆଣି ଏ ଚୌଧୁରୀକୁ (ସେ ଭଦ୍ରବ୍ୟକ୍ତିଙ୍କ ନାମ) କାହିଁକି ଆଣିବି ? ତା' ନାଁ'ରେ ବହୁତ ଦୁର୍ନାମ ଅଛି ।'' ପାରିବାରିକ ଅସୁବିଧା ଯୋଗୁଁ ମୋ ଭାଇ ସେତେବେଳେ ଡେପୁଟେସନ୍‌ରେ କେନ୍ଦ୍ର ସରକାରଙ୍କ ଅଧୀନକୁ ଆସିପାରିଲା ନାହିଁ । ଯାହାଫଳରେ ଭବିଷ୍ୟତରେ କେନ୍ଦ୍ର ସରକାରଙ୍କ ସେକ୍ରେଟାରୀ ପାହ୍ୟାକୁ ପ୍ରମୋଶନ ପାଇଲେ ମଧ୍ୟ ସେ କୌଣସି ଗୁରୁତ୍ୱପୂର୍ଣ୍ଣ ବିଭାଗର ସେକ୍ରେଟାରୀ ହୋଇପାରିଲା ନାହିଁ । ସେଥିଲାଗି କଥା ଅଛି, "Opportunity comes once in life." ।

ଅମୂଲ୍ୟ ଅତ୍ୟନ୍ତ ସରଳ, ଅମାୟିକ ଓ ସ୍ନେହୀ ସ୍ୱଭାବର ଥିଲା । ଶେଷପର୍ଯ୍ୟନ୍ତ ତା'ର ସେ ଗୁଣ ଅପରିବର୍ତ୍ତିତ ଅଛି । ଥରେ ସେ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ପାଖରେ ସେକ୍ରେଟାରୀ ଥିଲା, ଯାହାକୁ କହନ୍ତି ଅତି ପାୱାରଫୁଲ ପଦବୀ । ହରମୋହନ ପଟ୍ଟନାୟକ ଥା'ନ୍ତି (ବର୍ତ୍ତମାନ ସ୍ୱର୍ଗତ) ଆଡିସ୍‌ନାଲ୍ ସେକ୍ରେଟାରୀ । ଥରେ କୌଣସି କାମରେ ଦୁଇଜଣଯାକ ନିରୋଳାରେ ମୁଖ୍ୟମନ୍ତ୍ରୀଙ୍କ ପାଖରେ ଥିଲେ । ହରମୋହନବାବୁଙ୍କର ଭୁବନେଶ୍ୱରରେ ଘର ଖଣ୍ଡିଏ ନ ଥାଏ । ସେ ମୁଖ୍ୟମନ୍ତ୍ରୀଙ୍କୁ କହିଲେ, ''ସାର୍, ମୋତେ ଗୋଟିଏ ଜାଗା ଦିଆଯାଉ ।'' ତା'ପରେ କହିଲେ, ''ସାର୍‌ଙ୍କର ମଧ୍ୟ ଭୁବନେଶ୍ୱରରେ ଜାଗା ନାହିଁ କି ସେ ଘର ଖଣ୍ଡିଏ କରି ନାହାନ୍ତି ।'' ମୁଖ୍ୟମନ୍ତ୍ରୀ ଅମୂଲ୍ୟ ମୁହଁକୁ ଚାହିଁ ପଚାରିଲେ, ''ହରମୋହନ ଯାହା କହୁଛି କ'ଣ ସତ୍ୟ ?'' ସେ ହଁ କଲା । ତମେ କାହିଁକି ମତେ ଏ କଥା ଆଜିପର୍ଯ୍ୟନ୍ତ କହି ନ ଥିଲ ବୋଲି ପଚାରିବାରେ, ''ସାର୍, ଆପଣ ବହୁତ ବ୍ୟସ୍ତ ରହୁଛନ୍ତି । ତେଣୁ ସୁବିଧା ଦେଖି କହିବି ବୋଲି ଭାବିଥିଲି ।'' ଅମୂଲ୍ୟ କହିଲା ।

ସେ ଟିକିଏ ହସିଲେ ଏବଂ ତତ୍‌କ୍ଷଣାତ୍ ଇଷ୍ଟେଟ୍ ଅଫିସରଙ୍କୁ ଡକାଇ ଶହିଦନଗର ପାଖାପାଖି ଦୁଇଟି ଜାଗା ଯୋଗାଇଦେବା ପାଇଁ ନିର୍ଦ୍ଦେଶ ଦେଲେ ।

ତା' ସ୍ତ୍ରୀ (ଯେ କି ଆଉ ଇହଧାମରେ ନାହାନ୍ତି)ଙ୍କର ଅକ୍ଲାନ୍ତ ଉଦ୍ୟମରେ ଘରଖଣ୍ଡେ ହେଲା; ମାତ୍ର ତା'ପରେ ପରେ ତା'ର କେନ୍ଦ୍ର ସରକାରଙ୍କ ଅଧୀନକୁ ଡାଇରେକ୍ଟର ଜେନେରାଲ ସେନ୍‌ସସ୍ ହିସାବରେ ବଦଳି ହେଲା । ତା' ସ୍ତ୍ରୀଙ୍କର ଅକାଳ ବିୟୋଗ ପରେ ଏବଂ ସେ ଚାକିରିରୁ ଅବସର ନେଲାପରେ ନିଜ ଅନିଚ୍ଛାସତ୍ତ୍ୱେ ସେ ଘରକୁ ବିକିଦେଲା ଏବଂ ଦିଲ୍ଲୀରେ ଗୋଟେ ଫ୍ଲାଟ୍ କିଣି ନିଜ ଝିଅଜ୍ୱାଇଁଙ୍କ ସହିତ (ବିଜି ଏବଂ ତା'ର ସ୍ୱାମୀ ରାକେଶ) ଅବସର ଜୀବନ ବିତାଉଛି ।

ଓଡ଼ିଶାରେ ଥିବା ସବୁ ସାଙ୍ଗଙ୍କ ସହିତ ତା'ର ସୁସମ୍ପର୍କ ଥାଏ ଏବଂ ଆମର କୌଣସି ବାର୍ଷିକ ଉତ୍ସବକୁ ଯେତେ କାମ ଥିଲେ ମଧ୍ୟ ସେ ନିଶ୍ଚୟ ଓଡ଼ିଶା ଆସେ । ଶାସ୍ତ୍ରରେ ଅଛି –

ଦଦାତି ପ୍ରତିଗୃହ୍ଣାତି, ଗୁହ୍ୟଂ ଆଖ୍ୟାତି ପୃଚ୍ଛତି
ଭୁକ୍ତେଂ ଭୋଜୟତେ ଚୈବ ଷଡ଼ବିଧଂ ପ୍ରୀତିଲକ୍ଷଣଂ ।

ଅମୂଲ୍ୟର ତିନିଟି ଝିଅ । ଭଗବାନ୍‌ଙ୍କ ଦୟାରୁ ସମସ୍ତେ ନିଜ ନିଜ କ୍ଷେତ୍ରରେ ସୁପ୍ରତିଷ୍ଠିତ । ମୋ ପୁଅଝିଅଙ୍କୁ ସେ ନିଜ ପୁଅଝିଅ ପରି ସ୍ନେହ କରେ । ପ୍ରଥମ ଶ୍ରେଣୀ ଠାରୁ ଜୀବନର ସନ୍ଧ୍ୟା ପର୍ଯ୍ୟନ୍ତ ଆମର ବନ୍ଧୁତା ଅମଳିନ ରହିଛି । ଶେଷପର୍ଯ୍ୟନ୍ତ ରହିବ ବୋଲି ମୋର ଦୃଢ଼ବିଶ୍ୱାସ । ଶେଷ ଜୀବନରେ ସେ ଶିରିଡ଼ିବାବାଙ୍କର ପରମ ଭକ୍ତ ପାଲଟିଯାଇଛି ଏବଂ ଟିଗିରିଆରେ ନିଜ ଜାଗାରେ ନିଜ ପଇସାରେ ଗୋଟିଏ ଶିରିଡ଼ି ମନ୍ଦିର ସ୍ଥାପନ କରିଛି । ତା'ପରି ସରଳ, ଅମାୟିକ, ପରୋପକାରୀ ତଥା ଈଶ୍ୱରବିଶ୍ୱାସୀ ବନ୍ଧୁ ଯୁଗେ ଯୁଗେ ମିଳନ୍ତୁ – ଏହାହିଁ କାମନା ।

❑❑❑

# ଆନନ୍ଦ ଚନ୍ଦ୍ର ପାଢ଼ୀ
# ଇଞ୍ଜିନିୟରିଂ ବିଭାଗର ଉଜ୍ଜ୍ୱଳ ଭାସ୍କର

୧୯୬୫ ମସିହା । ପାରାଦ୍ୱୀପ ପୋର୍ଟରେ ଦୁଇ ବର୍ଷ କାମ କଲା ପରେ ମୋର AEF Project ସୁନାବେଡ଼ାକୁ ପୋଷ୍ଟିଂ ହୋଇଥାଏ । ମୋତେ ସେତେବେଳେ ୨୫ ବର୍ଷ ବୟସ । ବାହା ହୋଇ ନ ଥାଏ । ସେତେବେଳେ ଆଜିକାଲିକା ପରି କୋରାପୁଟକୁ କଟକ-ଭୁବନେଶ୍ୱରରୁ ସିଧା ବସ୍ ନ ଥାଏ । କଟକରୁ ମାଡ୍ରାସ୍ ମେଲରେ ବିଜୟନଗରମ୍ ଯିବ, ସେଠୁ ବସ୍ ଧରି ସାଲୁର ଦେଇ ସୁଙ୍କୀ ଘାଟି ପାରିହୋଇ ସୁନାବେଡ଼ାକୁ ଯିବାକୁ ପଡୁଥିଲା । ସେଠି ବିଜୁବାବୁଙ୍କ ସ୍ୱପ୍ନର ପ୍ରୋଜେକ୍ଟ ମିଗ୍ କାରଖାନା ତିଆରି ହେଉଥାଏ । ଚିଫ୍ କନଷ୍ଟ୍ରକ୍ସନ୍ ଇଞ୍ଜିନିୟର ଥା'ନ୍ତି ଶ୍ରୀଯୁକ୍ତ ଆନନ୍ଦ ଚନ୍ଦ୍ର ପାଢ଼ୀ । ତାଙ୍କ ବ୍ୟକ୍ତିତ୍ୱରେ କ'ଣ ଏପରି ସମ୍ମୋହନ ଶକ୍ତି ଥିଲା କେଜାଣି, ପ୍ରଥମ ଦେଖାରେ ମୁଁ ତାଙ୍କର ଜଣେ ସ୍ତାବକ ହୋଇଗଲି । ତାଙ୍କର ତେଜୋଦୀପ୍ତ ଚେହେରା, କଥା କହିବାର ଶୈଳୀ ଏବଂ ନିର୍ଭୀକତା ମତେ ବହୁତ ମୁଗ୍ଧ କଲା । ସେ ଇଞ୍ଜିନିୟରିଂରେ ପୃଥିବୀପ୍ରସିଦ୍ଧ ମାସାଚ୍ୟୁଟ୍ ଇନ୍‌ଷ୍ଟିଚ୍ୟୁଟ୍‌ରୁ ଏମ୍.ଟେକ୍. କରି ଆସିଥାଆନ୍ତି । ରୁଷିଆନ୍ ଇଞ୍ଜିନିୟରମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କାରଖାନା କାମ ଚାଲିଥାଏ । ମୋର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥାଆନ୍ତି ଶ୍ରୀଯୁକ୍ତ ଦୀନବନ୍ଧୁ ମିଶ୍ର । ସରଳ, କର୍ମଦକ୍ଷ, ସଚ୍ଚୋଟ ଅଫିସର । ମୁଁ ଦେଖିଛି, ଆନନ୍ଦ ପାଢ଼ୀଙ୍କ ଅଧୀନରେ ଆମେ ଯେତେଜଣ ଇଞ୍ଜିନିୟର କାମ କରୁଥିଲୁ, ପ୍ରାୟ ସମସ୍ତେ ଏକାଧରଣର ଥିଲେ ଏବଂ ପରେ ଚାକିରିରେ ନିଜ ନିଜ କ୍ଷେତ୍ରରେ ସୁନାମ ଅର୍ଜନ କରିଥିଲେ । ଶ୍ରୀଯୁକ୍ତ ଦୀନବନ୍ଧୁ ମିଶ୍ର, ସୁବାଷ ଚନ୍ଦ୍ର ସାହୁ, ଗୋପାଳ ଚନ୍ଦ୍ର ମିତ୍ର, ରାଧାକାନ୍ତ ପାଣି, କଲ୍ଲୋଳ କୁମାର ଚାନ୍ଦ, ମନୋରଞ୍ଜନ କର, ମଦନମୋହନ କମିଳା, ଏଲ୍.ଏନ୍. ବାରିକ ଓ ଡି.ଏନ୍. ସିଂହଦେଓ ଇତ୍ୟାଦି ।

ଗୋଟେ ଦିନର କଥା । ମୁଁ ବ୍ଲକ୍-୧୮ର ନିର୍ମାଣ ଦାୟିତ୍ୱରେ ଥାଏ । କଣ୍ଟ୍ରାକ୍ଟର ଥିଲେ ବମ୍ବେର ଭାରତ ବିଖ୍ୟାତ ଶାହା କନ୍‌ଷ୍ଟ୍ରକ୍ସନ୍ । ସିଭିଲ୍ ଇଞ୍ଜିନିୟରିଂ କ୍ଷେତ୍ରରେ ସେ ସଂସ୍ଥାର ବହୁତ ନାଁ ଥାଏ । ତାଙ୍କର ସାଇଟ୍ ଇଞ୍ଜିନିୟର ପି.ଡି. ଶାହା

ସେତେବେଳେ shell roof ଉପରେ ସେ ଡକ୍ଟରେଟ୍ କରିଥିଲେ । ୪୦/୫୦ ଫୁଟ ଉଚ୍ଚ କଲମ ଉପରେ ବିମ୍ ପଡ଼ି ଛାତ ଢଳେଇ ହେବ । ନକ୍ସା ଉପରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଥାଏ – ୧ ମି.ମି. ତ୍ରୁଟି କ୍ଷମଣୀୟ । ଆଜିକାଲି ୨୦/୨୫ ଫୁଟ ଖୁଣ୍ଟ ଢଳାଇ କଲାବେଳେ ସେଥିରେ ୧ ଇଞ୍ଚରୁ ଅଧିକ ପଲସ୍ତରା ଦରକାର ପଡୁଛି । କାମରେ କୌଣସି ରକମର ଶିଥିଳତା ସେ ସହ୍ୟ କରିପାରୁ ନ ଥିଲେ ଏବଂ ନିଜର (ORK- 1810) ଷ୍ଟେସନ୍ ୱାଗନ୍ ଗାଡ଼ିରେ ପ୍ରତିଦିନ କାର୍ଯ୍ୟସ୍ଥଳୀ ବୁଲି ବୁଲି କାମ ତଦାରଖ କରୁଥିଲେ । Shell Roof ଢଳେଇ ସରିବା ପରେ stirrup pump ଲଗାଇ ପାଣି ପକାଇବା କଥା; ମାତ୍ର ସେ ମୋ କଥା ନ ଶୁଣି visty ଲଗାଇ ପାଣି ପକାଉଥାଏ । ମାତ୍ର ଏତେ ଉପରକୁ ପାଣି ଠିକ୍ ଭାବରେ ଯାଉ ନ ଥାଏ । ମୋ କଥା ନ ଶୁଣିବାରୁ ମୁଁ site order bookରେ ଦୁଇ ଥର ଲେଖିସାରିଥାଏ ।

ଥରେ ଚିଫ୍ ଇଞ୍ଜିନିୟର ପରିଦର୍ଶନରେ ଆସି ପହଞ୍ଚିଲେ ଏବଂ କାମରେ ମୁଁ ସନ୍ତୁଷ୍ଟ କି ନାହିଁ ବୋଲି ପଚାରିଲେ । ମୁଁ ତାଙ୍କୁ ମୌଖିକ କହିଥିବା କଥା କହିଲି ଏବଂ ନିର୍ଦ୍ଦେଶାବଳୀ ବହି ଦେଖାଇଲି । ସେ କିଛି ନ କହି ପକେଟରୁ ପେନ୍ ବାହାର କଲେ ଏବଂ ଲେଖିଲେ "All works of M/s Shah Construction are stopped from this moment i.e., 11.45 am." ଦସ୍ତଖତ କରିଦେଇ ଚାଲିଗଲେ । ପ୍ରାୟ ଚାରି ପାଞ୍ଚଟା କାରଖାନାରେ ୧୦୦୦/୧୨୦୦ ପର୍ଯ୍ୟନ୍ତ ଶ୍ରମିକ କାମ କରୁଥିଲେ । ୧୫ ଦିନ ପର୍ଯ୍ୟନ୍ତ ସବୁ କାମ ଠପ୍ ହୋଇଗଲା । ବମ୍ବେରୁ କମ୍ପାନୀର ଚେୟାରମ୍ୟାନ୍ ଡି.ଜେ.ଶାହା ଦୌଡ଼ିକରି ଆସିଲେ ଏବଂ ଭବିଷ୍ୟତରେ ଏଭଳି ଭୁଲ୍ ହେବ ନାହିଁ ବୋଲି ଲିଖିତ ପ୍ରତିଶ୍ରୁତି ଦେଲେ । କାମ ପୁଣି ଚାଲୁ ହେଲା । ଏତିକି ହେଲା ଯେ ସୁନାବେଡ଼ାରେ ମୋର ସମ୍ମାନ ବଢ଼ିଗଲା । ଡି.କେ.ଶାହା ମତେ ଥରେ ଏକାନ୍ତରେ ପଚାରିଲେ, "Are you related to Biju Pattnaik ?" ମୁଁ ହଁ କି ନାହିଁ, ନ କହି କହିଲି, "Have you any doubt about it?" ମୋ ପରି ଜଣେ ସାମାନ୍ୟ ଆସିଷ୍ଟାଣ୍ଟ ଇଞ୍ଜିନିୟର ଏପରି ଦୁଃସାହସିକ କାମ କରିପାରେ ବୋଲି ତାଙ୍କ କଳ୍ପନାରେ ନ ଥିଲା ଏବଂ ସେ ମନେ ମନେ ଭାବିନେଲେ, ମୁଁ ପ୍ରକୃତରେ ବିଜୁ ପଟ୍ଟନାୟକଙ୍କ ସମ୍ପର୍କୀୟ । ସେ ଖୋଲାଖୋଲି ଭାବରେ କହୁଥିଲେ, "ଭାରତର ଅନେକ ଜାଗାରେ ଆମେ କାମ କରିଛୁ; ମାତ୍ର "ଏ ଏକ ଅଜବ୍ ପ୍ରୋଜେକ୍ଟ ହେଁ, ଜହାଁ ଚିଫ୍ ଇଞ୍ଜିନିୟର ସେ ଲେକର୍ ଓଭରସିୟର ତକ କୋଇ ଏକ ପୈସା ଭି ଲେତା

ନହିଁ ।'' ଆଜିକାଲି ଜୀବନର ସାୟାହ୍ନରେ ଖବରକାଗଜରେ 'କୋଟିପତି ଯନ୍ତ୍ରୀ' ଭିଜିଲାନ୍ସ ଜାଲରେ ପଡ଼ିଲାବେଳେ ମନରେ ଗଭୀର କ୍ଷୋଭ ଆସେ ଏବଂ ସେଇ ଦୀପ୍ତିମାନ ସଚ୍ଚୋଟ ଚିଫ୍ ଇଞ୍ଜିନିୟର ପାଢ଼ୀ ସାହେବଙ୍କ ମୁହଁ ଆଖିଆଗରେ ଭାସିଉଠେ ।

ବିଜୁ ପଟ୍ଟନାୟକ ତାଙ୍କୁ ଏବଂ ବାଲିମେଲା ପ୍ରୋଜେକ୍ଟର ଚିଫ୍ ଇଞ୍ଜିନିୟର ସୁରେଶ ତ୍ରିପାଠୀଙ୍କୁ ସୁନାବେଡ଼ା ମ୍ୟାନ୍ ଓ ବାଲିମେଲା ମ୍ୟାନ୍ ବୋଲି ଡାକୁଥିଲେ । ସେ ସମୟଟା ଥିଲା ଓଡ଼ିଶା ନିର୍ମାଣର ସୁବର୍ଣ୍ଣଯୁଗ । ଥରେ ମୁଁ କେନ୍ଦ୍ରାପଡ଼ାରେ ଏକ୍ସପ୍ରେସ୍ ହାଇୱେରେ ଏକ୍ସ-ଇଞ୍ଜିନିୟର ଥିଲାବେଳେ ସେଠାକାର ତତ୍କାଳୀନ ବିଧାୟକ ଶ୍ରୀ ନଳିନୀ ମହାନ୍ତି (ପରବର୍ତ୍ତୀକାଳରେ ଓଡ଼ିଶାର ପୂର୍ତ୍ତମନ୍ତ୍ରୀ) ମୋତେ ବିଜୁବାବୁଙ୍କୁ ଚିହ୍ନେଇଦେବାରୁ ସେ କହିଲେ, ''I know him he is a MIG Boy ।'' ଗର୍ବରେ ମୋ ଛାତି ଫୁଲିଉଠିଲା । ନଳିନୀ ମହାନ୍ତି ପରେ ମତେ କହିଲେ, ''ଆମେମାନେ ଭାବିଥିଲୁ, ଆପଣ ଜାନକୀବାବୁଙ୍କର ପ୍ରିୟ ଲୋକ ବୋଲି; ମାତ୍ର ବିଜୁବାବୁ ଆପଣଙ୍କୁ ଏତେ ଭଲପା'ନ୍ତି ବୋଲି ଜାଣି ନ ଥିଲୁ ।''

ପାଢ଼ୀ ସାହେବ କେବଳ ଜଣେ ଦକ୍ଷ ଚିଫ୍ ଇଞ୍ଜିନିୟର ଥିଲେ ତା' ନୁହେଁ, ସେ ବହୁତ ସ୍ୱାଭିମାନୀ ଥିଲେ । ଜୀବନରେ ନିଜର ସମ୍ମାନକୁ କେବେ ସାଲିସ୍ କରି ନ ଥିଲେ । ତାଙ୍କର ଉପରିସ୍ଥ ଆଇ.ଏ.ଏସ୍. ଅଫିସରମାନଙ୍କ ସହିତ ସଭାରେ କଥାବାର୍ତ୍ତା କଲାବେଳେ ସେ ସମାନ ଭାବରେ ବ୍ୟବହାର କରୁଥିଲେ । ସେ ବାହାରକୁ ବହୁତ କଡ଼ା ଦେଖାଯାଉଥିଲେ ମଧ୍ୟ ଅଧସ୍ତନ କର୍ମଚାରୀମାନଙ୍କ ପ୍ରତି ତାଙ୍କ ହୃଦୟରେ ବହୁତ ଦୟା ଥିଲା । ଥରେ ମୁଁ ଘରଠାରୁ ବହୁତ ଦୂରରେ କରଞ୍ଜିଆର ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥିଲି । ମୋର ସାନଭଉଣୀକୁ କ୍ୟାନ୍ସର ହେଲା । ଆଜିକାଲି ପରି ସେତେବେଳେ Head quarter leaving permission ନ ନେଇ କେହି ଭୁବନେଶ୍ୱରକୁ ଆସୁ ନ ଥିଲେ । ମୁଁ ତାଙ୍କୁ ସେକ୍ରେଟେରୀଏଟ୍‌ରେ ଦେଖାକରି ସବୁକଥା କହିଲି । ସେ କହିଲେ, ''ଗୋଟେ representation ଲେଖି ଆଣ । Do not waste time in typing it.'' ମୁଁ ଗୋଟେ ସାଦା କାଗଜରେ ଲେଖିଦେଇ ଚାଲିଆସିଲି । ସାତ / ଆଠ ଦିନ ପରେ ମୋର କଟକ ଡିଭିଜନକୁ ବଦଳି ଅର୍ଡର ଆସି ପହଞ୍ଚିଲା ଏବଂ ଲୋକାଲ ଆରେଞ୍ଜମେଣ୍ଟରେ ରିଲିଭ୍ କରିବାକୁ ସେଥିରେ ନିର୍ଦ୍ଦେଶ ଥିଲା ।

ପାଢ଼ୀ ସାହେବ ଆଇ.ଏ.ଏସ୍. ଅଫିସରଙ୍କୁ ହଟାଇ ପ୍ରଥମ Works Secretary ହେଲେ । ସେତେବେଳେ ସାରା ଭାରତରେ ବହୁତ କମ୍ ପ୍ରଦେଶରେ ଏପରି ବ୍ୟବସ୍ଥା ଥିଲା । ତାଙ୍କର ଚାକିରି ଆଉ ବର୍ଷେ ଉପରେ ଥାଏ । ଲୋକସେବା ଆୟୋଗ (P.S.C.) ର ଚେୟାରମ୍ୟାନ୍ ପଦ ଖାଲି ପଡ଼ିଲା । ସେତେବେଳେ ଚିଫ୍ ସେକ୍ରେଟାରୀ ଥାଆନ୍ତି ଶ୍ରୀଯୁକ୍ତ ସୁଧାଂଶୁ ମୋହନ ପଟ୍ଟନାୟକ । ସେ ଅବସର ନେଲାପରେ P.S.C. ଚେୟାରମ୍ୟାନ୍ ପାଇଁ ଚେଷ୍ଟା କରୁଥାଆନ୍ତି । ପାଢ଼ୀ ସାହେବଙ୍କ ପାଖକୁ ମୁଖ୍ୟମନ୍ତ୍ରୀଙ୍କ ପାଖରୁ ଖବର ଆସିଲା P.S.C.ରେ ସଭ୍ୟ ହେବାକୁ । ସେ [illegible] କୌଣସି ଇଞ୍ଜିନିୟର ଏ ପୋଷ୍ଟରେ ନ ଥା'ନ୍ତି । ପାଢ଼ୀସାହେବ ଖବର ପଠାଇଲେ, "The minimum post I can accept is chairman P.S.C." ଶେଷରେ ତାଙ୍କର ଅସାଧାରଣ ଜ୍ଞାନ, ବାଗ୍ମିତା ଏବଂ ସାଧୁତା ଯୋଗୁଁ ସେ ଚେୟାରମ୍ୟାନ୍ ହେଲେ । ଏହା ଓଡ଼ିଶା ଇତିହାସରେ ଏକ ଯୁଗାନ୍ତକାରୀ ପଦକ୍ଷେପ –ଏ କଥା ମୁଁ ନିଜେ ତାଙ୍କ ମୁହଁରୁ ଶୁଣିଛି । ଦୀର୍ଘ ୫ ବର୍ଷ କାଳ ଚେୟାରମ୍ୟାନ୍ ରହି ଅତ୍ୟନ୍ତ ସୁନାମର ସହିତ ଅବସର ଗ୍ରହଣ କଲେ ।

ପାଢ଼ୀ ସାହେବ ଭାରତୀୟ Road Congress ର ଆଜୀବନ ସଭ୍ୟ ଥିଲେ ଏବଂ ଆମମାନଙ୍କୁ I.R.C. ର ସବୁ ସେମିନାରରେ ଯୋଗଦାନ କରିବାକୁ ଉତ୍ସାହିତ କରୁଥିଲେ । ଜୟପୁର ଅଧିବେଶନରେ ସଭାପତି ହେଲେ । ଏଭଳି ପଦ ଅଳଙ୍କୃତ କରିବାରେ ସେ ହେଉଛନ୍ତି ଏକମାତ୍ର ଓଡ଼ିଆ ।

ଚାକିରିକାଳ ଭିତରେ ମୋ' ପରି ଅଗଣିତ ଇଞ୍ଜିନିୟରଙ୍କ ଉପରେ ତାଙ୍କର ପ୍ରଭାବ ପଡ଼ିଛି ଏବଂ ପରବର୍ତ୍ତୀ ଜୀବନରେ ଆମେ ଯାହା ସୁନାମ ଅର୍ଜନ କରିଛୁ, ସେଥିରେ ପାଢ଼ୀ ସାହେବଙ୍କ ଅବଦାନ ବହୁତ ବେଶୀ ।

ପାଢ଼ୀ ସାହେବ ଆଜି ନାହାନ୍ତି । ସମସ୍ତେ ସବୁଦିନେ ରହିବେ ନାହିଁ; ମାତ୍ର ସେ ଆମ ଇଞ୍ଜିନିୟରିଂ ବିଭାଗର ଉଜ୍ଜ୍ୱଳତମ ଭାସ୍କର ଭାବରେ ଜାଜ୍ୱଲ୍ୟମାନ ରହିଥିବେ, ଏଥିରେ ସନ୍ଦେହର ଅବକାଶ ନାହିଁ । ଭଗବାନ୍ କରନ୍ତୁ, ତାଙ୍କପରି ଯୋଗଜନ୍ମା ପୁରୁଷ ଯୁଗେ ଯୁଗେ ଉତ୍କଳମାତା କୋଳରେ ଜନ୍ମ ନିଅନ୍ତୁ ।

□□□

# ଗତିକୃଷ୍ଣ ମିଶ୍ର
# ଓଡ଼ିଶା ନ୍ୟାୟପାଳିକାର ସତର୍କ ପ୍ରହରୀ

''ମୃତ୍ୟୁଞ୍ଜୟ ! ଦହି ଖୁବ୍ ଭଲ ହୋଇଛି । ଖାଅ ।'' ଡାଇନିଂ ହଲ୍‌ରେ ଉପସ୍ଥିତ ଉଚ୍ଚପଦସ୍ଥ ସରକାରୀ ଓ କମ୍ପାନୀର କର୍ମକର୍ତ୍ତାମାନେ ମୋତେ ବୁଲି ଚାହିଁଲେ । ସ୍ଥାନ ବ୍ରଜରାଜନଗର କାଗଜକଳର ସୁଦୃଶ୍ୟ ଡାଇନିଂ ହଲ୍ । କହିବା ଲୋକ ହେଲେ ଓଡ଼ିଶାର ପ୍ରଖ୍ୟାତ ଚିଫ୍ ଜଷ୍ଟିସ୍ ଏବଂ କଠୋର ନୀତିନିଷ୍ଠ ଭାବରେ ସାରା ଓଡ଼ିଶାରେ ଜଣାଶୁଣା ଶ୍ରୀଯୁକ୍ତ ଗତିକୃଷ୍ଣ ମିଶ୍ର । ସେତେବେଳେ ସେ ଓଡ଼ିଶାର ଅସ୍ଥାୟୀ ରାଜ୍ୟପାଳ ଭାବରେ ସମ୍ବଲପୁର ଜିଲ୍ଲା ଗସ୍ତରେ ଆସିଥାଆନ୍ତି ; ମୁଁ ଥାଏ ସୁନ୍ଦରଗଡ଼ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ।

ଗତିକୃଷ୍ଣ ମିଶ୍ରଙ୍କ ସଙ୍ଗରେ ମୋର ଜଣାଶୁଣା ମୋ' ପଢ଼ିବା ବେଳରୁ । ମୋର ଅଜା ସ୍ୱର୍ଗତ ସୂର୍ଯ୍ୟନାରାୟଣ ପଟ୍ଟନାୟକଙ୍କର ସେ ଥିଲେ ଘନିଷ୍ଠ ବନ୍ଧୁ । ଦୁହେଁ ଢେଙ୍କାନାଳର ଲୋକ । ମୁଁ ଅଜାଙ୍କ ସାଙ୍ଗେ କେତେଥର ତାଙ୍କ ଘରକୁ ଯାଇଛି । ସେ ସମୟରେ ଢେଙ୍କାନାଳ ଗଡ଼ଜାତ ରାଜ୍ୟ ଥିଲା । ଗତିକୃଷ୍ଣ ମିଶ୍ର ଓ ତାଙ୍କ ବଡ଼ଭାଇ ଜୟକୃଷ୍ଣ ମିଶ୍ର (ପରେ ଓଡ଼ିଶା ହାଇକୋର୍ଟର ବିଚାରପତି) କୌଣସି କାରଣରୁ ରାଜାଙ୍କ କୋପର ଶିକାର ହୋଇ ପରେ ରାତାରାତି କଟକ ଚାଲିଆସିଲେ । ପରବର୍ତ୍ତୀ ଜୀବନରେ ଶଙ୍କରପ୍ରତାପ ତାଙ୍କ ଘରକୁ ଆସୁଥିଲେ ଏବଂ ଘରେ ତଥା କୋର୍ଟ ରୁମ୍‌ରେ 'ଶଙ୍କରପ୍ରତାପ ମୋର ଗୁରୁ' ବୋଲି ସେ କହିବାର ମୁଁ ଅନେକଥର ଶୁଣିଛି । ତାଙ୍କ ମୃତ୍ୟୁପରେ ଯେଉଁ ଶୋକସଭା ହେଲା, ସେଥିରେ ଶଙ୍କରପ୍ରତାପଙ୍କ ପୁତ୍ର କାମାକ୍ଷା ପ୍ରସାଦ, ଗତିବାବୁ ତାଙ୍କ ପିତାଙ୍କ ପରେ ତାଙ୍କର ଦିଗ୍‌ଦର୍ଶକ ଥିଲେ ବୋଲି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ । ଏଥିରୁ ତାଙ୍କ ହୃଦୟର ଉଦାରତା ଜଣାପଡ଼େ ।

ଘଟଣାକ୍ରମେ ୧୯୭୦ ମସିହାରେ ମୁଁ କଟକର କ୍ୟାଣ୍ଟନ୍‌ମେଣ୍ଟ ଏସ୍.ଡି.ଓ. ହିସାବରେ ଯୋଗଦେଲି ଏବଂ ଉଭୟ ଓଡ଼ିଶା ହାଇକୋର୍ଟ ଓ କିଲ୍ଲା ଭିତରେ ଥିବା ଚିଫ୍ ଜଷ୍ଟିସ୍‌ଙ୍କର ବଙ୍ଗଳା ମୋ ଦାୟିତ୍ୱରେ ରହିଲା । ମୋ କ୍ୱାର୍ଟର ତାଙ୍କ ଘରଠାରୁ ୨୦୦ ହାତ ଦୂରରେ ଥିଲା । ସମୟ ଅସମୟରେ କାମ ଥିଲେ ସେ ମୋତେ ଡକାଇ ପଠାନ୍ତି । ସେ କେବେ କୌଣସି ଅନ୍ୟାୟ ଅନୁରୋଧ କରି ନାହାନ୍ତି । ମୋର ମନେଅଛି, ରାଜ୍ୟପାଳ ପଦବୀରୁ ଆସି ସେ ପୂର୍ବଭଳି ଚିଫ୍ ଜଷ୍ଟିସ୍ ଥାଆନ୍ତି ।

ରାଜ୍ୟପାଳ ଥାଆନ୍ତି ଶ୍ରୀଯୁକ୍ତ ବି.ଡି.ଜତ୍ତି । ତାଙ୍କ ଦୁଇ ଝିଅଙ୍କ ବାହାଘର ହେଲା । ଚିଫ୍ ଇଞ୍ଜିନିୟର ମମତାଜ ଅଲ୍ଲୀ ମୋତେ ଡକାଇ ସେ ଯାହା ଚାହୁଁଛନ୍ତି, କରିଦେବାକୁ ନିର୍ଦ୍ଦେଶ ଦେଇଥାଆନ୍ତି; ମାତ୍ର ଗତିବାବୁ ମୋତେ ଡାକି କହିଲେ – କେବଳ ଦୁଇଟା ବେଦୀ ହେବ ଏବଂ ଘରର ରଙ୍ଗ ଦିଆହେବ । ସେଥିଲାଗି ଅର୍ଥ ଅଛି କି ନା ପଚାରି ବୁଝିଲେ । ଭୋଜିଦିନ ସନ୍ଧ୍ୟାରେ ରାଜ୍ୟପାଳ ଆସିବାର ଥାଏ । ଗତିବାବୁ ଗୋଟେ ଧୋତି ଓ ହାତବାଲା ଗଞ୍ଜି ପିନ୍ଧି ସମସ୍ତଙ୍କୁ ସ୍ୱାଗତ କରୁଥା'ନ୍ତି । ସିନିୟର ଜଜ୍ ରଙ୍ଗନାଥ ମିଶ୍ର ମୋତେ ଡାକିକରି କହିଲେ, ''ମୃତ୍ୟୁଞ୍ଜୟ ! ସାର୍‌ଙ୍କୁ କୁହ ଗୋଟେ ଶାର୍ଟ ପିନ୍ଧନ୍ତୁ । ତାଙ୍କୁ ରାଜ୍ୟପାଳଙ୍କୁ ସ୍ୱାଗତ କରିବାକୁ ପଡ଼ିବ ।'' ମୁଁ ଯାଇ କହିବାରୁ କହିଲେ, ''ଆଚ୍ଛା ! ତମ ମାଉସୀଙ୍କୁ କୁହ ଗୋଟେ ଶାର୍ଟ ଦେବେ ।'' ବ୍ୟକ୍ତିଗତ ଜୀବନରେ ସେ ଅତ୍ୟନ୍ତ ସରଳ ଥିଲେ ଏବଂ ସରଳ ଜୀବନ ଓ ଉଚ୍ଚ ଚିନ୍ତାରେ ବିଶ୍ୱାସ କରୁଥିଲେ ।

ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଗଭୀର ମମତା ଥିଲା । ବୃତ୍ତିରେ ଇଞ୍ଜିନିୟର ହେଲେ ବି ମୋର ମଧ୍ୟ ସାହିତ୍ୟ ନିଶା ଥିଲା ଏବଂ ପ୍ରସିଦ୍ଧ ଓଡ଼ିଆ କବିମାନଙ୍କର ଲେଖା ମୁହେଁ ମୁହେଁ କହିପାରୁଥିଲି । ଅନେକ ସନ୍ଧ୍ୟା ମୁଁ ତାଙ୍କ ସାଙ୍ଗରେ କଟାଇଛି ମାନସିଂହଙ୍କର 'ମହାନଦୀରେ ଜ୍ୟୋତ୍ସ୍ନାବିହାର', ବୈକୁଣ୍ଠନାଥ ପଟ୍ଟନାୟକଙ୍କର 'ବୁଦ୍ଧ ବନ୍ଦନା', ରାଧାନାଥ ରାୟଙ୍କର 'ବେଣୀ ସଂହାର' କାବ୍ୟ ଆବୃତ୍ତି କରିବାରେ । ଗତିବାବୁ ଅସମ୍ଭବ ସାହିତ୍ୟ ଅନୁରାଗୀ ଥିଲେ ଏବଂ ମୋର ଓଡ଼ିଆ ତଥା ସଂସ୍କୃତ ସାହିତ୍ୟରେ କିଛିଟା ଦକ୍ଷତା ଥିବାରୁ ମୋତେ ବହୁତ ସ୍ନେହ କରୁଥିଲେ । ମୋର ଚିଫ୍ ଜଷ୍ଟିସ୍ ଘରକୁ ଯିବାଟା ମୋର ଉପରିସ୍ଥ କର୍ମଚାରୀ ପି.କେ. ରାଓଙ୍କ ମନକୁ ଗଲା ନାହିଁ ଏବଂ ସେ ଅତ୍ୟନ୍ତ ସନ୍ଦେହୀ ପ୍ରକୃତିର ଥିଲେ । ଅଧସ୍ତନ କର୍ମଚାରୀମାନଙ୍କୁ ଖରାପ ବ୍ୟବହାର କରୁଥିଲେ । ଯୋଗକୁ ମୋର ହଠାତ୍ ଫୁଲବାଣୀ ବଦଳି ହୋଇଗଲା । ସେତେବେଳେ ଫୁଲବାଣୀ ଜିଲ୍ଲାକୁ ୧୩ ନମ୍ବର ଜିଲ୍ଲା ବୋଲି କହୁଥିଲେ । ସେଠାକୁ ବଦଳି ହେବାକୁ ଦଣ୍ଡ ବୋଲି ଭାବୁଥିଲେ । ଏଥିରେ ପି. କେ. ରାଓଙ୍କର ପ୍ରଚ୍ଛନ୍ନ ହାତ ଥିଲା ବୋଲି ସମସ୍ତଙ୍କର ଧାରଣା ହେଲା । ଗତିବାବୁ ଏକଥା ଶୁଣିଲେ । ମତେ ଡକାଇ ସେ କହିଲେ, ''ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଈର୍ଷାଳୁ ହୋଇ ଏପରି କରିଛି । ତୁମର ତ ତିନି ବର୍ଷ ହୋଇ ନାହିଁ, ବଦଳି କାହିଁକି ହେବ ?''

ମୁଁ କହିଲି, ''ସାର୍, ଜୀବନରେ ବଦଳି ରଦ୍ଦ ଲାଗି କାହାକୁ କହିବି ନାହିଁ ବୋଲି ମୁଁ ଚାକିରି ଆରମ୍ଭରୁ ସ୍ଥିର କରିଛି ।'' ତା'ପରେ କହିଲେ, ''ତମେ ତ ଜାଣ ସମ୍ବିଧାନର ନିୟମ ଅନୁସାରେ ମୁଁ ଓ ମୁଖ୍ୟମନ୍ତ୍ରୀ ପରସ୍ପରକୁ ବର୍ଷରେ

ଥରେ ବା ଦୁଇ ଥର ଭେଟି ଆଇନ କାନୁନ ବିଷୟରେ ପରାମର୍ଶ କରିବୁ । ମୁଖ୍ୟମନ୍ତ୍ରୀ କାଲି ସନ୍ଧ୍ୟାବେଳେ ମୋ' ଘରକୁ ଆସୁଛନ୍ତି । ତମକୁ ଈର୍ଷା କରି ସେ ତେଲେଙ୍ଗା ଅଫିସର ଏ ବଦଳି କରାଇଛି । ତମେ ଯଦି ଚାହଁ, ତେବେ ମୁଖ୍ୟମନ୍ତ୍ରୀଙ୍କୁ କହିଲେ, ତମ ବଦଳି ସାଙ୍ଗେ ସାଙ୍ଗେ ବନ୍ଦ ହୋଇଯିବ ।'' ମୁଁ ତାଙ୍କୁ କହିଲି, ''ଆପଣ ମତେ ନିଜ ପୁଅ ପରି ଭଲପା'ନ୍ତି, ଏଟା ଉଣାଅଧିକେ ସମସ୍ତେ ଜାଣନ୍ତି । ମାତ୍ର ଆପଣ ମତେ ନିଜେ କହିଛନ୍ତି ଯେ ନିଜ ପାଇଁ ହେଉ ବା ନିଜ ପିଲାଙ୍କ ପାଇଁ ହେଉ ଆପଣ କେବେ କାହାକୁ ଅଯଥା ଅନୁରୋଧ କରି ନାହାନ୍ତି । ମୋ ଲାଗି ଆପଣଙ୍କ ସୁନାମରେ ସାମାନ୍ୟ ଆଞ୍ଚ୍ ଆସୁ, ଏଟା ମୁଁ ଚାହେଁନା ।'' ସେ କହିଲେ, ''ତମେ କଟକରୁ ବଦଳି ହେଲେ ମୁଁ ବହୁତ ଦୁଃଖୀ ହେବି । ତମ ପିଲାମାନଙ୍କର ପାଠପଢ଼ାରେ ମଧ ବ୍ୟାଘାତ ହେବ ।'' ମାତ୍ର ମୁଁ ଦାୟିତ୍ୱ ହସ୍ତାନ୍ତର କରି ଫୁଲବାଣୀ ଚାଲିଗଲି ।

ଯିବା ପୂର୍ବରୁ ସେ ମୋତେ ଓ ମୋ ପରିବାରକୁ ଶାଢ଼ି ପଠାଇ ଘରେ ବିଦାୟ ସମ୍ବର୍ଦ୍ଧନା ଦେଲେ । କହିଲେ, ''ତମପାଇଁ ମୁଁ ଗର୍ବ ଅନୁଭବ କରୁଛି । ନିଜ ନୀତିନିୟମରେ ଦୃଢ଼ ରହିବ, ଯାହା ବାଧାବିଘ୍ନ ଆସୁ ପଛକେ ।'' ପରେ ସେ ଫୁଲବାଣୀ ଗସ୍ତରେ ଯାଇଥିଲେ । ମାଉସୀ (ତାଙ୍କ ସ୍ତ୍ରୀ) ଓ ପିଲାମାନେ ମୋ ଘରକୁ ବୁଲିଆସିଥିଲେ । ଆଉଥରେ ମୁଁ ରାଇରଙ୍ଗପୁରରେ ଏସ୍.ଡି.ଓ. ଥିଲାବେଳେ ନୂତନ ସବ୍‌ଜଜ୍ କୋର୍ଟ ଭିତ୍ତିପ୍ରସ୍ତର ସ୍ଥାପନ ଲାଗି ସପରିବାର ଆସିଥିଲେ । ସାଙ୍ଗରେ ତାଙ୍କର ମଝିଆ ବୋହୂ ଥିଲା । ସେ ବୋହୂକୁ ମୁଁ ଘରକୁ ଖାଇବାକୁ ଡାକିଥିଲି । ସେ ବୋହୂକୁ ଡାକି କହିଲେ, "He is like your husband as far as I am concerned." ମତେ କହିଲେ, ''ଏ ପଦରେ ଥିବାଯାଏ ଆମେ (ସେ ସଦାବେଳେ ନିଜକୁ ଆମେ ବୋଲି କହୁଥିଲେ ।) ତମ ଘରକୁ ଯାଇପାରିବୁନି । କାରଣ ଏ ପଦବୀରେ ସାମାଜିକ ସଂପର୍କ ରଖିବା ମନା ।'' ଗତିବାବୁ ଅବସର ନେଲାପରେ ତାଙ୍କର ପରବର୍ତ୍ତୀ ଦାୟାଦମାନେ ଏ ଉଚ୍ଚ ପରମ୍ପରା ତଥା ସାଧୁତାକୁ ଅକ୍ଷୁଣ୍ଣ ରଖିପାରିଲେ ନାହିଁ । ଶେଷପର୍ଯ୍ୟନ୍ତ ଏଥିଲାଗି ତାଙ୍କ ମନରେ କ୍ଷୋଭ ରହିଗଲା ।

ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ଦେଶରେ ଜରୁରୀ ପରିସ୍ଥିତି ଜାରି କଲାପରେ ସେ ତା'ର ଘୋର ବିରୋଧୀ ଥିଲେ । ମାତ୍ର ଚାକିରି କରୁଥିବାରୁ ସର୍ବସାଧାରଣରେ ତାଙ୍କର ନିର୍ଭୀକ ମତ ପ୍ରକାଶ କରିପାରୁ ନ ଥିଲେ । କାରଣ ତାହା ସରକାରୀ ନିୟମର ବିରୋଧାଚରଣ କରୁଥାଆନ୍ତା; ମାତ୍ର ଥରେ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ତାଙ୍କୁ

ରାଜଭବନକୁ ରାତ୍ରିଭୋଜନ ଲାଗି ଡାକିଲାବେଳେ ସେ ନମ୍ରତାର ସହିତ ନାହିଁ କରିଦେଇଥିଲେ । ସେଥିଲାଗି ପରେ ତାଙ୍କୁ ବହୁମୂଲ୍ୟ ଦେବାକୁ ପଡ଼ିଥିଲା । ଅବସର ପରେ ଥରେ କହିଲେ, "Prime Minister is the custodian of Law in the country whereas I was the custodian of Law in ODISHA. She has misused her powers during the emergency. How can I sit in the same table ?" ତାଙ୍କର ଏହି ନିର୍ଭୀକତା ସେତେବେଳେ ସାରାଦେଶରେ ଚହଳ ପକାଇଥିଲା ।

ଗତିବାବୁ ଗୋଟିଏ ନଡ଼ିଆ ପରି ଥିଲେ । ବାହାରୁ ଅତ୍ୟନ୍ତ କଠୋର ଜଣାପଡୁଥିଲେ ମଧ୍ୟ ତାଙ୍କ ହୃଦୟ ଅତ୍ୟନ୍ତ ସରଳ ଓ ସ୍ନେହପୂର୍ଣ୍ଣ ଥିଲା । ଏ କଥା ମୋ ଭଳି ଯେଉଁମାନେ ତାଙ୍କ ନିକଟ ସମ୍ପର୍କରେ ଆସିଛନ୍ତି, ସେମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ । ମୋର ସ୍ମରଣଶକ୍ତି ଏବଂ ବାଗ୍ମିତାକୁ ସେ ପସନ୍ଦ କରୁଥିଲେ । ବେଳେବେଳେ କୌଣସି ବିଷୟରେ ଆମର ଯୁକ୍ତିତର୍କ ମଧ୍ୟ ହୁଏ । ଯୁକ୍ତିକୁ ସେ ସଦାବେଳେ ଉତ୍ସାହିତ କରୁଥିଲେ । ତାଙ୍କର ବହୁତ ଇଚ୍ଛା ଥିଲା, ମୁଁ 'ଲ' ପଢ଼ି ପ୍ରାକ୍ଟିସ୍ କରେ ବୋଲି । ଥରେ ମତେ କହିଲେ, "The vocabulary and oratory which would have been an asset in judiciary will be a liability in your department." ପରବର୍ତ୍ତୀ ଜୀବନରେ ମୁଁ ତାଙ୍କ କଥାର ସତ୍ୟତା ବହୁବାର ଅଙ୍ଗେ ଲିଭାଇଛି । ମାତ୍ର 'ଦଇବ ଲେଖନ କେ କରିବ ଆନ' ।

ଗତିବାବୁ ଆଉ ଇହଜଗତରେ ନାହାନ୍ତି । ଦୀର୍ଘ କର୍ମମୟ ଜୀବନଯାପନ କରି ସେ ଆମମାନଙ୍କ ପାଖରୁ ବିଦାୟ ନେଇଛନ୍ତି । ତାଙ୍କର ଆଦର୍ଶ, ନୀତିନିଷ୍ଠା, ସଚ୍ଚୋଟପଣିଆ, ବିଚାର ବିଭାଗର ପରବର୍ତ୍ତୀ ପିଢ଼ିମାନଙ୍କୁ ଅନୁପ୍ରାଣିତ କରିବ, ଏଥିରେ ସନ୍ଦେହ ନାହିଁ ।

ଯଥାର୍ଥରେ ସେ ଥିଲେ ଓଡ଼ିଶାର ଜଣେ ବରପୁତ୍ର ତଥା ଓଡ଼ିଶା ନ୍ୟାୟପାଳିକାର ସତର୍କ ପ୍ରହରୀ । ତାଙ୍କର ମୃତ୍ୟୁରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହେଲା, ତା' ବହୁଦିନ ଯାଏ ଅପୂରଣୀୟ ହୋଇ ରହିବ ।

□□□

## ଏମ୍.ଆଇ.ଏମ୍. ପଟ୍ଟନାୟକ
## ନଗ୍ନ ରାଜନୀତିର ନାୟକ

ଏମ୍.ଆଇ.ଏମ୍. ଙ୍କର ପୂରା ନାମ ହେଲା– ଶ୍ରୀ ଏମ୍. ଇନ୍ଦ୍ରମୋହନ ପଟ୍ଟନାୟକ । ସେ ଜାତିରେ ତେଲେଙ୍ଗା କରଣ । ସେତେବେଳେ ପୂର୍ତ୍ତ ବିଭାଗରେ ଏମାନଙ୍କର ସମ୍ପୂର୍ଣ୍ଣ ରାଜତ୍ୱ ଚାଲିଥାଏ । ଆଉ ଜଣେ କ୍ଷମତଶାଳୀ ଇଞ୍ଜିନିୟର ଥାଆନ୍ତି ଶ୍ରୀଯୁକ୍ତ ପ୍ରହ୍ଲାଦ ପଟ୍ଟନାୟକ । ତାଙ୍କର ପୂରା ନାଁ' ହେଲା ପ୍ରହ୍ଲାଦ ଜେ. ରାଓ ପଟ୍ଟନାୟକ । ଓଡ଼ିଶାରେ ଚାକିରି କରୁଥିବାରୁ ଜେ. ରାଓକୁ କାଟିଦେଇ ଖାଲି ପଟ୍ଟନାୟକ ଲେଖୁଥା'ନ୍ତି । ଶ୍ରୀଯୁକ୍ତ ବସନ୍ତ କୁମାର ବିଶ୍ୱାଳ ପୂର୍ତ୍ତମନ୍ତ୍ରୀ ହେବାପରେ ଏ ଦୁଇ ଜଣଙ୍କର ଅଖଣ୍ଡ ଆଧିପତ୍ୟ ଚାଲିଲା ।

ଏମ୍.ଆଇ.ଏମ୍.ଙ୍କୁ ମୁଁ ପ୍ରଥମେ ଭେଟିଲି ସୁନାବେଡ଼ାରେ । ମୁଁ ଏ.ଇ.ଏଫ୍‌ରେ ଆସିଷ୍ଟାଣ୍ଟ ଇଞ୍ଜିନିୟର ଥାଏ । ସେ ଓ.ସି.ସି.ରେ ଡେପୁଟେସନ୍‌ରେ ଆସି ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଭାବେ କାମ କରୁଥା'ନ୍ତି । ସେତେବେଳେ ମିଗ୍ ପ୍ରୋଜେକ୍ଟରେ ଅନେକ କାମ ପାଇଥାଏ । ଉପରିସ୍ଥ ଅଫିସର ହେଲେ ମଧ୍ୟ ଗୋଟେ ଦୃଷ୍ଟିରୁ ସେମାନେ ଆମର କଣ୍ଟ୍ରାକ୍ଟର । ସିମେଣ୍ଟ କଂକ୍ରିଟ୍ ରୋଡ୍ ଦାୟିତ୍ୱରେ ମୁଁ ଥାଏ । ଏ.ସି. ପାଢ଼ୀଙ୍କ ନିର୍ଦ୍ଦେଶକ୍ରମେ କାମର ଟିକିନିଖି ତଦାରଖ କରାଯାଉଥାଏ । ଥରେ କି ଦୁଇ ଥର ଯଥେଷ୍ଟ କ୍ୟୁଓରିଂ ହେଉ ନ ଥିବାରୁ ମୁଁ ସାଇଟ୍ ନିର୍ଦ୍ଦେଶ ବହିରେ ଲେଖିଦେଇଥିଲି । ସେଥିଲାଗି ଏମ୍.ଆଇ.ଏମ୍ ମୋ' ଉପରେ ଟିକିଏ କ୍ଷୁବ୍ଧ ହୋଇଛନ୍ତି ବୋଲି ମୁଁ ମୋର ସାଙ୍ଗ ଭବାନୀ ରଥଙ୍କ ଠାରୁ ଶୁଣିଲି । ମୁଁ ପ୍ରଥମରୁ ଟିକିଏ ଏକବାଗିଆ, ଯେଉଁଟାକୁ ଉଚିତ ମନେକରିବି, ସେଥିରୁ ତିଳେ ହେଲେ ଘୁଞ୍ଚିବି ନାହିଁ । ଯେତେ ଉପରିସ୍ଥ ଅଫିସର କିମ୍ବା ରାଜନେତା ହୁଅନ୍ତୁ ନା କାହିଁକି ମୁହଁ ଉପରେ ସତକଥା କହିବାକୁ ମୁଁ କେବେ ପଛଘୁଞ୍ଚା ଦେଇନି । ସେଥିଲାଗି ମୋତେ ବହୁତ ଅପମାନ ସହ୍ୟ କରିବାକୁ ପଡ଼ିଛି ଏବଂ ରାତି ଅଧରେ ପିଲାଛୁଆଙ୍କୁ ଧରି ଓଡ଼ିଶାର ଦୂରଦୂରାନ୍ତକୁ ବଦଳି ହେବାକୁ ପଡ଼ିଛି । ବହୁଦିନ ପରେ ଥରେ ମୋ ସ୍ତ୍ରୀକୁ ଆଣିବାପାଇଁ ସେ ନିଜ କାର୍ (ORP 1371) ଦେବାର ମୋର ମନେ ଅଛି । ଥରେ ଗୋଟେ ଟାକ୍ସିରେ ଯାଉଥିବାବେଳେ ଡ୍ରାଇଭର

କହିଲା, "ସାର୍ ! ଆପଣ କେବେ ସୁନାବେଡ଼ା ଯାଇଛନ୍ତି ? ସେଠି ଫ୍ୟାକ୍ଟ୍ରି ଭିତରେ କଂକ୍ରିଟ୍ ରୋଡ୍ ତିଆରି ହୋଇଛି । ଗାଡ଼ି ବନେଟ୍ ଉପରେ ପାଣି ଗ୍ଲାସେ ରଖିଦେଲେ ବି ହଲିବନି ।" ଜୀବନରେ ଅନେକ ଲାଞ୍ଛନା ଭିତରେ ଏମିତି ପଦେ ପଦେ କଥା ମନରେ ସାହସ ଆଣିଦିଏ ଏବଂ କର୍ମ ପଥରେ ଆଗେଇ ଯିବାକୁ ପ୍ରେରଣା ଦିଏ ।

ଏମ୍.ଆଇ.ଏମ୍. ମତେ ଥଟ୍ଟାରେ ମୃତ୍ୟୁଞ୍ଜୟ ନ ଡାକି 'Conqueror of Death' ବୋଲି ଡାକୁଥିଲେ । ଥରେ କହିଲେ, "ତମେ ତ ବଢ଼ିଆ ଇଂଲିଶ ଲେଖୁଛ, ମୁଁ ଉତ୍ତର ଦେଇପାରୁନି । କେତେବେଳେ ଭବିଷ୍ୟତରେ ଏମିତି ଜାଗାରେ ଦେଖାହେବ ଯେ ସେଠି କଲିଂବେଲ୍ ଟିପିଲେ ଦୁଇକଡୁ ଦୁଇ ଜଣ ଆକାଉଣ୍ଟାଣ୍ଟ ବାହାରିବେ ଓ ତମ ଚିଠିର ଉତ୍ତର ଦେବେ ।" ତାଙ୍କର ସେ ସ୍ୱପ୍ନ ସଫଳ ହେଲା ୧୯୮୦ ମସିହାରେ କଟକ ପୂର୍ତ୍ତ ବିଭାଗର ମୁଁ ଆସିଷ୍ଟାଣ୍ଟ ଇଞ୍ଜିନିୟର ଥିବା ସମୟରେ । ଆମର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥା'ନ୍ତି ସରଳ ଅମାୟିକ ଭଦ୍ରଲୋକ ଶ୍ରୀ ସୋମନାଥ ମିଶ୍ର । ସେ ମତେ ବହୁତ ଭଲ ପାଉଥିଲେ । ଯାହା କହନ୍ତି, ଆମେ ସବୁ 'ରାମରାଜ୍ୟ'ରେ କାମ କରୁଥିଲୁ । ତାଙ୍କର ନିକଟରେ ସୁପରିଣ୍ଟେଣ୍ଡିଙ୍ଗ ଇଞ୍ଜିନିୟରକୁ ପ୍ରମୋସନ ହବାକୁ ଥାଏ । ଏମ୍.ଆଇ.ଏମ୍ ପୁରୀରେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥା'ନ୍ତି । ହଠାତ୍ ତାଙ୍କର କଟକ ଡିଭିଜନକୁ ବଦଳି ହେଲା । ସୋମନାଥ ମିଶ୍ର ଦାୟିତ୍ୱ ଦେଇ ଭୁବନେଶ୍ୱରକୁ ଗଲେ ଓ ସେଠାରେ ବହୁତ ହଇରାଣ ହୋଇ ତାଙ୍କ ଦୁଇ ଝିଅଙ୍କ ବାହାଘର କଲେ । ଦାୟିତ୍ୱ ନବାଦିନ ଏମ୍.ଆଇ.ଏମ୍ ୧୧ଟା ବେଳକୁ ଡିଭିଜନ ଅଫିସ୍‌ରେ ପହଞ୍ଚିଲେ । ଆମେ ପାଞ୍ଚ-ଛଅ ଜଣଯାକ ଆସିଷ୍ଟାଣ୍ଟ ଇଞ୍ଜିନିୟର ଧାଡ଼ିବାନ୍ଧି ଅପେକ୍ଷା କରି ଠିଆ ହୋଇଥାଉ । ପୂର୍ତ୍ତ ବିଭାଗର ସେ ସେତେବେଳକୁ ଅତ୍ୟନ୍ତ ପ୍ରଭାବଶାଳୀ ହୋଇସାରିଥିଲେ । କାର୍‌ରୁ ଓହ୍ଲାଇଲାମାତ୍ରେ ମୋ' ପାଖକୁ ଆସି ଧୃତରାଷ୍ଟ୍ର ଲୁହା ଭୀମକୁ ଆଲିଙ୍ଗନ କଲାପରି ମତେ କୁଣ୍ଢାଇ ପକାଇ କହିଲେ, "କ'ଣ Conqueror of Death? ତମେ ଏଠାରେ ? ତା'ହେଲେ ମୋର ଆଉ କିଛି ବ୍ୟସ୍ତ ହେବାର ନାହିଁ ।" ମୋ' ସାଙ୍ଗ ଇଞ୍ଜିନିୟରମାନେ ମତେ କହିଲେ, "ଭାଇ ! ଆମ କଥା ତମକୁ ଲାଗିଲା ।" ମାତ୍ର ମୁଁ ମନେ ମନେ ଭାବିନେଲି ଯେ ମୋର ଆୟୁଷ ଏଠାରେ ଅଳ୍ପଦିନ ।

ତା'ର କିଛିଦିନ ପରେ ଆମେ ସମସ୍ତେ ତାଙ୍କ ଘରେ ବସିଥାଉ । ସେ ବହୁତ ମଜା ମଜା କଥା କହନ୍ତି । ହଠାତ୍ କହିଲେ, "ବୁଝିଲ, ତମେ ହେଲ

ଏମ୍. ପଟ୍ଟନାୟକ ଏବଂ ମୁଁ ହେଲି ଏମ୍.ଆଇ.ଏମ୍. ପଟ୍ଟନାୟକ । ଦୁଇଟା ବାଘ ଗୋଟେ ଜଙ୍ଗଲରେ ରହିପାରିବେ ନାହିଁ । ମୋ' ଚିଠିଗୁଡ଼ା ତମ ଘରକୁ ଯିବ, ତୁମ ଚିଠି ସବୁ ମୋ ପାଖକୁ ଆସିବ ।'' ମୁଁ ମଧ ଛାଡ଼ିବା ଲୋକ ନୁହେଁ । ମୁଁ କହିଲି, ''ସାର୍, ମୋ' ଚିଠି ଆପଣ ପଢ଼ିକରି ମୋ' ପାଖକୁ ପଠେଇଦେବେ । ମୋର କିଛି ଅସୁବିଧା ନାହିଁ;'' ମାତ୍ର ଘରକୁ ଫେରି ମୋ' ସ୍ତ୍ରୀଙ୍କୁ କହିଲି– ଏଥର ବିଛଣାପତ୍ର ବାନ୍ଧ, ଆମର ଏଠି ଆଉ ବେଶୀଦିନ ନୁହେଁ ।

ସତକୁ ସତ ମାସେ ଯାଇନି, ମୋର ବଦଳି ଅର୍ଡର ଆସିଗଲା ଏବଂ ତାଙ୍କର ଏକାନ୍ତ ଅନୁଗତ ଭବାନୀ ରଥ (ମୋର ଘନିଷ୍ଠ ସାଙ୍ଗ) ମୋ'ଠାରୁ ଦାୟିତ୍ୱ ନେଲେ । ସେତେବେଳେ ଏମ୍.ଆର୍.ଏମ୍. ଯାହାକୁ ଚାହୁଁଥିଲେ ବଦଳି କରିଦେଇପାରୁଥିଲେ । କିନ୍ତୁ ମୁଁ ତାଙ୍କୁ ଧନ୍ୟବାଦ ଦେବି ଯେ ସେ ମୋର ଆଉ କିଛି କ୍ଷତି କରି ନାହାନ୍ତି ।

ଏମ୍. ଆର୍. ଏମ୍. ଜଣେ ଦକ୍ଷ ଇଞ୍ଜିନିୟର ଥିଲେ, ଏଥିରେ ସନ୍ଦେହ ନାହିଁ । କଟକର ଓ.ଏମ୍.ପି. ଫ୍ଲାଏ ଓଭର, ଇନ୍‌ଡୋର୍ ଷ୍ଟାଡିୟମ୍ ଆଦି ତାଙ୍କ ସମୟରେ ହୋଇଛି । ନିର୍ମାଣ ସୌଧ ଆଦି ତାଙ୍କର କୀର୍ତ୍ତି । ମାତ୍ର ସେ ଅତ୍ୟନ୍ତ ଦୁର୍ନୀତିଗ୍ରସ୍ତ ଥିଲେ ଏବଂ ତାଙ୍କ ଅଧୀନରେ ଥିବା ଅଫିସରମାନଙ୍କୁ ଦୁର୍ନୀତିରେ ବୁଡ଼ାଇ ରଖୁଥିଲେ ।

ସେଥିଲାଗି ସେ ନିଜେ ଏବଂ ତାଙ୍କ ଅଧୀନରେ ଥିବା ଅଫିସରମାନେ ଅନେକ ଦୁର୍ଦ୍ଦଶା ଭୋଗିଛନ୍ତି ଏବଂ କେତେକ ଜେଲ ମଧ ଯାଇଛନ୍ତି; ମାତ୍ର କବିଙ୍କ ଭାଷାରେ–

''ଇଚ୍ଛନ୍ତି ଦାମ୍ଭିକେ ରଖିବାକୁ ହସ୍ତେ
ସମସ୍ତଙ୍କ ଭାଗ୍ୟଡୋରି
ନିଜ ଭାଗ୍ୟଡୋରି କାଳ ହସ୍ତେ ବନ୍ଧା
ହେଲେ ଯାଆନ୍ତି ପାସୋରି ।''

ଏଇ ଦାମ୍ଭିକତା ପରବର୍ତ୍ତୀ ଜୀବନରେ ତାଙ୍କୁ ବହୁତ ମହଙ୍ଗା ପଡ଼ିଲା । ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ସେ ଦୁର୍ନୀତି ଅପରାଧରେ ସସ୍‌ପେଣ୍ଡ ହେଲେ । ତାଙ୍କର ବିଭିନ୍ନ ଜାଗାରେ କରିଥିବା ଘରସବୁ ଖାନ୍‌ତଲାସ ହୋଇ ଲକ୍ଷ ଲକ୍ଷ ଟଙ୍କାର ଆୟବହିର୍ଭୂତ ସମ୍ପତ୍ତି ଜବତ୍ ହେଲା । ଏକଦା ଅନ୍ୟମାନଙ୍କୁ ସୁପରସିଡ୍ କରି ଚିଫ୍ ଇଞ୍ଜିନିୟର ଏବଂ ସେକ୍ରେଟାରୀ ହେବାକୁ ସ୍ୱପ୍ନ ଦେଖୁଥିବା ଏମ୍.ଆଇ.ଏମ୍ ଅବଶେଷରେ ସୁପରିଣ୍ଟେଣ୍ଡେଣ୍ଟ ଇଞ୍ଜିନିୟର ପଦବୀରୁ ଅବସର ନେବାକୁ ବାଧ ହେଲେ ।

୧୯୯୮ ମସିହାର କଥା । ମୁଁ ସେତେବେଳକୁ ଚିଫ୍ ଇଞ୍ଜିନିୟର ହୋଇ ସାରିଥାଏ । ଦିନେ ଅଫିସରେ ପିଅନ ଗୋଟେ ସ୍ଲିପ୍ ଆଣି ଦେଲା । ଲେଖାହୋଇଛି ଏମ୍.ଆଇ.ଏମ୍. ପଟ୍ଟନାୟକ ସସ୍‌ପେନସନ୍‌ରେ ଥିବା ଅଧୀକ୍ଷଣ ଯନ୍ତ୍ରୀ । ମୋ ଆଖିକୁ ଲୁହ ଆସିଗଲା । ମୁଁ ନିଜେ କବାଟ ଖୋଲି ତାଙ୍କୁ ମୋ' ରୁମ୍‌କୁ ଡାକିଲି ଏବଂ କଫି ପାଇଁ ବରାଦ ଦେଲି । ସେ କଫି ପିଇବାକୁ ଭଲପାଆନ୍ତି । ତା'ପରେ ମତେ କହିଲେ, ''ମୋର ପେନ୍‌ସନ୍ ନେବାକୁ ଆସିଲି । ଅଡୁଆ ତୁଟି ନ ଥିବାରୁ ପୂରା ପେନ୍‌ସନ୍ ଏପର୍ଯ୍ୟନ୍ତ ମିଳିନି । ତମେ କିନ୍ତୁ ଆଦୌ ବଦଳିନ । ସୁନାବେଡ଼ାରେ ଯାହା, ବର୍ତ୍ତମାନ ବି ସେୟା ।'' ମୁଁ ତାଙ୍କ ସାଙ୍ଗରେ ପୋର୍ଟିକୋ ପାଖକୁ ଗଲି, କାରର ଦରଜା ଖୋଲି ତାଙ୍କୁ ବସାଇଦେଲି ।

ସେ ଟିକିଏ ଆଖି ଛଳ ଛଳ କରି ମୋ ଦୁଇ ହାତକୁ ଧରିଲେ ଏବଂ କହିଲେ, "God Bless you" । ତା'ପରେ ମୋର ତାଙ୍କ ସଙ୍ଗେ ଆଉ ଭେଟ ହୋଇନି ।

ପରେ ମୋର ଜଣେ ଅଫିସରଙ୍କ ଠାରୁ ଶୁଣିଲି, ବଡ଼ କରୁଣ ପରିସ୍ଥିତିରେ ତାଙ୍କର ମୃତ୍ୟୁ ହେଲା । ସେ ଅନେକଦିନ ଧରି ଶଯ୍ୟାଶାୟୀ ରହିଲେ । ତାଙ୍କର ଏକମାତ୍ର ପୁଅ ତାଙ୍କର ଯତ୍ନ ନେଲାନି । ସେ ବିଦେଶରେ ବାହା ହୋଇ ରହିଗଲା । ଏମ୍.ଆଇ.ଏମ୍.ଙ୍କ ଜୀବନ ସବୁ ଇଞ୍ଜିନିୟରଙ୍କ ପାଇଁ ଗୋଟେ ଶିକ୍ଷା । କଥାରେ ଅଛି– Power corrupts. absolute power corrupts absolutely.

ଏଥରୁ ଭାଗବତରୁ ଗୋଟିଏ କଥା ପ୍ରମାଣିତ ହେଲା–

''ଆପଣା କଲା କର୍ମ ମାନ
ଆଗୁଁ ହୋଇବ ସାବଧାନ ।''

ତାଙ୍କର ଆତ୍ମା ଶାନ୍ତି ଲାଭ କରୁ– ଭଗବାନ୍‌ଙ୍କ ପାଖରେ ଏତିକି ପ୍ରାର୍ଥନା ।

❑❑❑

## ସୋମନାଥ ମିଶ୍ର
## ସରଳତା, ସାଧୁତା ତଥା ଦେବୋପମ
## ଏକ ଅମାୟିକ ବ୍ୟକ୍ତିତ୍ୱ

ଆମ ଇଞ୍ଜିନିୟରିଂ ଡିପାର୍ଟମେଣ୍ଟ୍‌ରେ ଯଦି ଜଣେ ଭଲ ଲୋକ ଖୋଜିବ, ତେବେ ତମ ମୁହଁ ଆଗରେ ଗୋଟିଏ ଗୌରବର୍ଣ୍ଣ, ସଦା ହସ ହସ, ଭଗବତ୍ ବିଶ୍ୱାସରେ ପରିପୂର୍ଣ୍ଣ ଉଜ୍ଜ୍ୱଳ ମୁହଁ ସଙ୍ଗେ ସଙ୍ଗେ ଆଖି ଆଗକୁ ଆସିବ । ସେ ହେଲେ ଅଜାତଶତ୍ରୁ ଶ୍ରୀଯୁକ୍ତ ସୋମନାଥ ମିଶ୍ର । ତାଙ୍କ ପାଖରେ ଛୋଟ, ବଡ଼ ଭାବ ନ ଥାଏ । ସମସ୍ତେ ତାଙ୍କର ବନ୍ଧୁ ।

ବହୁତ ଦିନ ତଳର କଥା । ମୁଁ ସେତେବେଳେ ରାଇରଙ୍ଗପୁରରେ ଏସ୍.ଡି.ଓ. ଥାଏ । ଥରେ ମୁଁ କାର୍ଯ୍ୟ ଉପଲକ୍ଷେ କୁଆଡ଼େ ଦିନେ ଦୁଇ ଦିନ ପାଇଁ ବାହାରକୁ ଯାଇଥାଏ । ଘରକୁ ଫେରିବା ପରେ ମୋ ସ୍ତ୍ରୀ କହିଲେ, ‘‘ଗୋରା ହୋଇ ତମର ଜଣେ ଇଞ୍ଜିନିୟର ଭୁବନେଶ୍ୱରରୁ ଆସିଥିଲେ । ତମକୁ ଖୋଜିଲେ । ତା’ପରେ କହିଲେ, ମୋର ଏଠି ଦୁଇ ତିନି ଘଣ୍ଟାର କାମ ଅଛି । ମୁଁ ଦୁଇଟା ବେଳକୁ ଫେରିବି । ଘରେ ଖାଇକରି ଯିବି । ମୋ ଲାଗି ବ୍ୟସ୍ତ ହେବନି । ଭାତ, ଡାଲି, ତରକାରି ଓ ବାଡ଼ିରେ ଶାଗ ଥିଲେ ଟିକେ କରିବେ ।’’ ମୁଁ ସଙ୍ଗେ ସଙ୍ଗେ କହିଲି, ‘‘ସେ ସୋମନାଥ ମିଶ୍ରଙ୍କ ବ୍ୟତୀତ ଆଉ କେହି ହୋଇ ନ ପାରନ୍ତି । ଏତେଦୂର ଆତ୍ମୀୟତା ସେତେବେଳେ ପି.ଡବ୍ଲ୍ୟୁ.ଡି.ରେ ନ ଥିଲା, ଉପରତଳ ଭାବ ବହୁତ ଥିଲା ।

ଯୋଗକୁ ମୁଁ ରାଇରଙ୍ଗପୁରରୁ ବଦଳି ହୋଇ କଟକ ଡିଭିଜନ୍‌କୁ ଆସିଲି । ସେ ସେତେବେଳକୁ କଟକ ପୂର୍ତ୍ତ ବିଭାଗର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର । ଥରେ ଓପରବେଳା ଆମ ଦୁଇ ତିନି ଜଣ ଏସ୍.ଡି.ଓ. ତାଙ୍କ ଅଫିସ୍‌ରେ ବସିଥାଉ । ପିଅନ ଗୋଟେ କାଗଜ ଆଣିଦେଲା ।

ଠିକ୍ ତାଙ୍କରି ଉଚ୍ଚାର ହସ ହସ ମୁହଁରେ ଜଣେ ଭଦ୍ରବ୍ୟକ୍ତି ଆସିଲେ । ସୋମନାଥବାବୁ ତାଙ୍କୁ ଚିହ୍ନାଇବାକୁ ଯାଇ କହିଲେ, ‘‘ଏ ବାବୁଙ୍କୁ ଜାଣିଛ ? ଇଏ ହେଉଛନ୍ତି ସେଲ୍‌ସଟ୍ୟାକ୍ସ କମିସନର ଶ୍ରୀଯୁକ୍ତ ସୋମନାଥ ମିଶ୍ର ।’’ ସୋମସାହେବ କହିଲେ, ‘‘ସୋମନାଥବାବୁ !

ମୁଁ ରାୟଗଡ଼ାରେ ଏସ୍.ଡି.ଓ. ଥିଲାବେଳେ ଆପଣ ସେଠି ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥିଲେ । ମୁଁ କଟକରେ କଲେକ୍ଟର ହୋଇସାରି କମିସନର ହେଲିଣି; ଅଥଚ ଆପଣଙ୍କର ପ୍ରମୋଶନ ହୋଇନି ।'' ଆଉ କିଏ ହୋଇଥିଲେ ବହୁତ ଅପମାନିତ ହୋଇଥା'ନ୍ତା । ମାତ୍ର ସୋମନାଥବାବୁ ତାଙ୍କର ଚିରାଚରିତ ଢଙ୍ଗରେ କହିଲେ, ''ବୁଝିଲେ ସୋମସାହେବ ! ଆମେ ହେଲୁ ପି.ଡବ୍ଲ୍ୟୁ.ଡି. ଡିପାର୍ଟମେଣ୍ଟର ଧ୍ରୁବତାରା । ଆମର ଅବସ୍ଥା ସ୍ଥିର ।'' ବହୁତ ହସ ହେଲା । ସୋମ ସାହେବ ଚା' ଖାଇ ଗପସପ କରି ଗଲେ । ସେ ମଧ୍ୟ ଜଣେ ଅତ୍ୟନ୍ତ ଭଦ୍ରଲୋକ ଥିଲେ ।

ସୋମନାଥବାବୁଙ୍କର ତିନିଟି ପିଲା (୨ଟି ଝିଅ ଓ ଗୋଟିଏ ପୁଅ)– ଡଲି, ଜଲି ଓ ପୁଅ ଲୁଲୁ । ଜଲି ଦେଖିବାକୁ ବହୁତ ସୁନ୍ଦର । ଥରେ ଗୋଟେ ପିଲା, ଯିଏ ତା' ଉପରେ ରେଭେନ୍ସା କଲେଜରେ ପଢୁଥିଲା, ତାକୁ ବିବାହ କରିବାକୁ ଚାହିଁଲା । ସେ ସେତେବେଳକୁ ଆଇ.ଏ.ଏସ୍. ପାଇସାରିଥାଏ । ଆଉ କେହି ହୋଇଥିଲେ ଆଇ.ଏ.ଏସ୍. ଜୋଇଁ ପାଇଁ ହାତରେ ସ୍ୱର୍ଗରେ ଚାନ୍ଦ ପାଇବା ପରି ହୋଇଥା'ନ୍ତେ । ମାତ୍ର ସୋମନାଥବାବୁ ମତେ ଡାକି କହିଲେ, ''ତମେ ତ ଆମର ଆଇ.ପି.ଏସ୍. ଇଞ୍ଜିନିୟର । ଟିକିଏ ଭଲ କରି ପତ୍ତା ଲଗା, ସେ ପିଲାର ଚରିତ୍ର କେମିତି ? ଖାଲି ଆଇ.ଏ.ଏସ୍. ପାଇଗଲେ କ'ଣ ସବୁ ହେଇଗଲା ?'' ପରେ ପୁଅର ପିତା (ଯିଏ କି ପୋଲିସ୍ ଆଇ.ଜି. ଥିଲେ)ଙ୍କ ଆଡୁ ପ୍ରସ୍ତାବ ଆସିବାରୁ ସୋମନାଥବାବୁ ତାଙ୍କୁ କହିଲେ ମୋର ଆପତ୍ତି ନାହିଁ; ମାତ୍ର ମୋର ବଡ଼ ଝିଅର ଡଲିର (ବର୍ତ୍ତମାନ ଇନ୍‌କମ୍‌ଟାକ୍ସ କମିସନର) ବାହାଘର ଆଗେ ସରୁ । ସେ ଭଦ୍ରବ୍ୟକ୍ତି ତାଙ୍କ ଆଡୁ ରିଜର୍ଭ ବ୍ୟାଙ୍କର 'ଏ' ଗ୍ରେଡ୍ ଅଫିସର ଥିବା ତାଙ୍କ ଭଣଜା ବିଷୟରେ ପକାଇଲେ । ଏକାଦିନକେ ଦୁଇ ଜଣଙ୍କ ବିବାହ ହେଲା । ବାହାଘର ଦିନ ପ୍ରବଳ ଗହଳି । ତା' ଭିତରେ ଗୋଟିଏ ଧୋତି ଓ ଖୋଲାଦେହରେ ରୁଦ୍ରାକ୍ଷମାଳ ପିନ୍ଧି ହସ ହସ ମୁହଁରେ ସୋମନାଥବାବୁ ଅତିଥିମାନଙ୍କୁ ସ୍ୱାଗତ କରୁଥାଆନ୍ତି । ତାଙ୍କୁ ଦେଖି ମୋର ହଠାତ୍ ମନରେ ଆସିଲା, 'ଐସା ଭି ନରାଃ ବିଚରନ୍ତି ନିର୍ଭୟାଃ' । ସେ ଜୀବନରେ ଯେତେ କ୍ଷମତାଶାଳୀ ଲୋକ ହୁଅନ୍ତୁ ନା କାହିଁକି, କାହାକୁ ଭୟ କରିବାର ମୁଁ କେବେ ଦେଖିନି ।

ଆଉ ଥରକର କଥା । ଚିଫ୍ ଇଞ୍ଜିନିୟର ବିଲ୍‌ଡିଂ ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ପଣ୍ଡା କଟକ ଡିଭିଜନ୍‌ର କାମ ଦେଖିବାକୁ ଆସିଥା'ନ୍ତି । ମୁଁ ଟିକିଏ ବ୍ୟସ୍ତ ହେବାର ଦେଖି ସେ କହିଲେ, ''ତମେ ବ୍ୟସ୍ତ ହୁଅନି । ଗୋଟେ ଇନ୍‌ଫରମେସନ୍ ସିଟ୍ ତିଆରି କରି

ଧରିଥାଅ । ଦରକାର ହେଲେ ଦେଖାଇବ ।'' ସେ ପିଲାପିଲି ନେଇକରି ଆସିଛନ୍ତି । ସିନେମା ଯିବେ । ଓ.ଏମ୍.ପି. ଡାକବଙ୍ଗଳାରେ ସମସ୍ତଙ୍କ ଲାଗି ରନ୍ଧା ହୋଇଥାଏ । ଆମ କଲେଜ ପଢ଼ିବାବେଳେ ଆର୍ ଆଣ୍ଡ୍ ବି.କୁ ଥଟ୍ଟାରେ ରନ୍ଧାବଢ଼ା ଡିପାର୍ଟମେଣ୍ଟ୍ ବୋଲି ଲୋକେ କହୁଥିଲେ । ମାତ୍ର ଚିଫ୍ ଇଞ୍ଜିନିୟର ଆସିଷ୍ଟାଣ୍ଟ୍ ଇଞ୍ଜିନିୟରମାନଙ୍କ ସାଙ୍ଗରେ ଏକା ଟେବୁଲରେ ଖାଇବା ଲାଗି ମନା କଲେ । ଆମମାନଙ୍କୁ ଟିକିଏ ଖରାପ ଲାଗିଲା । ସେ ଖାଇସାରି ବିଶ୍ରାମ ନେବାକୁ ଗଲାପରେ ସୋମନାଥବାବୁ କହିଲେ, ''ଶୁଣ ! ମୁଁ ଚିଫ୍ ଇଞ୍ଜିନିୟର ହେଲେ, ସମସ୍ତେ ଏକାଠି ଖାଇବା । ଆଉ ତମେ ଚିଫ୍ ଇଞ୍ଜିନିୟର ହେଲେ ବି ସେୟା କରିବ ।'' ମୁଁ ଚିଫ୍ ଇଞ୍ଜିନିୟର (ବିଲଡିଂସ୍) ହେଲା ପରେ ତାଙ୍କ କଥା ଅକ୍ଷରେ ଅକ୍ଷରେ ପାଳନ କରିଛି । ଏପରିକି ମୁଁ ବରହମ୍ପୁରରେ ସୁପରିଣ୍ଟେଣ୍ଡିଙ୍ଗ୍ ଇଞ୍ଜିନିୟର୍ ଥିଲାବେଳେ ସୁଦୂର ଫୁଲବାଣୀ କି କୋରାପୁଟରୁ କାଗଜପତ୍ର ଧରି ଆସିଥିବା ଆସିଷ୍ଟାଣ୍ଟ୍ ଇଞ୍ଜିନିୟର, ଏପରିକି ଜୁନିୟର ଇଞ୍ଜିନିୟରମାନଙ୍କୁ ଉପରକୁ ମୋ ଶୋଇବାଘରକୁ ଡାକିଦିଏ ଓ ସେହିଠାରେ ଦସ୍ତଖତ କରିଦିଏ । ସେମାନେ ମତେ ଅନେକଥର କହିଛନ୍ତି, ''ସାର୍, ଆମେ ଜୀବନରେ କେବେହେଲେ ଏସ୍.ଇ.ଙ୍କ ବେଡ୍‌ରୁମ୍‌କୁ ଆସି ନ ଥିଲୁ ।'' ମୁଁ ଚାକିରି ଜୀବନରେ ଦୁଇ ଜଣଙ୍କୁ ଗୁରୁ କରିଥିଲି । ସାଇଟ୍‌ରେ କାମ ତଦାରଖ କଲାବେଳେ ମୋର ଗୁରୁ ଶ୍ରୀଯୁକ୍ତ ଆନନ୍ଦଚନ୍ଦ୍ର ପାଢ଼ୀ, ଘରେ ଅଧସ୍ତନ ଅଫିସରଙ୍କ ସହିତ କଥାବାର୍ତ୍ତା ବେଳେ ମୋର ଗୁରୁ ଶ୍ରୀଯୁକ୍ତ ସୋମନାଥ ମିଶ୍ର । ଏବେବି ମୋ କଥା ପଡ଼ିଲେ ସାର୍ ଅନ୍ୟମାନଙ୍କ ଆଗରେ କହନ୍ତି, ''ଆରେ ! ସେ ତ ମୋ ଚେଲା ।''

ସୋମନାଥବାବୁ ଚିଫ୍ ଇଞ୍ଜିନିୟର ହେଲା ପରେ ଆମ ବିଭାଗର ସର୍ବୋଚ୍ଚ ପଦବୀ, Secy works ହେବା କଥା; ମାତ୍ର କେତେଜଣ ଈର୍ଷାଳୁ ବ୍ୟକ୍ତି ଏକଥା ଚାହୁଁ ନ ଥିଲେ । ଅବଶେଷରେ ସତ୍ୟର ଜୟ ହେଲା । ସେ ଅଳ୍ପଦିନ ପାଇଁ ହେଲେ ମଧ ସେକ୍ରେଟାରୀ ହେଲେ । ଦିନେ ମତେ ଅଫିସ୍‌କୁ ଡକାଇ ପଠାଇଲେ । ଅନ୍ୟ ଅଫିସରମାନେ ବସିଥାଆନ୍ତି । ମତେ କହିଲେ, ''ତମ ନାଁ'ରେ ଗୋଟେ ଗୁପ୍ତ ଚିଠି ଅଛି ଜାଣିଛ ?'' ମୁଁ କହିଲି, ''ସାର୍, ଆପଣଙ୍କ Predecessor ଗନ୍ତାୟତ ସାହେବ 'କ'ଣ ଗୋଟେ ଅଛି' ବୋଲି ମତେ କହୁଥିଲେ; ମାତ୍ର ସେ ବିଷୟରେ କିଛି ଠିକଣା ନ କରି ଚାଲିଗଲେ ।''

ତା'ପରେ ସେ ଘଣ୍ଟି ବଜାଇ କନ୍‌ଫିଡେନ୍ସିଆଲ ବିଭାଗ ଅଫିସରଙ୍କୁ ସେ ଫାଇଲ୍ ଆଣିବାକୁ କହିଲେ ଏବଂ ଗୋଟେ ଚିଠି ବାହାର କରି ସେଠି ବସିଥିବା ଅଫିସରମାନଙ୍କୁ

କହିଲେ, ''ଜଣେ ଭିଜିଲାନ୍ସ ଇନ୍‌ସପେକ୍ଟର ଲେଖିଛନ୍ତି ଯେ କରଞ୍ଜିଆର ଗୋଟେ କଜୱେ କାମରେ ମୃତ୍ୟୁଞ୍ଜୟ ଓ ତା'ର ଓଭରସିୟର ଟଙ୍କା ଖାଇଛନ୍ତି । କେତେ ଟଙ୍କା ମୋର ଠିକ୍ ମନେପଡୁନି । ବୋଧହୁଏ ଟ.୮୮.୫୦ ହେବ । ଜଣକୁ ୫୦ ଟଙ୍କା ପଡ଼ିଲାନି । ଯା ମୁହଁ ଦେଖିଲେ ସେ ୧୦୦ ଟଙ୍କା ଖାଇବା ପରି ଦେଖାଯାଉଛି ? ସମସ୍ତେ ହସିଲେ । ତା' ପରେ ମତେ କହିଲେ, ''ତମର ତ ଇଂରେଜୀ ବହୁତ ଭଲ । ଗୋଟେ ଡିକ୍ଟେସନ୍ ଦିଅ ।'' ମୁଁ କିଛି ନ କହିଲାରୁ ସେ ନିଜେ ଡିକ୍ଟେସନ୍‌ରେ "Allegation is baseless motivated and should be dropped" ବୋଲି ଡାକିଦେଲେ । ମୁଁ ସେତେବେଳେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ହୋଇସାରିଥାଏ । କନଫିଡେନ୍‌ସିଆଲ୍ ଆସିଷ୍ଟାଣ୍ଟ କହିଲେ, ''ସାର୍ ଯେତେ କମ୍ ଟଙ୍କା ହେଉ ନା କାହିଁକି ସେ Class-I ହୋଇଥିବାରୁ ଫାଇଲ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯିବ ।''

ସୋମନାଥବାବୁ କହିଲେ, ''ଅଭିଯୋଗ ହେଲାବେଳେ ସେ Class-II ଥିଲା । ତମ ପାଖକୁ ଭିଜିଲାନ୍ସ ଲେଖିଲାବେଳେ ବି ସେ Class-II ଥିଲା । ତମେ ବର୍ଷ ବର୍ଷ ଧରି ଫାଇଲ୍ ମାଡ଼ିବସିଛ । ତେଣୁ Secy works ତାକୁ dispose କରିବାପାଇଁ ସମ୍ପୂର୍ଣ୍ଣ ସକ୍ଷମ ।'' ମୋ ଆଗରେ ଅସଲ କପି କରି ଦସ୍ତଖତ କରିଦେଲେ ଓ G.A.Depttକୁ ଜଣାଇଦେଲେ । ସେ ମୋତେ କେବଳ ଭଲପାଉଥିଲେ ବୋଲି ଏପରି କଲେ ତା' ନୁହେଁ, ଉତ୍ତମ ଅଫିସରମାନଙ୍କୁ ସାମାନ୍ୟ ସାମାନ୍ୟ କଥାରେ, କେମିତି ହଇରାଣ କରାଯାଏ, ସେ ନିଜ ଅନୁଭୂତିରୁ ଜାଣିଥିଲେ ଏବଂ ଯତ୍ପରୋନାସ୍ତି ସେମାନଙ୍କୁ ସାହାଯ୍ୟ କରୁଥିଲେ ।

ସୋମନାଥବାବୁ ଏବେ ଅବସର ଜୀବନ ବିତାଉଛନ୍ତି । ମୁଁ ମଧ୍ୟ ଯା' ମଧ୍ୟରେ ଚାକିରିରୁ ଅବସର ନେଲିଣି । ମାତ୍ର ମଝିରେ ମଝିରେ ତାଙ୍କର ଗୁରୁଗମ୍ଭୀର ସ୍ୱର ଟେଲିଫୋନ୍‌ରେ ଭାସିଆସେ– ''ମୃତ୍ୟୁଞ୍ଜୟ ! କେମିତି ଅଛ ?'' ସେ ସ୍ୱରରେ କ'ଣ କୁହୁକ ଥାଏ କେଜାଣି ମନଟା ଖୁସିରେ ପୂରିଉଠେ । ଭଗବାନ୍ ତାଙ୍କୁ ଦୀର୍ଘାୟୁ କରନ୍ତୁ ।

□□□

# ଦାଶରଥି ପଟ୍ଟନାୟକ
## ଓଡ଼ିଶାର ବିନୋବା ଭାବେ

ଦାଶରଥି ପଟ୍ଟନାୟକଙ୍କୁ ମୁଁ ପ୍ରଥମେ ଦେଖିଲି ୧୯୭୬ ମସିହାରେ । ମୁଁ ସେତେବେଳକୁ ରାଇରଙ୍ଗପୁରରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥାଏ । ଏସ୍.ଡି.ଓ. (ସିଭିଲ୍) ଥାଆନ୍ତି ଶ୍ରୀ କାଶୀ ବିଶ୍ୱନାଥ ପଣ୍ଡା, ଓ.ଏ.ଏସ୍. । ଆମ ଦୁହିଁଙ୍କର ସରକାରୀ ବଙ୍ଗଳା ଲାଗି ଲାଗି ଥାଏ ।

ଦିନେ ସକାଳେ ପ୍ରାତଃଭ୍ରମଣ ସାରି ସାମ୍ନା ବାରଣ୍ଡାରେ ବସିଛି । ପାଖରେ ମୋ ସ୍ତ୍ରୀ ବସିଥାଆନ୍ତି । ଫାଟକ ଖୋଲି ଜଣେ ବୃଦ୍ଧବ୍ୟକ୍ତି ଘରକୁ ପଶିବାର ଦେଖିଲି । ବେଶ୍ ଲମ୍ୱା ଗୋରା ଚେହେରା । ପରିଧାନରେ ଦୁଇଟା ଗେରୁଆ ଗାମୁଛା, ଗୋଟେ ଠେକା । ଗୋଟେ ବଡ଼ ଠେଙ୍ଗା ଧରିଥା'ନ୍ତି ହାତରେ । ବଡ଼ ଅଦ୍ଭୁତ ଲାଗିଲା । ପାଖକୁ ଆସି ପଚାରିଲେ, ''ତମେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ?'' ମୁଁ ହଁ କଲାରୁ କହିଲେ, ''ତମେ ମତେ ତଡ଼ିଦବନି ତ ?'' ତାଙ୍କ ଆଖିରେ କ'ଣ ସମ୍ମୋହନ ଶକ୍ତି ଥିଲା କେଜାଣି, ଆମେ ଦୁହେଁ ସେଥିରେ ପ୍ରଥମରୁ ଭାସିଗଲୁ । ମୋ ସ୍ତ୍ରୀ ତାଙ୍କ ପାଇଁ ଚା' ବରାଦ କରିବାକୁ ଭିତରକୁ ଚାଲିଗଲେ । ମୁଁ ତାଙ୍କୁ ବସିବାକୁ ଅନୁରୋଧ କଲି । ସେ କିଏ ଏବଂ ମୋ'ଠାରୁ କ'ଣ ଚାହୁଁଛନ୍ତି ବୋଲି ପଚାରିଲି । ମୁଁ ଓଡ଼ିଶାର ଗୋଟେ ଉପାନ୍ତ ଅଞ୍ଚଳରେ ଥିବାରୁ ସେତେବେଳେ ତାଙ୍କ ବିଷୟରେ କିଛି ଶୁଣି ନ ଥିଲି ।

ତାଙ୍କ କଥାରୁ ଜାଣିଲି, ସେ ଓଡ଼ିଶାସାରା ବୁଲି ବୁଲି ସବୁ ପୁରୁଣା ପୋଥି ଓ ଅନ୍ୟାନ୍ୟ ଜିନିଷ ସଂଗ୍ରହ କରୁଛନ୍ତି, ଯାହାକି ପରବର୍ତ୍ତୀ ପିଢ଼ିମାନଙ୍କ ପାଇଁ ଅମୂଲ୍ୟ ସମ୍ପଦ । ବାସ୍ ! ସେଇ ପ୍ରଥମ ଦେଖାରୁ ଆମେ ଦୁହେଁ ତାଙ୍କର ମୁଗ୍ଧ ସ୍ତାବକ ପାଲଟିଗଲୁ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଜଳଖିଆ ଖାଇସାରିଲା ପରେ ସେ ଗୋଟେ ମୋଟା ଖାତା ବାହାର କଲେ ଏବଂ ମୋ' ପୁଅଝିଅଙ୍କୁ ଡାକି କହିଲେ, ''ଯା', ମା'ଠାରୁ ଦଶପଇସା ଲେଖାଏଁ ଆଣ, ଆଉ ଏ ଖାତାରେ ଦସ୍ତଖତ କର ।'' ସେଇ ସମ୍ପର୍କ ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ରହିଲା । ମୁଁ ଓଡ଼ିଶାରେ ଯେଉଁଠି ପୋଷ୍ଟିଂ ହେଲି, ଯଥା – କରଞ୍ଜିଆ,

ଫୁଲବାଣୀ, ସୁନ୍ଦରଗଡ଼, କଟକ, ସେ ନିଶ୍ଚୟ ପ୍ରତିବର୍ଷ ଆସି ଆମ ଘରେ ତିନି ଚାରି ଦିନ ରହିବେ ଓ ସେ ଅଞ୍ଚଳର ପୁରୁଣା ଦୁଷ୍ପ୍ରାପ୍ୟ ଜିନିଷ ଖୋଜିକରି ନେବେ ।

ଜୀବନରେ ମୁଁ ବହୁ ବିଶିଷ୍ଟ ଲୋକଙ୍କର ସଂସ୍ପର୍ଶରେ ଆସିଛି । କିନ୍ତୁ ଦାଶରଥି ମଉସାଙ୍କ ପରି ଜଣେ ନୀତିନିଷ୍ଠ, କର୍ମଠ, ନିରଳସ କର୍ମୀ ଜୀବନରେ ଦେଖି ନାହିଁ । ସେ ମୋ' ସ୍ତ୍ରୀଙ୍କୁ ନିଜ ଝିଅ ପରି ଭଲପାଉଥିଲେ ଏବଂ ଜୀବନର ଶେଷଭାଗରେ ଯେତେବେଳେ ତାଙ୍କ ନୂଆଗାଁ ଉଦୟପୁର (ଦଶପଲ୍ଲାରେ) 'ଦାଶରଥି ସଂଗ୍ରହାଳୟ ଟ୍ରଷ୍ଟ ବୋର୍ଡ' ଗଠିତ ହେଲା, ସେଥିରେ ମୋ' ସ୍ତ୍ରୀ କନକ ପଟ୍ଟନାୟକଙ୍କୁ ସଭ୍ୟା ରଖିଲେ । ମୁଁ ସ୍ଥାୟୀ ନିମନ୍ତ୍ରିତ ଅତିଥି ରହିଲି ଏବଂ ପ୍ରେସିଡେଣ୍ଟ୍ ରହିଲେ ଓଡ଼ିଶାର ସ୍ୱନାମଧନ୍ୟ ବରିଷ୍ଠ ପ୍ରଶାସକ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ପଟ୍ଟନାୟକ, ଆଇ.ଏ.ଏସ୍. । ନୟାଗଡ଼ର ଜିଲ୍ଲାପାଳ ଏହାର ସେକ୍ରେଟାରୀ ରହିଲେ ।

ଆମେ ଦୁହେଁ ଅନେକ ଥର ନୂଆଗାଁ ଯାଇଛୁ ଏବଂ ତାଙ୍କ ଘରେ ଖାଇଛୁ । ସେ ଯେଉଁ ସ୍ନେହରେ ବସିକରି ଖୁଆନ୍ତି ଏବଂ ତାଙ୍କ ବୋହୂଙ୍କୁ ଏଟା ଦିଅ, ସେଟା ଦିଅ କହନ୍ତି, ତା' ଏ ଜନ୍ମରେ ଭୁଲିବାର ନୁହେଁ । ମୋ' ସାନଭାଇ ଗୋପବନ୍ଧୁ (ପରେ ଆଇ.ଏ.ଏସ୍. ଏବଂ ଉତ୍ତରପ୍ରଦେଶ ସରକାରଙ୍କ ଅଧୀନରେ ଉଚ୍ଚ ପଦବୀରେ ଅଧିଷ୍ଠିତ) ତାଙ୍କର ଜଣେ ଚେଲା ହୋଇଗଲା ଏବଂ ଥରେ ତାଙ୍କ ଗାଁ'କୁ ଗଲାବେଳେ ବାଟରେ ବସ୍ ଖରାପ ହେବାରୁ ଚାଲି ଚାଲି ଯାଉଥିଲା । ସେତେବେଳେ ବର୍ଷାଦିନ । ତାଙ୍କ ଗାଁ'କୁ ଯିବାକୁ ଗୋଟେ ନାଳ ଥିଲା । ସେଥିରେ ପାଣି ଆସିବାକୁ ସେ ଏକଡ଼େ ଅନେକ ସମୟ ଯାଏଁ ଅପେକ୍ଷା କରି ବହୁତ କଷ୍ଟରେ ତାଙ୍କ ଗାଁ'ରେ ପହଞ୍ଚିଲା । ଥରେ ମୋ ଆଗରେ ସେ କଥା ବର୍ଣ୍ଣନା କରୁ କରୁ ସେ କାନ୍ଦି ପକାଇଲେ ଏବଂ ଗାଁ'କୁ କେମିତି ପୋଲଟିଏ ହୁଅନ୍ତା, ବନ୍ଦୋବସ୍ତ କରିବାକୁ ମତେ ଅନୁରୋଧ କଲେ ।

ଶେଷରେ ଦିନେ ସେ ସୁଯୋଗ ଆସିଲା । ମୋର ଗ୍ରାମ୍ୟ ଉନ୍ନୟନ ବିଭାଗରେ ସୁପରିଣ୍ଟେଣ୍ଡିଙ୍ଗ୍ ଇଞ୍ଜିନିୟର ଭାବେ ପୋଷ୍ଟିଂ ହୋଇଥାଏ । ଚିଫ୍ ଇଞ୍ଜିନିୟର ଥାଆନ୍ତି ଶ୍ରୀ ଭାସ୍କର ଚନ୍ଦ୍ର ହୋତା । ସେ ବହୁତ ମେଧାବୀ ଛାତ୍ର ଥିଲେ ଏବଂ ଦଶପଲ୍ଲା ହାଇସ୍କୁଲରୁ ଓଡ଼ିଶାରେ ପ୍ରଥମ ଦଶ ଜଣରେ ଦ୍ୱିତୀୟ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ । ଦଶପଲ୍ଲା ସ୍କୁଲର ସୁବର୍ଣ୍ଣ ଜୟନ୍ତୀ ପାଳନ କରାଯାଉଥାଏ । ମୁଖ୍ୟ ଅତିଥି ଥିଲେ ଓଡ଼ିଶାର ସଂସ୍କୃତିସମ୍ପନ୍ନ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ

ଶ୍ରୀଯୁକ୍ତ ସେକ୍ ମତଲୁବ ଅଲ୍ଲୀ । ମୁଖ୍ୟବକ୍ତା ଓଡ଼ିଶାର ସ୍ୱନାମଧନ୍ୟ ଲେଖକ ଶ୍ରୀଯୁକ୍ତ ଶାନ୍ତନୁ କୁମାର ଆଚାର୍ଯ୍ୟ । ଚିଫ୍ ଇଞ୍ଜିନିୟର ମତେ କହିଲେ, ''ମୃତ୍ୟୁଞ୍ଜୟବାବୁ, ଆପଣ ତ ମେଧାବୀ ଛାତ୍ର, ଆମ ସାଙ୍ଗରେ ଚାଲନ୍ତୁ ।''

ଉତ୍ସବ ସରିଲା ପରେ ମୁଁ ଓ ଚିଫ୍ ଇଞ୍ଜିନିୟର ମନ୍ତ୍ରୀଙ୍କ କାର୍‌ରେ ଭୁବନେଶ୍ୱର ଫେରୁଥାଉ । ରାତି ଦଶଟା ପାଖାପାଖି ହେବ । ମୁଁ ମନ୍ତ୍ରୀଙ୍କୁ ଅନୁରୋଧ କଲି, ''ସାର୍, ଦାଶରଥିବାବୁଙ୍କ ଗାଁ' ଏଇ ଦୁଇ ତିନି କି.ମି. ଭିତରେ । ଗାଁକୁ ଗୋଟିଏ ପୋଲ ହୋଇପାରୁ ନାହିଁ ବୋଲି ତାଙ୍କର ବହୁତ ଅବଶୋଷ । ଚାଲନ୍ତୁ ଟିକିଏ ଦେଖିଦେଇଯିବା ।'' ସେ ମତେ ଟିକିଏ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ । ତା'ପରେ କହିଲେ, ''କେତେବର୍ଷ ହେଲା ତାଙ୍କୁ ଜାଣିଛନ୍ତି ?'' ମୁଁ କହିଲି 'କୋଡ଼ିଏ ବର୍ଷ ହେଲା' । ରାସ୍ତା ଦେଖାହେଲା । କି ଆନନ୍ଦ ! ଦାଶରଥି ମଉସାଙ୍କର । ମୁଁ ଡିଜାଇନ୍‌ର ଓ ପ୍ଲାନିଂ ଇଞ୍ଜିନିୟର ଥିବାରୁ ସଙ୍ଗେ ସଙ୍ଗେ ମନ୍ତ୍ରୀ ମତେ ନିର୍ଦ୍ଦେଶ ଦେଲେ ଏବଂ ବଜେଟରେ ଏ ପୋଲ ପାଇଁ ଟଙ୍କା ରଖିବାକୁ ହୋତା ସାହେବଙ୍କୁ କହିଲେ, ମାତ୍ର ନିୟତିର ବିଧାନ ଅନ୍ୟପ୍ରକାର । ପୋଲ ତିଆରି ସରିଲା । ଉଦ୍‌ଘାଟନ କଲେ ମାନ୍ୟବର ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀଯୁକ୍ତ ମତଲୁବ୍ ଅଲ୍ଲୀ । ମୁଁ ସେତେବେଳକୁ ଚିଫ୍ ଇଞ୍ଜିନିୟର ହୋଇସାରିଥାଏ । ସେ ତାଙ୍କ ଭାଷଣରେ କହିଲେ, ''ରାତି ଦଶଟାବେଳେ ମୃତ୍ୟୁଞ୍ଜୟବାବୁ ମୋତେ ବାଧକରି ଏ ନାଳ ଦେଖାଇବାକୁ ଆଣିଥିଲେ । ତାଙ୍କ ପ୍ରଚେଷ୍ଟାରୁ ଆଜି ଏ ପୋଲ ସମ୍ଭବପର ହୋଇଛି; ମାତ୍ର ଜୀବନରେ ଗୋଟେ ଅବଶୋଷ ରହିଗଲା ଯେ ଆମ ପୂଜ୍ୟ ଦାଶରଥିବାବୁ ଏ ବ୍ରିଜ୍ ଉପରେ ଥରେ ଯାଇପାରିଲେ ନାହିଁ । ମତଲୁବ୍ ଅଲ୍ଲୀ ଜଣେ ଅତ୍ୟନ୍ତ ସଂସ୍କୃତିସମ୍ପନ୍ନ ଉଚ୍ଚମନା ବ୍ୟକ୍ତି ଥିଲେ ଏବଂ ଦାଶରଥିବାବୁଙ୍କର ଗୁଣମୁଗ୍ଧ ପ୍ରଶଂସକମାନଙ୍କ ମଧ୍ୟରେ ସେ ଅନ୍ୟତମ ।

ଦାଶରଥି ପଟ୍ଟନାୟକଙ୍କ ଦ୍ୱାରା ସ୍ଥାପିତ ସଂଗ୍ରହାଳୟ ଓଡ଼ିଶାର ଅନ୍ୟତମ ଅଗ୍ରଣୀ ଅନୁଷ୍ଠାନ । ଏଥିରେ ଶହ ଶହ ବିରଳ ତାଳପତ୍ର ପୋଥିଠାରୁ ଆରମ୍ଭ କରି ଚନ୍ଦ୍ରପୃଷ୍ଠର ପଥର ପର୍ଯ୍ୟନ୍ତ ରହିଛି । ମୋ' ସ୍ତ୍ରୀ ଭାରତର ଯେଉଁଠାକୁ ଯାଆନ୍ତୁ ନା କାହିଁକି, ଏ ଅନୁଷ୍ଠାନ ପାଇଁ ଖୋଜିକରି କିଛି ନା କିଛି ଜିନିଷ ଆଣିବେ । ମଝିରେ ଏ ଅନୁଷ୍ଠାନକୁ ଭୁବନେଶ୍ୱର ଉଠାଇନେବା ଲାଗି ସରକାରଙ୍କ ତରଫରୁ ପ୍ରସ୍ତାବ ଆସିଥିଲା; ମାତ୍ର ତାଙ୍କର ଏକା ଜିଦ୍ ଓଡ଼ିଶାର ପୁରପଲ୍ଲୀରେ ଲାଇବ୍ରେରୀ ହଉ । ସଂଗ୍ରହାଳୟ

ହେଉ । ସବୁ କଥା ଭୁବନେଶ୍ୱରରେ ନ ହେଉ । ଶ୍ରୀଯୁକ୍ତ ପ୍ରସନ୍ନ କୁମାର ପାଟଶାଣୀଙ୍କ ଉଦ୍ୟମରେ ଆଜି ଉଦୟପୁରରେ ଗୋଟେ ସୁନ୍ଦର ଅତିଥି ଭବନ ହୋଇ ଓଡ଼ିଶାର ମାନ୍ୟବର ରାଜ୍ୟପାଳଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଛି । ଅନେକ ଛାତ୍ରଛାତ୍ରୀ ସୁଦୂର ଦିଲ୍ଲୀରୁ ଆସି ଏଠାରେ ଅବସ୍ଥାନ କରି ତାଙ୍କର ଗବେଷଣା ଜାରି ରଖିଛନ୍ତି । ତାଙ୍କର ଜନ୍ମଦିନ ଏଠାରେ ପାଳିତ ହେବା ଅବସରରେ ଥରେ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ପଟ୍ଟନାୟକ ଆଇ.ଏ.ଏସ୍. ଭାବବିହ୍ୱଳ ହୋଇ କହିଲେ, ‘‘ମୋର ଦୁଇ ଜଣ ପିତା । ଜଣେ ମୋର ଜନ୍ମଦାତା ଶ୍ରୀଯୁକ୍ତ ବନବାସୀ ପଟ୍ଟନାୟକ ଏବଂ ଅନ୍ୟଜଣକ ହେଲେ ମୋର ମାନସ ପିତା ଶ୍ରୀଯୁକ୍ତ ଦାଶରଥି ପଟ୍ଟନାୟକ ।’’

ମୁଁ ବରହମ୍‌ପୁରରେ ଗ୍ରାମ୍ୟ ଉନ୍ନୟନ ବିଭାଗର ଅଧିକ୍ଷଣ ଯନ୍ତ୍ରୀ ଥାଏ । ଦିନେ ସକାଳେ ମୋ ଫୋନ୍ ବାଜିଉଠିଲା । ତାଙ୍କ ନାତି ଲିଟୁ (ଅଧୁନା ଅନୁଷ୍ଠାନର ସୁଯୋଗ୍ୟ ସମ୍ପାଦକ) କହିଲା, ‘‘ମଉସା, ଜେଜେ ଚାଲିଗଲେ ।’’ ବଡ଼ କରୁଣ ପରିସ୍ଥିତିରେ ସେ କୂଅକୁ ଡେଇଁପଡ଼ି ଆତ୍ମହତ୍ୟା କଲେ ।

ଦାଶରଥି ପଟ୍ଟନାୟକ ଆଜି ଆମ ଗହଣରେ ନାହାନ୍ତି ସତ୍ୟ; ମାତ୍ର ଓଡ଼ିଶାବାସୀଙ୍କ ପାଇଁ ଛାଡ଼ିଯାଇଛନ୍ତି ପୁରାତନ ଦିନର ଏକ ଅପୂର୍ବ ସଂଗ୍ରହାଳୟ । ତାଙ୍କ ଜୀବନବ୍ୟାପୀ ସାଧନାର ଫଳ । ଜୀବଦ୍ଦଶାରେ ତାଙ୍କୁ ତାଙ୍କର ଉପଯୁକ୍ତ ସମ୍ମାନ ମିଳିଲା ନାହିଁ । ତାଙ୍କୁ ପଦ୍ମଶ୍ରୀ ଉପାଧି ମିଳିଲାନି କି ତାଙ୍କ ସମ୍ମାନାର୍ଥେ ଡାକଟିକଟଟିଏ ପ୍ରକାଶ ପାଇଲାନି । ମାତ୍ର ଦାଶରଥି ପଟ୍ଟନାୟକ ମରି କରି ମଧ୍ୟ ଅମର । ପ୍ରତ୍ୟେକ ଓଡ଼ିଶାବାସୀ ଏହି ସଂଗ୍ରହାଳୟ ପରିଦର୍ଶନ କଲେ ଓ ଅନୁଷ୍ଠାନର ପୃଷ୍ଠପୋଷକ ହେଲେ, ତାଙ୍କର ସ୍ୱର୍ଗତ ଆତ୍ମା ଶାନ୍ତି ପାଇବ । ଯଥାର୍ଥରେ ସେ ଥିଲେ ଓଡ଼ିଶାର ବିନୋବା ଭାବେ ।

□□□

## ରମେଶ ଭଣ୍ଡାରୀ
## 'ମୁଁ ଯେଉଁଭଳି ଭାବେ ଦେଖିଛି'

ଏଇ ପନ୍ଦର ଦିନ ତଳେ ଟିଭି ଖବରରେ ଦେଖିଲି ରମେଶ ଭଣ୍ଡାରୀ ଚାଲିଗଲେ । ତା'ପରଦିନ ଇଂରେଜୀ କାଗଜରେ ତା'ର ସୁବିସ୍ତୃତ ବିବରଣୀ ବାହାରିଲା । ସେ ଭାରତର ପୂର୍ବତନ ବୈଦେଶିକ ସଚିବ ତଥା ଉତ୍ତରପ୍ରଦେଶର ପୂର୍ବତନ ରାଜ୍ୟପାଳ ଥିଲେ । ମୋ ସାନଭାଇ ଗୋପବନ୍ଧୁଙ୍କୁ ସେ ଅନେକ ଆଇ.ଏ.ଏସ୍.ଙ୍କ ଭିତରୁ ସେକ୍ରେଟାରୀ ରୂପେ ମନୋନୀତ କରିଥିଲେ । ସେଇ ଯେ ରାଜ୍ୟପାଳଙ୍କ ସେକ୍ରେଟାରୀ ରହିଲା, ପନ୍ଦର ବର୍ଷ ପରେ ବର୍ତ୍ତମାନର ରାଜ୍ୟପାଳ ଶ୍ରୀ. ବି.ଏଲ୍.ଯୋଶୀଙ୍କର ମଧ୍ୟ ଅଛି । ରାଜଭବନରେ ତା' ଚାକିରି କାଳରୁ ଅଧା କଟିଗଲାଣି ।

ମୁଁ ତାଙ୍କ ବିଷୟରେ ଅନେକ ମଜା ମଜା କଥା ଗୋପବନ୍ଧୁଙ୍କଠାରୁ ଶୁଣିଥିଲେ ହେଁ ତାଙ୍କୁ କେବେ ଦେଖି ନ ଥିଲି । ୧୯୯୯ ମସିହାର କଥା । ମୁଁ ସେତେବେଳକୁ ପୂର୍ତ୍ତ ବିଭାଗରେ ଚିଫ୍ ଇଞ୍ଜିନିୟର ଥାଏ । ସରକାରୀ କାମରେ ତିନି ଚାରି ଦିନ ଲାଗି ଦିଲ୍ଲୀ ଯାଇଥାଏ । ହଠାତ୍ ମୋ' ହାତରେ ଖଣ୍ଡେ ବହି ପଡ଼ିଲା, "As I saw it" ଅର୍ଥାତ୍ ଘଟଣାଗୁଡ଼ିକ ମୋ' ଦୃଷ୍ଟିକୋଣରୁ ମୁଁ ଯେପରିଭାବେ ଦେଖିଲି । ଲେଖକ– ଶ୍ରୀଯୁକ୍ତ ରମେଶ ଭଣ୍ଡାରୀ । ବହିଟିକୁ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ ପଢ଼ିଗଲି । ପଢ଼ିବାକୁ ବେଶ୍ ସୁଖପାଠ୍ୟ । ଗୋପବନ୍ଧୁ ବିଷୟରେ ଚାରି ପାଞ୍ଚଟି ଜାଗାରେ ଉଚ୍ଚକୋଟୀର ମନ୍ତବ୍ୟ ଦେଇଥା'ନ୍ତି । ହଠାତ୍ ଇଚ୍ଛା ହେଲା – କାଲି ସକାଳେ ମୋର ସେମିତି କିଛି କାମ ନାହିଁ । ତାଙ୍କ ସହିତ ସାକ୍ଷାତ କଲେ କେମିତି ହୁଅନ୍ତା ? ସଙ୍ଗେ ସଙ୍ଗେ ଗୋପବନ୍ଧୁ ସହିତ କଥା ହେଲି ଏବଂ ରମେଶ ଭଣ୍ଡାରୀଙ୍କ ସହିତ ସାକ୍ଷାତକାର କରାଇ ଦେବାଲାଗି ତାଙ୍କୁ କହିଲି । ଘଣ୍ଟାଏ ପରେ ଓଡ଼ିଶା ଭବନରୁ ମୋ ରୁମ୍‌କୁ ଫୋନ୍ ଆସିଲା, "ରମେଶ ଭଣ୍ଡାରୀ here! କାଲି ୮.୩୦ ମିନିଟ୍‌ରେ ପ୍ରାତଃଭୋଜନକୁ ମୋ ଘରକୁ ଆସ ।" ମୁଁ ବିନମ୍ରତାର ସହିତ କେବଳ ଦେଖାକରିବାକୁ ଚାହୁଁଛି ବୋଲି କହିବାରୁ କହିଲେ, ତା'ହେଲେ ୯.୩୦ ମିନିଟ୍‌ରେ ଆସ ।" ମୁଁ ଓଡ଼ିଶା ଭବନର

ଗୋଟେ ଗାଡ଼ି ନେଇ (ଫାର୍ମ ହାଉସ୍‌ରେ ସେ ରହୁଥା'ନ୍ତି) ତାଙ୍କ ଘରେ ପହଞ୍ଚିବା ପୂର୍ବରୁ ଦେଖିଲି ରାସ୍ତାରେ ତିନି ଚାରି ଜାଗାରେ 'ରମେଶ ଭଣ୍ଡାରୀ ଫାର୍ମ ହାଉସ୍' ଲେଖାଯାଇ ତୀର ଚିହ୍ନ ଦିଆଯାଇଛି ।

ସୁଦୃଶ୍ୟ ବଙ୍ଗଳା, ସୁନ୍ଦର ଗୋଲାପ ବଗିଚା । ମୁଁ ମହିଳା କର୍ମଚାରୀଙ୍କୁ ମୋ ନାଁ କହିବାରୁ ସେ ମତେ ତାଙ୍କ ପଢ଼ାଘରକୁ ନେଇଗଲା ଏବଂ କହିଲା, ''ଆପଣ ଏ ଲାଇବ୍ରେରୀରୁ ମନପସନ୍ଦ ମୁତାବକ ଗୋଟେ ବହି ନେଇ ପଢୁଥାଆନ୍ତୁ । ମୁଁ କଫି ପଠେଇ ଦେଉଛି ।'' ମୁଁ ପି.ସି.ଆଲେକ୍‌ଜାଣ୍ଡର ଲିଖିତ "In the corridors of power" ବହିଟି ବାହାର କରି ଦେଖିବାକୁ ଲାଗିଲି । ପିଲାଦିନୁ ବହି ପଢ଼ିବା ମୋର ଗୋଟେ ନିଶା, ଯାହା ଏ ପର୍ଯ୍ୟନ୍ତ ବି ଅଛି । ଠିକ୍ ୯.୩୦ ମିନିଟ୍‌ରେ ରମେଶ ଭଣ୍ଡାରୀ ଆସିଲେ । ଦୁଧ ଅଳତା ରଙ୍ଗ । ଗୋରା ତକ୍ ତକ୍ ଚେହେରା । ମୁହଁରେ ସ୍ମିତହାସ୍ୟ । "Gopabandhu says, you wanted to meet me". ମୁଁ କହିଲି 'ସାର୍' !

ତା'ପରେ ନାନା ଆଉ ନାନା କଥା ପଡ଼ିଲା । ମୁଁ ପଢ଼ିଥିବା ବହିରୁ ଅଧ୍ୟାୟ ପରେ ଅଧ୍ୟାୟ କହିଗଲି । ସେ ଟିକିଏ ଆଶ୍ଚର୍ଯ୍ୟ ହେଲାପରି କହିଲେ, "It seems you have got phenomenal memory." ମୁଁ ପଚାରିଲି, ''ସାର୍, ଯଦି କିଛି ନ ଭାବନ୍ତି, ବହିର ଗୋଟେ ଜାଗାରେ ଆପଣ ଲେଖିଛନ୍ତି, "Money has never become a problem in my life especially after my marriage with the daughter of Maharaja of Patiala." ସାର୍, ଏ ବିବାହରେ କିଏ ମଧ୍ୟସ୍ଥ ଥିଲେ ମୁଁ ଜାଣିପାରେ କି ?'' ସେ ଟିକିଏ ହସିଲେ ଏବଂ କହିଲେ, "Of course, Jawaharlal Nehru, who else ?" ସେ ବିଦେଶ ସେବା ସଂସ୍ଥା (ଆଇ.ଏଫ୍.ଏସ୍.) ରେ ପଞ୍ଚମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ଇନ୍ଦିରା ଗାନ୍ଧୀଙ୍କର ଅତ୍ୟନ୍ତ ପ୍ରିୟ ଥିଲେ ।

ତା' ପରେ ସେ ରାଜ୍ୟପାଳ ଥିବାବେଳର ଗୋଟେ ଦ୍ୱନ୍ଦ୍ୱପୂର୍ଣ୍ଣ କଥା ପଡ଼ିଲା । କଥାଟା ଏହିପରି । ସେତେବେଳେ ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ ଥାଆନ୍ତି ଶ୍ରୀ କଲ୍ୟାଣ ସିଂହ । ସେ ଥରେ ଦୁଇ ତିନି ଦିନ ଲାଗି ପ୍ରଦେଶର ଗୋଟେ ଉପାନ୍ତ ଜିଲ୍ଲାକୁ ଟୁର୍‌ରେ ଯାଇଥା'ନ୍ତି । ରାଜ୍ୟପାଳ ତାଙ୍କ ମନ୍ତ୍ରିମଣ୍ଡଳକୁ ଅସିଦ୍ଧ କରିଦେଲେ । କେବଳ ସେତିକି ନୁହେଁ, ସେ ନ ଥିବାବେଳେ ଆଉ ଜଣଙ୍କୁ ଶ୍ରୀ ଜଗଦମ୍ବିକା ପାଲଙ୍କୁ ନୂଆ ମୁଖ୍ୟମନ୍ତ୍ରୀ ରୂପେ ଶପଥପାଠ କରାଇଦେଲେ ।

ଏ ଘଟଣା ସେତେବେଳେ ସାରା ଭାରତରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ମୁଁ ପଚାରିଲି, "ସାର୍, ଆପଣ ଯଦି କିଛି ନ ଭାବନ୍ତି, ଏଟା କ'ଣ ସମ୍ବିଧାନସମ୍ମତ ହେଲା ?" ସେ ପୁଣି ମତେ ଚାହିଁ ଟିକେ ହସିଲେ ଏବଂ କହିଲେ – ସମ୍ବିଧାନ ବିଷୟରେ କ'ଣ ଜାଣିଛ ? ମୁଖ୍ୟମନ୍ତ୍ରୀ କେମିତି କାମ କରନ୍ତି ?" ମୁଁ କହିଲି, "Chief Minister functions at the pleasure of the Governor." ସେ କହିଲେ– ଠିକ୍ କହିଛ ।

"The gentleman has lost my pleasure. So I dismissed him." ଅବଶ୍ୟ ପରେ ତାଙ୍କର ଏ କାର୍ଯ୍ୟ ମାନ୍ୟବର ସୁପ୍ରିମକୋଟଙ୍କ ଦ୍ୱାରା ଅସିଦ୍ଧ ଘୋଷଣା କରାଗଲା ଏବଂ ଶ୍ରୀ କଲ୍ୟାଣ ସିଂହ ଆଉଥରେ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ନେଲେ । ପ୍ରାୟ ଘଣ୍ଟାଏ ଖଣ୍ଡେ କଥାବାର୍ତ୍ତା କରି ମୁଁ ତାଙ୍କଠାରୁ ବିଦାୟ ନେଲି । ଫେରିଲାବେଳେ ମୋତେ କହିଲେ, "ତମକୁ ଦେଖି ବହୁତ ଖୁସି ହେଲି । ମୁଁ ଭାବିଥିଲି କେବଳ ଗୋପବନ୍ଧୁ ତମ ଘରେ ବୁଦ୍ଧିଆ ବୋଲି !

ଏହାପରେ ଦୁଇ ତିନି ବର୍ଷ ବିତିଗଲା । ଅବସର ଗ୍ରହଣ କରିବା ପରେ ମୁଁ ଥରେ କେଦାରନାଥ ଦର୍ଶନରେ ଯାଇଥିଲି । ଦର୍ଶନ ପରେ ଡେରାଡୁନ୍ ଫେରି ମସୌରୀରେ ଦୁଇ ଚାରି ଦିନ ଛୁଟି କଟାଉଥିଲି । ମୋ' ମାମୁ ଝିଅ ଭଉଣୀ ଡେରାଡୁନ୍‌ରେ ରହୁଥାଏ । ତା'ର ସ୍ୱାମୀ ଲୁଲୁ (ଶ୍ରୀ ପି.କେ.ମହାନ୍ତି, ଆଇ.ଏ.ଏସ୍.) ଉତ୍ତରାଖଣ୍ଡ ସରକାରଙ୍କ ଅଧୀନରେ ଗ୍ରାମ୍ୟ ଉନ୍ନୟନ ବିଭାଗର ସେକ୍ରେଟାରୀ ଥାଏ । ଦିନେ ସକାଳୁ ମୋ ମୋବାଇଲକୁ ଗୋପବନ୍ଧୁ ପାଖରୁ ଫୋନ୍ ଆସିଲା । ସେ କହିଲା, "ନନା, ଶ୍ରୀ ରମେଶ ଭଣ୍ଡାରୀ ତୋ ସହିତ କ'ଣ ଜରୁରୀ କଥା ହେବାପାଇଁ ଚାହୁଁଛନ୍ତି ।" ମୁଁ ପ୍ରଥମେ କିଛି ବୁଝିପାରିଲି ନାହିଁ । ସେ ଯେ ମତେ ଥରକର ଦେଖାରେ ମନେରଖିଛନ୍ତି, ଏ ଧାରଣା ମୋର ନ ଥିଲା । ଅଧଘଣ୍ଟା ପରେ ମୋ' ମୋବାଇଲ୍‌କୁ ଫୋନ୍ ଆସିଲା– "Mrutyunjay ! Ramesh Bhandari here." ମୁଁ କହିଲି, "ସାର୍, What a pleasant surprise ! " ତା'ପରେ ଦୁଇ ତିନି ମିନିଟ୍ କଥାବାର୍ତ୍ତା କଲାପରେ କହିଲେ, I want you to meet me at my residence at 11.30 a.m tomorrow." ମୋର ତା'ପରଦିନ ସନ୍ଧ୍ୟାବେଳକୁ ଟ୍ରେନ୍ ରିଜର୍ଭ ଥିଲା । ମୋ ଅସୁବିଧା କଥା କହିବାରୁ ସେ କହିଲେ, "You can manage it. I will expect you at 11.30 a.m." ତା'ପରେ ଫୋନ୍ ଛାଡ଼ିଦେଲେ ।

ମୁଁ ମସୌରୀରୁ ଡେରାଡୁନ୍ ଫୋନ୍ କରି ଲୁଲୁକୁ ସବୁକଥା କହିଲି । ସେ କହିଲା, 'ଆଜି ସନ୍ଧ୍ୟାରେ ତ ଟ୍ରେନ୍ ରିଜର୍ଭେସନ୍ କରିହେବନି । ଗୋଟେ ଅନ୍ୟ ଉପାୟ ଅଛି । ଆପଣ ରାତି ୧୦ରେ ଭାଲ୍‌ଭୋ ବସ୍‌ରେ ଦିଲ୍ଲୀ ଚାଲିଯାଆନ୍ତୁ । ମୁଁ ଟିକେଟ୍ ଯୋଗାଡ଼ କରିଦେଉଛି ।'' ଅଗତ୍ୟା ମୁଁ ସେଇ ରାତିରେ ବସ୍‌ରେ ଆସି ଭୋର୍‌ରେ ଦିଲ୍ଲୀରେ ପହଞ୍ଚିଲି । ଗୋଟେ ଅଟୋରିକ୍ସା କରି ୭ଟା ବେଳକୁ ଓଡ଼ିଶା ଭବନରେ ପହଞ୍ଚିଲି । ମ୍ୟାନେଜର କୃପାନିଧି ବିଶ୍ୱାଳ ଆମ ଗାଁ'ର ପିଲା । ସେ ମୋ ଲାଗି ଗୋଟେ ରୁମ୍ ଠିକଣା କରିଦେଲା ।

ମୁଁ ନିତ୍ୟକର୍ମ ସାରି ଜଳଖିଆ ଖାଇ ୧୧ଟା ବେଳକୁ ରମେଶ ଭଣ୍ଡାରୀଙ୍କ ଘରେ ପହଞ୍ଚି ତାଙ୍କୁ ମୋ ଆସିବା କଥା ଖବର ଦେଲି । ସେ ୧୫ ମିନିଟ୍ ପରେ ଆସିଲେ ଏବଂ ମତେ ଦେଖିକରି ହସିକରି କହିଲେ, "I knew you could make it." । ମୁଁ କହିଲି, "Your excellency ! I was pleasantly surprised by your telephone call." ସେ କହିଲେ, "There is another surprise for you in the waiting." ଏହିପରି କଥାବାର୍ତ୍ତା ହେଉ ହେଉ ଜଣେ ବିଦେଶୀ ଭଦ୍ରବ୍ୟକ୍ତି (ଯାହାଙ୍କ ନାଁ ମୋର ଏବେ ଠିକ୍ ମନେପଡୁନି) ସେ ରୁମ୍‌ରେ ପ୍ରବେଶ କଲେ । ଭଣ୍ଡାରୀ ସାହେବ ତାଙ୍କୁ ଦେଖୁ ଦେଖୁ କହିଲେ, "Mr. Wang, here is your man from Odisha."

ସେତେବେଳକୁ ସାଉଥ କୋରିଆର ପୋସ୍କୋ କମ୍ପାନୀ ଓଡ଼ିଶାର ପାରାଦ୍ୱୀପଠାରେ ଏସିଆର ସର୍ବବୃହତ୍ ଲୁହା କାରଖାନା ବସାଇବା ପାଇଁ MOU ସାଇନ୍ କରିଥାଏ । ଏ ଭଦ୍ରବ୍ୟକ୍ତି ହେଉଛନ୍ତି ଦିଲ୍ଲୀରେ ଅବସ୍ଥିତ ଗୋଟେ ବଡ଼ ସାଉଥ୍ କୋରିଆନ୍ ଫାର୍ମର ପରିଚାଳନା ନିର୍ଦ୍ଦେଶକ । ସେମାନେ ଓଡ଼ିଶାରେ ତାଙ୍କ (ଚିଫ୍ ଲିଆସନ ଅଫିସର) ପୋଷ୍ଟିଂ ଲାଗି ଜଣେ ସୁଯୋଗ୍ୟ ବ୍ୟକ୍ତିଙ୍କ ସନ୍ଧାନରେ ଥିଲେ, ଯିଏକି ତାଙ୍କୁ ପ୍ରୋଜେକ୍ଟ କାମରେ ସାହାଯ୍ୟ କରିପାରିବ ଏବଂ ଓଡ଼ିଶାରେ ସବୁ ସ୍ତରରେ ତା'ର ଚିହ୍ନାପରିଚୟ ଥିବ । ସେମାନେ ଭଣ୍ଡାରୀ ସାହେବଙ୍କୁ ଦେଖାକରି ତାଙ୍କ କଥା କହିବାରୁ ସେ କହିଲେ, "There is only one man in Odisha, whom I know who can help you." ମୁଁ ଭଣ୍ଡାରୀ ସାହେବଙ୍କୁ ପଚାରିଲି, "Sir, what will be my exact duty." ସେ ଟିକିଏ ହସିଲେ । ତା'ପରେ କହିଲେ,

"To tell the truth." ସେମାନଙ୍କ ମତରେ ଆମ ଲୋକମାନେ ସବୁ କଥାରେ ଖୁବ୍ ଅଧିକା ଅତିରଞ୍ଜିତ, ମିଥ୍ୟା ଉତ୍ତର ଦିଅନ୍ତି, ଏକଥା ଶୁଣି ମୋତେ ଟିକିଏ ଖରାପ ଲାଗିଲା ।

ସେ ଆମ ଦୁହିଁଙ୍କୁ ଏକାଠି ଛାଡ଼ିଦେଇ କହିଲେ, "You both can work out the details between yourselves." ଜମି ଅଧିଗ୍ରହଣରେ ଅହେତୁକ ବିଳମ୍ବ ଲାଗି ପୋସ୍କୋ ପ୍ରକଳ୍ପ ଆଜି ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ମୋର ମନେଅଛି, ଥରେ ପାରାଦ୍ୱୀପ ଗଲାବେଳେ ଏମ୍.ଡି. ମତେ କହିଲେ, "Mr. Pattnaik. we Korians are very impatient people." ମୁଁ ତାଙ୍କୁ କହିଲି, ଓଡ଼ିଶାରେ କାମ କରିବାକୁ ହେଲେ, ଆପଣମାନଙ୍କୁ ବହୁତ ଧୈର୍ଯ୍ୟଶୀଳ ହେବାକୁ ହେବ । ଓଡ଼ିଶାର ଏକମାତ୍ର ଧୈର୍ଯ୍ୟବାନ୍ ଲୋକ, ଯେ କି ଏ ପ୍ରକଳ୍ପକୁ ଆଗେଇ ନେଇଥାଆନ୍ତେ, ସେଇ ବିଜୁ ପଟ୍ଟନାୟକ ଆଜି ଆମ ଗହଣରେ ନାହାନ୍ତି, ମୁଁ ମଧ୍ୟ ବ୍ୟକ୍ତିଗତ କାରଣରୁ ସେ କମ୍ପାନୀରେ ନାହିଁ ।

ମାତ୍ର ଆଜି ଭଣ୍ଡାରୀ ସାହେବଙ୍କର ମୃତ୍ୟୁ ଖବର ଟେଲିଭିଜନ୍‌ରେ ଦେଖିବା ପରେ ତାଙ୍କର ଉଜ୍ଜ୍ୱଳ ହସ ହସ ମୁହଁ ମୋ' ଆଖି ଆଗରେ ଭାସିଉଠିଲା ଏବଂ ମତେ ଲାଗିଲା ସେ ଯେପରି କହୁଛନ୍ତି, "Here is your man from Odisha."

ତାଙ୍କର ଆତ୍ମା ଶାନ୍ତିଲାଭ କରୁ ।

❑❑❑

# ବି. ନାଗି ରେଡ୍ଡି
# ଚନ୍ଦାମାମାର ଜନ୍ମଦାତା

କାର୍ଯ୍ୟ ଉପଲକ୍ଷେ ଓଡ଼ିଶା ସରକାରଙ୍କଦ୍ୱାରା ପ୍ରେରିତ ହୋଇ ମାଡ୍ରାସ ଯାଇଥାଏ । ମାଡ୍ରାସରେ ଛୋଟଠୁ ବଡ଼ କଲ୍ୟାଣମଣ୍ଡପ ପରିଦର୍ଶନ କରି ସେଇ ଢାଞ୍ଚାରେ କଟକ-ଭୁବନେଶ୍ୱରରେ କରିବା ମୋ ଗସ୍ତର ମୂଳ ଉଦ୍ଦେଶ୍ୟ । ସହୃଦୟ ମ୍ୟୁନିସିପାଲ୍ କମିସନରଙ୍କ ଦୟାରୁ ମତେ ସହଯୋଗ କରୁଥିବା ସୁପରିଣ୍ଟେଣ୍ଡେଣ୍ଟ୍ ଇଞ୍ଜିନିୟର କହିଲେ, ''ସବୁ ତ ହେଲା; ମାତ୍ର ବି. ନାଗି ରେଡ୍ଡିଙ୍କ କଲ୍ୟାଣ ମଣ୍ଡପ ନ ଦେଖି ଗଲେ ଆପଣଙ୍କ ଗସ୍ତ ଅପୂର୍ଣ୍ଣ ରହିଯିବ ।'' ସେ ଅନୁସାରେ ତା' ପରଦିନ ସକାଳୁ ଯିବାପାଇଁ ସ୍ଥିର ହେଲା ଏବଂ ଏହାର ପ୍ରତିଷ୍ଠାତା ନାଗି ରେଡ୍ଡିଙ୍କ ସହିତ ଦଶ ମିନିଟ୍ ସାକ୍ଷାତକାରର ବନ୍ଦୋବସ୍ତ ହେଲା ।

ସେଦିନ ସକାଳ ୯ଟାରେ ଆମେ ଦୁହେଁ ତାଙ୍କ କ୍ୟାମ୍ପସ୍‌ରେ ପହଞ୍ଚିଲାବେଳକୁ (ଘରଟା ଏତେ ବଡ଼ ଯେ ତାକୁ କ୍ୟାମ୍ପସ୍ ଛଡ଼ା ଅନ୍ୟ କିଛି କୁହାଯାଇପାରିବନି ।) ମତେ ଦୂରରୁ ଦେଖାଇଦେଲେ ଯେ, ଯେଉଁ ଲୋକଜଣକ ଗୋଲାପ ଗଛ ମୂଳ ଖୁସାଉଛି, ସେ ନାଗି ରେଡ୍ଡି । ମୁଁ ପ୍ରଥମେ ସ୍ତବ୍ଧ ହୋଇଗଲି । କାରଣ ତାଙ୍କ ବେଶଭୂଷା ଏତେ ସରଳ ଥିଲା ଯେ ମୁଁ ତାଙ୍କୁ ବଗିଚାର ମାଳୀ ବୋଲି ଭାବିଥିଲି । ଆମେ ତାଙ୍କୁ ନମସ୍କାର କରି ପରିଚୟ ଦେବାରୁ ସେ ସାମାନ୍ୟ ହସିଲେ ଏବଂ ଜଣେ ସହକାରୀକୁ ଡାକି ଆମକୁ କଲ୍ୟାଣ ମଣ୍ଡପ ବୁଲାଇ ଦେଖାଇଦେବାକୁ ନିର୍ଦ୍ଦେଶ ଦେଲେ । ମୁଁ ଏତେ ବଡ଼ ଓ ଏତେ ସୁନ୍ଦର କଲ୍ୟାଣମଣ୍ଡପ ଜୀବନରେ ଦେଖି ନ ଥିଲି ।

କେଉଁଠାରେ ଉପରୁ ଅପ୍‌ସରାମାନେ ଓହ୍ଲାଇ ଆସୁଛନ୍ତି ତ କେଉଁଠାରେ ଇନ୍ଦ୍ର ରଥରେ ଚଢ଼ି ବୁଲୁଛନ୍ତି । ଆଲୁଅ ଲଗାଇଦେଲେ ସ୍ୱର୍ଗପୁରୀର ଭ୍ରମ ସୃଷ୍ଟି ହେଉଛି । ମୋର ଯାହା ମନେପଡୁଛି, ସେତେବେଳ ସମୟରେ ଗୋଟେ ରାତି ପାଇଁ ଭଡ଼ା ଟ୪୫,୦୦୦ ଟଙ୍କା ଥିଲା, ଯାହାକି ବର୍ତ୍ତମାନ ଦୁଇ ଲକ୍ଷ ସହିତ ସମାନ । ଛଅ ମାସ, ବର୍ଷକ ଆଗରୁ ବୁକ୍ ହୋଇଥିବାର ମୁଁ ନିଜେ ରେଜିଷ୍ଟରରେ ଦେଖିଲି । ସେତେବେଳେ

ମାଡ୍ରାସରେ ଗୋଟେ ମଜା ଢଗ ଥିଲା ଯେ, ''ବଡ଼ ବଡ଼ ବାହାଘର ପାଞ୍ଜି ଦେଖି ହୁଏନା, ହୁଏ ଯେଉଁଦିନ ନାଗି ରେଡ୍ଡିଙ୍କର କଲ୍ୟାଣ ମଣ୍ଡପ ଖାଲି ଥିବ ।''

କଲ୍ୟାଣମଣ୍ଡପ ପରିଦର୍ଶନ କରିସାରି ଆମେ ତାଙ୍କୁ ଦେଖା କରିବାକୁ ତାଙ୍କ ଘରକୁ ଆସିଲୁ । ସେ ବାହାର ବାରଣ୍ଡାରେ ବସିଥିଲେ । ପିନ୍ଧିଥିଲେ ଗୋଟେ ଧଳା ଲୁଙ୍ଗି ଓ ଧଳା ଶାର୍ଟ । ସେତେବେଳକୁ ମୁଁ ଜାଣିସାରିଥିଲି ଯେ ସେ ମାଡ୍ରାସର ଅତ୍ୟନ୍ତ ଧନଶାଳୀ ଓ ପ୍ରଭାବଶାଳୀ ବ୍ୟକ୍ତିଙ୍କ ଭିତରୁ ଅନ୍ୟତମ । କଥାବାର୍ତ୍ତା ପାଇଁ ଦଶ ପନ୍ଦର ମିନିଟ୍ ସମୟ ଦେଇଥିଲେ; ମାତ୍ର କଥା ହେଉ ହେଉ ଦୁଇ ଘଣ୍ଟା କେମିତି ଚାଲିଗଲା, ଆମେ ଜାଣିପାରିଲୁ ନାହିଁ । ମୋର ସଂସ୍କୃତରେ ସାମାନ୍ୟ ପ୍ରବେଶ ଅଛି ଏବଂ ମୋର ଉଚ୍ଚାରଣ ତାଙ୍କୁ ବହୁତ ପ୍ରଭାବିତ କରିଛି ବୋଲି କହିଲେ । ଚନ୍ଦାମାମା ସେତେବେଳକୁ ସାରା ଭାରତରେ ସର୍ବଜନାଦୃତ ଶିଶୁପତ୍ରିକା । ଭାରତୀୟ ପରମ୍ପରାର ପ୍ରତୀକ ଏ ପତ୍ରିକା ପିଲାଠାରୁ ବଡ଼ ଯାଏ ପଢ଼ନ୍ତି । ମୁଁ ଏହାର ନିୟମିତ ପାଠକ ଏବଂ ଓଡ଼ିଶାର ପ୍ରତି ଘରେ ଗୋଟିଏ ପତ୍ରିକାକୁ ଅନ୍ତତଃ ପାଞ୍ଚ ଛଅ ଜଣ ପଢ଼ନ୍ତି ଶୁଣି ସେ ବହୁତ ଖୁସି ହେଲେ ।

କଥା ପ୍ରସଙ୍ଗରେ କହିଲେ, ''ଜବାହରଲାଲ ନେହରୁ ଯେତେବେଳେ ମାଡ୍ରାସ ଆସନ୍ତି, ତାଙ୍କ ପାଖକୁ ନିଶ୍ଚୟ ଆସିବେ ।'' ଇନ୍ଦିରା ଗାନ୍ଧୀ ମଧ କାର୍ଯ୍ୟବ୍ୟସ୍ତତା ସତ୍ତ୍ୱେ ଘଣ୍ଟାକ ପାଇଁ ଆସନ୍ତି । ମାତ୍ର ଏ ପିଲା (ରାଜୀବ ଗାନ୍ଧୀ ସେତେବେଳକୁ ଭାରତର ପ୍ରଧାନମନ୍ତ୍ରୀ) ଯେତେବେଳେ ଆସିବ, ଖାଲି ତରତର । ଖାଇବାକୁ କହିଲେ, ''କହିବ – ମୋର ବେଳ ନାହିଁ । ଆଉ ପଚାରିବ, "Uncle! would you like to become the chief minister Madras ? I can make necessary arrangement." ଆରେ ବାବା, "Why shall I become the chief minister at this old age"?

ବହୁତ ଦିନ ପରେ ରାଜୀବ ଗାନ୍ଧୀଙ୍କ ଅକାଳ ନିଧନ ପରେ ଇଂରାଜୀ କାଗଜରେ ଗୋଟେ ଲେଖା ବାହାରିଥିଲା, "The young man who was always in a hurry." ମୋର ମୁହଁ ଆଗରେ ବି. ନାଗି ରେଡ୍ଡିଙ୍କର ସେଇ ସରଳ ତେଜୀୟାନ୍ ମୁହଁ ଭାସିଉଠିଲା ।

ଫେରିଲାବେଳକୁ ମୋର କେତୋଟି ପିଲା ବୋଲି ପଚାରିଲେ ଏବଂ ତାଙ୍କ ନାଁ କ'ଣ ବୋଲି ପଚାରିଲେ । ମୁଁ କହିଲି – ଗୋଟିଏ ପୁଅ ଶୀତିକଣ୍ଠ, ଗୋଟିଏ ଝିଅ ନିବେଦିତା । ସେ କହିଲେ, ''ବାଃ ! ବହୁତ Aristrocratic Vedic name. ପୁରାତନ ଭାରତୀୟ ପରମ୍ପରାର ସେ ଥିଲେ ଜଣେ ଯଥାର୍ଥ ପ୍ରତିନିଧି । ସେ ତାଙ୍କ ପୁଅକୁ ଡାକି ସେ ମାସର ଦୁଇଟା ଓଡ଼ିଆ ଜହ୍ନମାମୁ ପତ୍ରିକା ଆଣିବାକୁ କହିଲେ ଏବଂ ନିଜ ହାତରେ ମୋ ପୁଅଝିଅଙ୍କୁ ଆଶୀର୍ବାଦ ସହିତ ଉପହାର ଲେଖି ଦସ୍ତଖତ କରିଦେଲେ । ଏତେଦିନ ପରେ ବି ମୋ ପୁଅଝିଅ ଏବଂ ତାଙ୍କର ପିଲାମାନେ ସେ ଅମୂଲ୍ୟ ଉପହାରକୁ ସାଇତି ରଖିଛନ୍ତି ।

ନାଗି ରେଡ୍ଡି ଆଉ ଇହଜଗତରେ ନାହାନ୍ତି । ''ସର୍ବେ ଚଳିବେ କାଳବଳେ; ଯଶ ରହିବ ମହୀତଳେ ।''

ଚନ୍ଦାମାମା ପତ୍ରିକା ଥିବା ପର୍ଯ୍ୟନ୍ତ ଭାରତର ଲକ୍ଷ ଲକ୍ଷ ଶିଶୁଙ୍କ ମନରେ ନାଗି ରେଡ୍ଡିଙ୍କ ସ୍ମୃତି ଅମର ରହିବ ।

□□□

# ଗୋଦାବରୀଶ ମହାପାତ୍ର
# ଏକ ଜ୍ୱଳନ୍ତ ଅଗ୍ନିଶିଖା

ମୁଁ ମାଟ୍ରିକ୍ୟୁଲେସନ୍ ପଢ଼ିବାବେଳେ 'ଉଠ କଙ୍କାଳ' କବିତା ପଢ଼ିବା ଠାରୁ ଗୋଦାବରୀଶ ମହାପାତ୍ରଙ୍କର ଜଣେ ସ୍ତାବକ ହୋଇଯାଇଥିଲି । ତାଙ୍କଦ୍ୱାରା ପ୍ରକାଶିତ ଏବଂ ସେତେବେଳେ ଓଡ଼ିଶାରେ ବହୁଳ ପ୍ରଚାରିତ 'ନିଆଁଖୁଣ୍ଟା' ପତ୍ରିକାର ସେ ଥିଲେ ସମ୍ପାଦକ । ସେତେବେଳେ 'ନିଆଁଖୁଣ୍ଟା'ରେ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭ କରି ମୁଖ୍ୟଯନ୍ତ୍ରୀଙ୍କ ପର୍ଯ୍ୟନ୍ତ ଯେଉଁଠାରେ ଦୁର୍ନୀତି ଗନ୍ଧ ଥାଏ, ସେ ନିର୍ଭୀକ ଭାବରେ ଲେଖା ପ୍ରକାଶ ପାଉଥାଏ । ତାଙ୍କଦ୍ୱାରା ଲିଖିତ 'ଡାମରା କାଉରେ ଡାମରା କାଉ' ମାଧ୍ୟମରେ ଓଡ଼ିଶାର ପୁରପଲ୍ଲୀରେ ଦୁର୍ନୀତି ବିରୋଧରେ ସେ ସ୍ୱର ଉତ୍ତୋଳନ କରୁଥା'ନ୍ତି ।

ମୁଁ ସେତେବେଳେ ବୁର୍ଲା ଇଞ୍ଜିନିୟରିଂ କଲେଜର ଛାତ୍ର । ଥରେ ପ୍ରବଳ ଇଚ୍ଛା ହେଲା, ଓଡ଼ିଶାର ଏହି ବରେଣ୍ୟ କବି ତଥା ନିର୍ଭୀକ ସମାଲୋଚକଙ୍କୁ ଭେଟିବାପାଇଁ । ସଙ୍ଗେ ସଙ୍ଗେ ଗୋଟେ ରିକ୍ସା ଡାକି ତାଙ୍କ ପିଠାପୁରସ୍ଥିତ ଅଫିସ୍‌କୁ ଯିବାଲାଗି ରିକ୍ସାବାଲାକୁ କହିଲି । ସେଠି ପହଞ୍ଚିଲାବେଳକୁ ଦେଖିଲି ଧୋତି ପଞ୍ଜାବି ପିନ୍ଧି ଚଷମାଲଗା ଜଣେ ଭଦ୍ରଲୋକ ଆଉଗୋଟେ ରିକ୍ସାରେ କେଉଁଆଡ଼େ ଯିବାପାଇଁ ବାହାରିଛନ୍ତି । ମୁଣ୍ଡରେ ଲମ୍ବା ବାଳ, ଭଲ କରି କୁଣ୍ଡା ହୋଇ ନାହିଁ । ମତେ ଲାଗିଲା, ଏଇ ଲୋକ ନିଶ୍ଚୟ ଗୋଦାବରୀଶବାବୁ ହୋଇଥିବେ । ମୁଁ ନମସ୍କାର କରି ତାଙ୍କୁ ମୋର ପରିଚୟ ଦେଲି ଏବଂ ମୁଁ ବୁର୍ଲା ଇଞ୍ଜିନିୟରିଂ କଲେଜରେ ଜଣେ ଛାତ୍ର ବୋଲି ପରିଚୟ ଦେଲି ।

ସେ ସଙ୍ଗେ ସଙ୍ଗେ କହିଲେ, ''କ'ଣ ଆଣିଛ ? ଦିଅ । ମୁଁ ଟିକିଏ ତରତରରେ ଅଛି ।'' ମୁଁ ପ୍ରଥମେ ହଠାତ୍ ବୁଝିପାରିଲି ନାହିଁ । ପରେ ଜାଣିଲି, ସେ ଇଞ୍ଜିନିୟରିଂ କଲେଜରେ କାଳେ କ'ଣ ଦୁର୍ନୀତି ହେଉଥିବ, ସେ ବିଷୟରେ କିଛି ତଥ୍ୟମୂଳକ ଲେଖା ମାଗୁଛନ୍ତି । ମୁଁ କହିଲି, ''ସାର୍, ସେଭଳି ଲେଖା ମୋ' ପାଖରେ କିଛି ନାହିଁ । ଆମ କଲେଜ ଖୁବ୍ ଭଲରେ ଚାଲିଛି । କେବଳ 'ଉଠ କଙ୍କାଳ'ର ଲେଖକ ଶ୍ରୀଯୁକ୍ତ ଗୋଦାବରୀଶ ମହାପାତ୍ରଙ୍କୁ ଦେଖା କରିବାକୁ ଆସିଛି । ମୋ ଘର ବଡ଼ମ୍ବା ଓ ମୁଁ ଶ୍ରୀ ଲୋକନାଥ ପଟ୍ଟନାୟକଙ୍କ ନାତି ।'' ସେ ସଙ୍ଗେ ସଙ୍ଗେ କହିଲେ,

''ଓଃ ! ବର୍ତ୍ତମାନ ବୁଝିଲି । ତମ ଜେଜେବାପା ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ସହପାଠୀ ଓ ଆମ ସମସ୍ତଙ୍କର ନମସ୍ୟ । ନଚେତ୍ ଗୋଦାବରୀଶ ମହାପାତ୍ରଙ୍କୁ ଖାଲି ଦେଖା କରିବାକୁ କିଏ କାହିଁକି ଆସନ୍ତା ?''

ତା'ପରେ ସେ ରିକ୍ସାବାଲାକୁ ବିଦା କରିଦେଲେ ଏବଂ ମତେ ତାଙ୍କ ଅଫିସ ରୁମ୍‌କୁ ଡାକିନେଲେ । ବସିଲା ପରେ 'ଉଠ କଙ୍କାଳ' କବିତାର କେତେଟା ଧାଡ଼ି ଆବୃତ୍ତି କରିବାକୁ କହିଲେ । ମୁଁ ସମୁଦାୟ କବିତା ମୂଳରୁ ଶେଷପର୍ଯ୍ୟନ୍ତ ଗାଇଦେଲି । ଓଡ଼ିଆ କବିତା ପ୍ରତି ମୋର ପିଲାଦିନୁ ପ୍ରବଳ ଆଗ୍ରହ ଥିଲା, ଏବେ ମଧ୍ୟ ଅଛି । ସେ କହିଲେ, ''ତମେ ଏତେ ସୁନ୍ଦର ଆବୃତ୍ତି କରୁଛ ଅଥଚ ଇଞ୍ଜିନିୟରିଂ କ'ଣ ପଢୁଛ ?'' ମୁଁ କହିଲି, ''ଇଞ୍ଜିନିୟରିଂ ମୋର ପେସା; ମାତ୍ର ସାହିତ୍ୟ ମୋର ନିଶା ।'' ସେ ଟିକିଏ ହସିଲେ ଏବଂ ଆଶୀର୍ବାଦ କଲେ, ''ଜୀବନରେ ଯଶସ୍ୱୀ ହୁଅ; ମାତ୍ର ଦୁର୍ନୀତିଠାରୁ ଦୂରରେ ରହିବାକୁ ସଦାବେଳେ ଚେଷ୍ଟା କରିବ ।''

ଆଜି ଗୋଦାବରୀଶ ମହାପାତ୍ର ନାହାନ୍ତି । ଦୁର୍ନୀତିର ଚେର ସମାଜର ପ୍ରତି ସ୍ତରକୁ କଳୁଷିତ କରିସାରିଲାଣି । ରାଜନେତାଙ୍କ ଠାରୁ ଆରମ୍ଭ କରି ଉଚ୍ଚ ସରକାରୀ କର୍ମଚାରୀ ପର୍ଯ୍ୟନ୍ତ କେହି ଏଥିରୁ ମୁକ୍ତ ନୁହନ୍ତି । ଏ କଥା ଭାବିଲାବେଳକୁ ଗୋଦାବରୀଶବାବୁଙ୍କ ପରି ବ୍ୟକ୍ତିଙ୍କ କଥା ସ୍ୱତଃ ମନକୁ ଆସିଯାଏ । ସେଇ ଥରକର ଦେଖା; ମାତ୍ର ସେ ସ୍ମୃତି ଏବେବି ମୋ ମନରେ ଜାଜ୍ୱଲ୍ୟମାନ ହୋଇରହିଛି, ଶେଷପର୍ଯ୍ୟନ୍ତ ରହିଥିବ ମଧ୍ୟ ।

□□□

# ନନ୍ଦକିଶୋର ରଥ
# ଶିକ୍ଷକ-ଜଗତର ଧ୍ରୁବତାରା

୧୯୫୫ ମସିହା। ମୋର ସେତେବେଳେ ନବମ ଶ୍ରେଣୀ । ଆମ ହାଇସ୍କୁଲ (ବଡ଼ାମ୍ବା ମୋହନ ସୁବୁଦ୍ଧି ହାଇସ୍କୁଲ)ର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ କୁଳମଣି ରଥ ଅବସର ନେଲେ । ସେ ଦୀର୍ଘବର୍ଷ ଧରି ପ୍ରଧାନ ଶିକ୍ଷକ ରହି ଆସିଥିଲେ । ତାଙ୍କ ବିଦାୟକାଳୀନ ସଭାରେ ଗୋଟିଏ ଗୀତ ତତ୍କାଳୀନ ସଂସ୍କୃତ ଶିକ୍ଷକ ଲେଖିଥିଲେ, ଯାହାର ଦୁଇଟି ଧାଡ଼ି ଏବେ ମଧ୍ୟ ମୋର ମନେଅଛି ।

''ବୀଣା ତାରେ ମୂରୁଛନା ଉଠଇ ନାହିଁ,
ଗଳା ମିଳାଇ ବିଦାୟ ମାଗୁଛୁ ଯେତେ
ଭଉଣୀ-ଭାଇ.... ଗଳା ମିଳାଇ ।''

ତାଙ୍କ ଜାଗାରେ ଆସିଲେ ରେଭେନ୍‌ସା କଲିଜିଏଟ୍ ସ୍କୁଲର ସୁପ୍ରସିଦ୍ଧ ଶିକ୍ଷକ ଶ୍ରୀଯୁକ୍ତ ନନ୍ଦକିଶୋର ରଥ । ସୌମ୍ୟ, ଶାନ୍ତ ଚେହେରା । ପରିଧାନରେ ଶୁଭ୍ରଧୋତି ପଞ୍ଜାବି, ଆଖିରେ ଚଷମା, ଦେଖିବାମାତ୍ରେ ଭୟ ଏବଂ ଭକ୍ତିରେ ମୁଣ୍ଡ ନଇଁପଡ଼େ । ସେତେବେଳକୁ ଆମର ପଢ଼ାଯାଉଥିବା ଆଲ୍‌ଜେବ୍ରା, ମେନସୁରେସନ୍ ଇତ୍ୟାଦି ଅଙ୍କ ବହିର ଲେଖକ ହିସାବରେ ନାରାୟଣ ପତି ଓ ନନ୍ଦକିଶୋର ରଥ ସାରା ଓଡ଼ିଶାର ଛାତ୍ରମହଲରେ ସୁପରିଚିତ ଥିଲେ । ତାଙ୍କର ପ୍ରଧାନ ଶିକ୍ଷକ ପଦକୁ ପଦୋନ୍ନତି ହେଲା; ମାତ୍ର ରେଭେନ୍ସା କଲିଜିଏଟ୍‌ରେ ଜାଗା ନ ଥିବାରୁ ଏବଂ ମୋହନ ସୁବୁଦ୍ଧି ହାଇସ୍କୁଲ 'ଏ' ଟାଇପ୍ ହାଇସ୍କୁଲ ହୋଇଥିବାରୁ ତାଙ୍କର ଆମ ସ୍କୁଲରେ ପୋଷ୍ଟିଂ ହେଲା ।

ସାର୍ ଆସିବାର ମାସକ ମଧ୍ୟରେ ଆମ ସ୍କୁଲର ସବୁକିଛି ବଦଳିଗଲା । ମିନିଟ୍ କଣ୍ଟା, ଘଣ୍ଟାକଣ୍ଟାରେ ସ୍କୁଲ ଚାଲିଲା ।

ପ୍ରାର୍ଥନା ପରେ ସେ ଯେତେବେଳେ ସ୍କୁଲ ବାରଣ୍ଡାରେ ସେ ତାଙ୍କର ହାଫ୍ ସୁ ପିନ୍ଧି ପରିଦର୍ଶନରେ ବାହାରିଯା'ନ୍ତି, ସାରା ସ୍କୁଲରେ ସମ୍ପୂର୍ଣ୍ଣ ନୀରବତା (PIN DROP SILENCE), ଛୁଞ୍ଚିଟିଏ ପଡ଼ିଗଲେ ବି ଶବ୍ଦ ଶୁଭିବ । ଥିବେ ଥିବେ ହଠାତ୍ କ୍ଲାସ୍‌ରେ ପଶିଯାଇ ପଛ ବେଞ୍ଚରେ ବସିବେ ଏବଂ ଶ୍ରେଣୀଶିକ୍ଷକ କିପରି ପଢ଼ାଉଛନ୍ତି, ଲକ୍ଷ୍ୟ କରିବେ । ସେତେବେଳେ ଅନ୍ୟାନ୍ୟ ଶିକ୍ଷକମାନଙ୍କ ମଧ୍ୟରେ ଶ୍ରୀ ଅକ୍ଷୟ ଘୋଷ, ଶ୍ରୀ ରମେଶ ଚନ୍ଦ୍ର ରାୟ ଓ ଶ୍ରୀ ରଘୁନାଥ ଷଡ଼ଙ୍ଗୀଙ୍କ ନାମ ଉଲ୍ଲେଖଯୋଗ୍ୟ ।

ମୁଁ ପ୍ରଥମ ଶ୍ରେଣୀରୁ ବରାବର ଶ୍ରେଣୀରେ ପ୍ରଥମ ହେଉଥିଲି । ମୋର ହସ୍ତାକ୍ଷର ମଧ୍ୟ ଅତ୍ୟନ୍ତ ସୁନ୍ଦର ଥିଲା । ସମ୍ଭବତଃ ସେଥିପାଇଁ ମୋ ମନରେ ଟିକିଏ ଅହଂଭାବ ଥିଲା, ସାର୍ ଆସିଲା ପରେ ଗୋଟେ ମାଡ଼ରେ ସବୁ ଭାଙ୍ଗିଗଲା । ସେ ଦିନେ ମତେ ତାଙ୍କ କୋଠରିକୁ ଡାକି କହିଲେ, ''ତୁ ଏ ବଣଜଙ୍ଗଲଘେରା ଛୋଟିଆ ସ୍କୁଲରେ ପ୍ରଥମ ହୋଇ ମନେ ମନେ ଗର୍ବ କରୁଛୁ । କେବେ ଭାବିଛୁ ସମଗ୍ର ଓଡ଼ିଶାରେ 'ପ୍ରଥମ ଦଶ ଜଣଙ୍କ' ମଧ୍ୟରେ ସ୍ଥାନ ଅଧିକାର କରିବାକୁ ହେବ ।'' ମୋର ଜେଜେବାପା ଯେ କି ଓଡ଼ିଶାର ଜଣେ ପ୍ରଖ୍ୟାତ ଶିକ୍ଷାବିତ୍ ଥିଲେ, ଥରେ ସାର୍‌ଙ୍କୁ ଘରକୁ ଡକାଇ ମୋତେ ଟିଉସନ୍ କରିବାକୁ ଅନୁରୋଧ କଲେ; ମାତ୍ର ସାର୍ ଟିକିଏ ହସିକରି କହିଲେ, ''ମୁଁ ପ୍ରାଇଭେଟ୍ ଟିଉସନ୍ କରେନି । ମାତ୍ର ମୃତ୍ୟୁଞ୍ଜୟର ପ୍ରତିଭା ଅଛି । ମୁଁ ତା'ର ଖାତା ସଂଶୋଧନ କରିଦେବି । ପରିଶ୍ରମ କଲେ ସେ ପ୍ରଥମ ଦଶ ଜଣଙ୍କ ମଧ୍ୟରେ ନିଶ୍ଚୟ ଯାଇପାରିବ ।'' ଏକଥା ଶୁଣି ପିଲାଦିନୁ ମନ ଭିତରେ ଲୁଚିଥିବା ଆଶା ଉଜ୍ଜୀବିତ ହୋଇଉଠିଲା । ସେହିଦିନଠାରୁ ଶନିବାର ଦିନ ସେ ମତେ ବିଭିନ୍ନ ବିଷୟରେ ୧୦୦ ନମ୍ବରର ପ୍ରଶ୍ନ ଦେଉଥିଲେ ଏବଂ ରବିବାର ଉପରବେଳା ତାଙ୍କ ଘରେ ଉତ୍ତର ଲେଖି ଦେଖାଇବା ଲାଗି ନିର୍ଦ୍ଦେଶ ଦେଲେ ।

ପ୍ରଥମେ ନମ୍ବର ଦେଖି ମୋର ସବୁ ଗର୍ବ ପାଣିଫୋଟକା ପରି ମିଳେଇଗଲା । କେଉଁଥିରେ ୧୦ରୁ ୪ ମିଳିଲାଣି ତ କେଉଁଥିରେ ୫, ଅତିବେଶୀରେ ୬ । ତା' ଆଗରୁ ସାର୍‌ମାନେ ମତେ ୮ କିମ୍ବା ୯ ଦେଉଥିଲେ । ସାର୍‌ଙ୍କର ପଢ଼ାଇବାର ଅସାଧାରଣ ଦକ୍ଷତା ଥିଲା । କେବଳ ସଂସ୍କୃତ ଓ ଓଡ଼ିଆକୁ ଛାଡ଼ିଦେଲେ ଅନ୍ୟ ସବୁ ବିଷୟରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ସାଧାରଣତଃ ସେ ଅଙ୍କ, ଆଲ୍‌ଜେବ୍ରା, ମେନ୍‌ସୁରେସନ୍, ସାଧାରଣବିଜ୍ଞାନ ବିଷୟ ପଢ଼ାଉଥିଲେ; ମାତ୍ର ଅନ୍ୟ ଶିକ୍ଷକଙ୍କ ଅନୁପସ୍ଥିତିରେ ସେ ଇଂଲିଶ, ଭୂଗୋଳ, ଇତିହାସ କ୍ଲାସ୍ ନେବାର ମୁଁ ଦେଖିଛି । ସେ କେବଳ ନବମ ଏବଂ ଦଶମ ଶ୍ରେଣୀ ପିଲାଙ୍କୁ ପଢ଼ାଉଥିଲେ ।

ଥରେ ସାର୍ ଆମ କ୍ଲାସ୍ ନେଉ ନେଉ ଗୋଟିଏ ଶବ୍ଦର ଓଡ଼ିଆ ଅର୍ଥ ପାଖରେ ଟିକିଏ ଅଟକିଗଲେ ଏବଂ ଆମେସବୁ Mechanical way ରେ ପଢ଼ିଚାଲିଛୁ ବୋଲି ବାରମ୍ବାର କହିଲେ । ତା'ପରେ ମତେ ଚାହିଁ କହିଲେ – କିରେ Mechanical wayର ସଠିକ୍ ଓଡ଼ିଆ କ'ଣ ହେବ ? ମୋ ମୁହଁରୁ ହଠାତ୍ ବାହାରିପଡ଼ିଲା, 'ଯନ୍ତ୍ରଚାଳିତବତ୍' । ସେ ଖୁସିରେ ହାତରେ ତାଳି ମାରିଦେଲେ ଏବଂ କହିଲେ – ଠିକ୍ କହିଛୁ । ସେ ମୁହୂର୍ତ୍ତର ଆନନ୍ଦ ବର୍ଣ୍ଣନା କରିହେବନି ।

ଆସ୍ତେ ଆସ୍ତେ ମୋର ଉତ୍ତର ଖାତାରେ ନମ୍ବର ବଢ଼ିବାକୁ ଲାଗିଲା । ଉତ୍ତରର ବିଷୟ କେଉଁଠି ଲେଖାଯିବ, ସ୍କେଚ୍ କିପରି ଲେଖାର ଡାହାଣ କଡ଼େ ରହିବ, ରଚନା ଏବଂ ପ୍ରେସି କିପରି ଲେଖାଯିବ ଗୋଟି ଗୋଟି କରି ବତାଇଦେଲେ । ଯେତେବେଳେ ତାଙ୍କ ମାର୍କିଂ ୪ରୁ ବଢ଼ି ବଢ଼ି ୮ କିମ୍ବା ୮ ଅଧାରେ ପହଞ୍ଚିଗଲା, ସେତେବେଳେ ମତେ କହିଲେ – ଆଉ ଘଣ୍ଟାଟେ ପରିଶ୍ରମ କଲେ ପ୍ରଥମ ଦଶ ଜଣଙ୍କ ମଧ୍ୟରେ ଯାଇପାରୁ । ମୋର ଦଶମ ଶ୍ରେଣୀ ଅଧାବେଳକୁ ସାର୍, ସମ୍ବଲପୁର ଜିଲ୍ଲା ସ୍କୁଲକୁ ବଦଳି ହୋଇ ଚାଲିଗଲେ । ମୋର କୈଶୋରର ସବୁ ସ୍ୱପ୍ନ ଭାଙ୍ଗିଗଲା । ସାର୍ ଗଲା ପରେ ମତେ ବହୁତ କାନ୍ଦ ଲାଗିଲା ଏବଂ କିଛିଦିନ ମୁଁ ଖାଇପାରିଲି ନାହିଁ । ତା'ପରେ ତାଙ୍କଠାରୁ ଉପଦେଶାତ୍ମକ ଖଣ୍ଡିଏ ଚିଠି ପାଇଲି । ସେଥିରେ ଲେଖିଥିଲେ, ''ତୋ ଜେଜେବାପା ଅନୁମତି ଦେଇଥିଲେ ମୁଁ ତତେ ସାଙ୍ଗରେ ସମ୍ବଲପୁର ନେଇଆସିଥାନ୍ତି । ତଥାପି ମୋର ଦୃଢ଼ ବିଶ୍ୱାସ ତୁ ପ୍ରଥମ ଦଶ ଜଣଙ୍କ ମଧ୍ୟରେ ସ୍ଥାନ ରଖିବୁ ।''

ତାଙ୍କର ଏଇ ଖଣ୍ଡିଏ ଚିଠି (ଯାହାକୁ ମୁଁ ଅମୂଲ୍ୟଧନ ହିସାବରେ ଏବେବି ସାଇତି ରଖିଛି ।) ମୋର ମନୋବଳ ବଢ଼ାଇଦେଲା । ମୁଁ ପରବର୍ତ୍ତୀ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଲକ୍ଷ୍ମଣ କରଙ୍କ ତତ୍ତ୍ୱାବଧାନରେ ପଢ଼ିବାକୁ ଲାଗିଲି । ୧୯୫୭ ମସିହା ଫେବୃଆରୀ ମାସରେ ଆଠଗଡ଼ ବିଶ୍ୱନାଥ ବିଦ୍ୟାପୀଠରେ ଆମେ ମାଟ୍ରିକ୍ ପରୀକ୍ଷା ଦେଲୁ । ସବୁଥିରେ ଯାହା ଯେମିତି ହେଲା; ମାତ୍ର ଶେଷ ଦିନ ଅଙ୍କ (ଇଚ୍ଛାଧୀନ)ର ଉଚ୍ଚତା ଓ ଦୂରତା– ଯେଉଁଟାରେ ୧୮ ନମ୍ବର ଥିଲା, ଭୁଲ୍ ହୋଇଯିବାରୁ ମୁଁ ଭାଙ୍ଗିପଡ଼ିଲି । କାରଣ ସାର୍ ସଦାବେଳେ କହୁଥିଲେ ଅଙ୍କ (ବାଧ୍ୟତାମୂଳକ) ଏବଂ (ଇଚ୍ଛାଧୀନ)ରେ ତମକୁ ଶହେରୁ ଶହେ ରଖିବାକୁ ହେବ; ମାତ୍ର ଦୈବଦୁର୍ଯୋଗକୁ ସେ ଅଙ୍କଟା ଭୁଲ୍ ହୋଇଗଲା । ମୁଁ ପ୍ରଥମ ଦଶ ଜଣଙ୍କ ମଧ୍ୟରେ ଯିବା ଆଶା ଛାଡ଼ିଦେଲି ଏବଂ ପରୀକ୍ଷା ପରେ ମନଦୁଃଖରେ ମୋ ମାମୁଘର ଢେଙ୍କାନାଳକୁ ଚାଲିଗଲି ।

କିଛି ଦିନ ପରେ ଦିନେ ସକାଳୁ ମୁଁ ଘରେ ଅଛି । ଷ୍ଟେସନ୍‌ରୁ ଆମ ସାହିର ଗୋଟିଏ ପିଲା ଦୌଡ଼ି ଦୌଡ଼ି ଆମ ଘରକୁ ଆସୁଥିବାର ଦେଖିଲି । ସେ ପାଟିକରି କହୁଥାଏ, ''ଇଜିନା (ମୋର ଡାକ ନାଁ) ତୁ ପ୍ରଥମ ଦଶ ଜଣଙ୍କ ମଧ୍ୟରେ ଯାଇଛୁ । ସମାଜରେ ବାହାରିଛି ।'' ପ୍ରଥମେ କିଛି ବୁଝିପାରିଲି ନାହିଁ । ପରେ କାଗଜଟା ନେଇ ପଢ଼ିଲି । ପ୍ରଥମ ପୃଷ୍ଠା ଭିତରେ ଦଶ ଜଣଙ୍କ ନାଁ' ବାହାରିଥିଲା । ପ୍ରଥମ ହୋଇଥିଲେ ଯାଜପୁର କବୀରପୁର ହାଇସ୍କୁଲର ଛାତ୍ର ଶ୍ରୀ ସହଦେବ ସାହୁ (ପରେ ଓଡ଼ିଶାର ଚିଫ୍ ସେକ୍ରେଟେରୀ), ଦ୍ୱିତୀୟ ମୋର ପିଲାଦିନର ସହପାଠୀ ଶ୍ରୀ ଅମୂଲ୍ୟ ରତ୍ନ ନନ୍ଦ (ପରେ ଭାରତ ସରକାରଙ୍କ ସ୍ୱାସ୍ଥ୍ୟ ବିଭାଗର ସେକ୍ରେଟାରୀ) । ମୁଁ ଏବଂ ସାର୍‌ଙ୍କର ପ୍ରିୟ ସ୍କୁଲ

ରେଭେନ୍‌ସା କଲିଜିଏଟ୍‌ର ଛାତ୍ର ଶ୍ରୀ ସୁବୀର ରାଓ (ବର୍ତ୍ତମାନ କାନାଡ଼ାରେ ବସବାସ କରୁଛନ୍ତି), ଯୁଗ୍ମ ନବମ ସ୍ଥାନ ଅଧିକାର କରିଥାଉ, ଯେଉଁଟାକି ସାର୍‌ଙ୍କୁ ଅତ୍ୟନ୍ତ ଆନନ୍ଦ ଦେଇଥିଲା । ତା'ପରେ ଜୀବନରେ ଅନେକ କୃତିତ୍ୱ ଓ ସମ୍ମାନ ମିଳିଛି; ମାତ୍ର ସେ ଦିନର ଆନନ୍ଦ ଅବିସ୍ମରଣୀୟ । ମତେ ଲାଗିଲା ସାର୍ ଯେପରି କାନ ପାଖରେ କହୁଛନ୍ତି, 'ମୁଁ ଜାଣିଥିଲି ତୁ ନିଶ୍ଚୟ ପାଇବୁ ।'

ଥରକର କଥା । ମୁଁ ସେତେବେଳେ ଆସିଷ୍ଟାଣ୍ଟ୍ ଇଞ୍ଜିନିୟର ଥାଏ । ଦେଖିଲି ସାର୍ ଗୋଟିଏ ରିକ୍ସାରେ ବକ୍ସିବଜାର ରୋଡ୍‌ରେ ଆସୁଛନ୍ତି । ମୁଁ ଗାଡ଼ିରେ କୁଆଡ଼େ ଯାଉଥିଲି । ସଙ୍ଗେ ସଙ୍ଗେ ଗାଡ଼ିରୁ ଡେଇଁପଡ଼ି ରିକ୍ସାକୁ ଅଟକାଇ ତାଙ୍କ ପାଦ ତଳେ ମୁଣ୍ଡ ରଖି ପ୍ରଣାମ କଲି । ସେ ସଙ୍ଗେ ସଙ୍ଗେ କହିଲେ, "Do not create traffic Jam." ସତକୁ ସତ ମୁଁ ଦେଖିବାବେଳକୁ ଆଉ ଆମ ପଛରେ ଗାଡ଼ି, ମଟର, ରିକ୍ସା ଜମା ହୋଇଯାଇଥାଏ । ତା' ପରେ ହସିଦେଇ ଚାଲିଗଲେ ।

କେତେଦିନ ପରେ ଥରେ ମତେ କାହିଁକି ବହୁତ ଇଚ୍ଛା ହେଲା ସାର୍‌ଙ୍କୁ ଦେଖିବାପାଇଁ । ସଙ୍ଗେ ସଙ୍ଗେ ମୋର ଜଣେ ସମ୍ପର୍କୀୟ ଭାଇ ବୁଦ୍ଧା (ଶ୍ରୀ ବୈଷ୍ଣବ ଚରଣ ଦାସ ରାଜନୀତି ବିଜ୍ଞାନର ଅଧ୍ୟାପକ)ଙ୍କୁ ନେଇ ସାର୍‌ଙ୍କ ଛତ୍ରବଜାର ଘରକୁ ଗଲି । ସନ୍ଧ୍ୟାବେଳେ ସେଠି ଶୁଣିଲି ଯେ ଗାଧୁଆ ଘରେ ପଡ଼ିଯାଇ ସାର୍‌ଙ୍କ ଗୋଡ଼ର ହାଡ଼ ଭାଙ୍ଗିଯାଇଛି । ସେ ବର୍ତ୍ତମାନ ତାଙ୍କ ବଡ଼ଝିଅ ନିରୁନାନୀଙ୍କ ଘରେ ରହୁଛନ୍ତି । ନିରୁନାନୀଙ୍କ ସ୍ୱାମୀ ପ୍ରସିଦ୍ଧ ଓଡ଼ିଆ ଲେଖକ ଶ୍ରୀଯୁକ୍ତ ଶାନ୍ତନୁ କୁମାର ଆଚାର୍ଯ୍ୟ । ତା'ପରଦିନ ଜିପ୍ ନେଇ ତାଙ୍କ ଘରକୁ ଗଲି । ସେଠି ଜାଣିଲି ଯେ ଅପରେସନ୍ ଲାଗି ତାଙ୍କୁ କ୍ୟାପିଟାଲ୍ ଡାକ୍ତରଖାନାକୁ ନିଆଯାଇଛି । ମୁଁ ସେଠୁ ସିଧା ଡାକ୍ତରଖାନାକୁ ଗଲି, ସାର୍ ଶୋଇଥା'ନ୍ତି । ମୁହଁରେ ସେଇ ଚିରାଚରିତ ସ୍ମିତହାସ୍ୟ । ମୁଁ ଗୋଡ଼ତଳେ ପ୍ରଣାମ କଲାପରେ ମତେ ବସିବାକୁ କହିଲେ । ତାଙ୍କ ପିଲାମାନଙ୍କ ଭିତରେ ଆଲୋଚନା ଚାଲିଥାଏ, କିଏ ଅପରେସନ୍ କରିବ । ସେତେବେଳେ ସ୍ଥିର ହେଲା ଶ୍ରୀରାମଚନ୍ଦ୍ର ମେଡିକାଲ କଲେଜର ଅସ୍ଥିଶଲ୍ୟ ବିଭାଗର ମୁଖ୍ୟ ପ୍ରଫେସର ତେଜେଶ୍ୱର ରାଓ, F.R.C.S. ଅପରସେନ୍ କଲେ ଭଲ ହୁଅନ୍ତା; ମାତ୍ର ତାଙ୍କୁ ଠିକ୍ ସମୟରେ କିଏ ଆଣିବ । ମୁଁ ସଙ୍ଗେ ସଙ୍ଗେ ଏ ଦାୟିତ୍ୱ ନିଜ ମୁଣ୍ଡ ଉପରକୁ ନେଲି ଏବଂ ଅପରେସନ୍ ଦିନ ସକାଳ ୯ଟା ସୁଦ୍ଧା ତାଙ୍କୁ ଧରି କ୍ୟାପିଟାଲ୍ ହସ୍‌ପିଟାଲରେ ପହଞ୍ଚିବି ବୋଲି ନିର୍ଭର ପ୍ରତିଶ୍ରୁତି ଦେଲି । ସାର୍‌ଙ୍କର ମୋ' ଉପରେ ପ୍ରଗାଢ଼ ବିଶ୍ୱାସ ଥିଲା । ସେ କହିଲେ – ମୁଁ ଜାଣିଛି ତୁ ପାରିବୁ ।

ନିର୍ଦ୍ଧାରିତ ଦିନ ମୁଁ ପ୍ରଫେସର ତେଜେଶ୍ୱର ରାଓଙ୍କ ଘରେ ଗାଡ଼ି ନେଇ ପହଞ୍ଚିଲି । ସେତେବେଳକୁ ମଧ୍ୟ ତାଙ୍କ ଚାରିପାଖେ ରୋଗୀମାନଙ୍କ ଭିଡ଼ । ସେ ମୋର

ଶ୍ୱଶୁର ଶ୍ରୀଯୁକ୍ତ ରାଜକିଶୋର ଦାସ, ପିଏଚ୍.ଡି. (ଲଣ୍ଡନ)ଙ୍କର ପ୍ରିୟ ଛାତ୍ର ଥିବାରୁ ମତେ ବହୁତ ସ୍ନେହ କରୁଥିଲେ । ମୁଁ ଦୁଇ ତିନି ଥର ତାଙ୍କୁ ଡେରି ହୋଇଯିବ କହି ଶେଷକୁ ଏକରକମ ଟାଣିଆଣି ଗାଡ଼ିରେ ବସାଇଲି । ସେ ଖାଲି କହିଲେ, "ସାର୍‌ଙ୍କୁ ବହୁତ ଭଲପାଅନା ?" ମୁଁ କିଛି କହିଲିନି ଏବଂ ଡ୍ରାଇଭରକୁ ଟିକିଏ ଶୀଘ୍ର ଯିବା ଲାଗି ନିର୍ଦ୍ଦେଶ ଦେଲି; ମାତ୍ର ଦୁର୍ଯୋଗକୁ ସେଦିନ କଟକ-ଭୁବନେଶ୍ୱର ରାସ୍ତାରେ ଭୀଷଣ କୁହୁଡ଼ି ପଡ଼ିଥାଏ । ଡ୍ରାଇଭରର ଶତଚେଷ୍ଟା ସତ୍ତ୍ୱେ ଗାଡ଼ି ଜୋର୍‌ରେ ଯାଇପାରୁ ନ ଥାଏ । ଅବଶେଷରେ ଦଶ ପନ୍ଦର ମିନିଟ୍ ବିଳମ୍ବରେ ଆମେ ତାଙ୍କ ରୁମ୍‌ରେ ପହଞ୍ଚିଲୁ । କବାଟ ଖୋଲିଲାମାତ୍ରେ ସାର୍, ମତେ ଦେଖି କହିଲେ, "ଏଇରେ ଇଜିନା (ମୋର ଡାକନାମ) ଆସିଲାଣି । I know, he cannot be late." ଗୋଟେ ସାମାନ୍ୟ ଛାତ୍ର ଉପରେ ଶିକ୍ଷକଙ୍କର କି ପ୍ରଗାଢ଼ ବିଶ୍ୱାସ !

ଅପରେସନ୍ ଠିକ୍ ସମୟରେ ହେଲା ଏବଂ ସଫଳ ମଧ୍ୟ ହେଲା । ତେଜେଶ୍ୱର ରାଓ କହିଲେ, "ମାସକ ଭିତରେ ପ୍ଲାଷ୍ଟର୍ ଖୋଲାହେବ ଏବଂ ସାର୍ ସମ୍ପୂର୍ଣ୍ଣ ସୁସ୍ଥ ହୋଇଯିବେ ।" ତା'ର ଦୁଇ ଦିନ ପରେ ହଦଗଡ଼ରେ ନବୋଦୟ ବିଦ୍ୟାଳୟର ଛାତ ପଡ଼ିବାକୁ ଥିବାରୁ ମୁଁ ସାର୍‌ଙ୍କଠାରୁ ବିଦାୟ ନେଇ ଆସିଲି ଏବଂ ଫେରିବା ପରେ ସଙ୍ଗେ ସଙ୍ଗେ ଆସି ତାଙ୍କୁ ଦେଖାକରିବି ବୋଲି ପ୍ରତିଶ୍ରୁତି ଦେଲି । ମାତ୍ର କିଏ ଜାଣିଥିଲା ଏଟା ମୋର ତାଙ୍କ ସହିତ ଶେଷଦେଖା ବୋଲି । ମୁଁ ହଦଗଡ଼ରେ ପହଞ୍ଚିବାର ଦିନକ ପରେ ସକାଳେ ରେଡ଼ିଓରୁ ସାର୍‌ଙ୍କର ପରଲୋକ ଗମନ ସମ୍ବାଦ ଶୁଣିଲି । ଗୋଡ଼ ଅପରେସନ୍ ସଫଳ ହୋଇଥିଲେ ମଧ୍ୟ ହୃଦ୍‌ଘାତ ହେବାରୁ ତାଙ୍କର ମୃତ୍ୟୁ ହେଲା ।

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି
ନୈନଂ ଦହତି ପାବକଃ
ନ ଚୈନଂ କ୍ଲେଦୟନ୍ତ୍ୟାପୋ
ନ ଶୋଷୟତି ମାରୁତଃ ।

ସାର୍‌ଙ୍କ ମୃତ୍ୟୁରେ ମୋ ଜୀବନରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହେଲା, ତା' କେବେବି ପୂରଣ ହେବ ନାହିଁ । ଓଡ଼ିଶା ମାତା ତା'ର ଜଣେ ଶ୍ରେଷ୍ଠ ଶିକ୍ଷାବିତ୍‌ଙ୍କୁ ହରାଇଲା । ଏବେ ମଧ୍ୟ ମୋ କାନରେ ବେଳେ ବେଳେ ବାଜିଯାଏ, "ଏଇରେ, ଇଜିନା ଆସିଲାଣି ।" I know, he cannot be late." ତାଙ୍କର ଅମର ଆତ୍ମା ଶାନ୍ତିଲାଭ କରୁ– ଭଗବାନ୍‌ଙ୍କ ପାଖରେ ଏତିକି ପ୍ରାର୍ଥନା ।



# ସୟଦ ମମତାଜ ଅଲ୍ଲୀ
# ଚିଫ୍ ଇଞ୍ଜିନିୟରଙ୍କ ଚିଫ୍ ଇଞ୍ଜିନିୟର

ମୁଁ ଚାକିରି କରିବାର ଅନେକ ଦିନ ଯାଏଁ ଶ୍ରୀ ମମତାଜ ଅଲ୍ଲୀଙ୍କୁ ଦେଖି ନ ଥିଲି । ଆମେ ସବୁ ଶ୍ରୀ ଏ. ସି. ପାଢ଼ୀଙ୍କ ଅଧୀନରେ ସୁନାବେଡ଼ା ମିଗ୍ ପ୍ରୋଜେକ୍ଟରେ କାମ କରୁଥିଲୁ ଏବଂ ଶ୍ରୀଯୁକ୍ତ ଅଲ୍ଲୀ ପୂର୍ତ୍ତ ବିଭାଗର ଚିଫ୍ ଇଞ୍ଜିନିୟର ଥିଲେ । ମୁଁ ବୌଦରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ହୋଇ ଯୋଗଦେବାର ଛଅ ମାସ ପରେ ମମତାଜ ଅଲ୍ଲୀଙ୍କର ବଲାଙ୍ଗୀର ଗସ୍ତ ପଡ଼ିଲା । ସେତେବେଳକୁ ବଲାଙ୍ଗୀରକୁ ଭୁବନେଶ୍ୱରରୁ ସବୁଦିନିଆ ରାସ୍ତା ନ ଥାଏ । ବୌଦରୁ ସୋନପୁର ମଧ୍ୟରେ ଚାରିଟି ପୋଲ କାମ ଚାଲୁଥାଏ । ସୋନପୁର ପାଖରେ ତେଲ ନଦୀ ଉପରେ ମଧ୍ୟ ପୋଲ କାମ ତ ସରି ନ ଥାଏ । ସବୁଠାରେ ଖରାଦିନେ ଅସ୍ଥାୟୀ କାଠପୋଲ ହୋଇ ରାସ୍ତା ତିଆରି ହୁଏ ଏବଂ ବର୍ଷାଋତୁ ଆସିବା ପରେ ଭଙ୍ଗାଯାଏ । ବ୍ରିଟିଶ୍ ଅମଳରୁ ଏ କାମ ଚାଲିଆସିଥିଲା ।

ଟୁର୍ ପ୍ରୋଗ୍ରାମ୍ ପାଇବା ପରେ ମୋର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଶ୍ରୀ ଲଳିତ ମୋହନ ପାତ୍ର ଫୁଲବାଣୀରୁ ଆସି ବାଣୀଗୋଛା ସୀମା ପାଖରୁ ସୋନପୁର ସୀମା ପର୍ଯ୍ୟନ୍ତ କ'ଣ କ'ଣ କାମ କରାଯିବ, ତା'ର ଗୋଟେ ପ୍ରୋଗ୍ରାମ୍ କରିଦେଲେ । ଏପରିକି ଅରଣ୍ୟଗଡ଼ ଡାକବଙ୍ଗଳାରେ ସେ ଚା' ଖାଇବାବେଳେ କ'ଣ କ'ଣ ଖାଦ୍ୟ ହେବ, ଟିକିନିଖି ନିର୍ଦ୍ଦେଶ ଦେଲେ । ମୁଁ ପ୍ରୋଜେକ୍ଟରୁ ଆସିଥିବାରୁ ଏସବୁ ମୋ' ପାଇଁ ସମ୍ପୂର୍ଣ୍ଣ ନୂଆ ଲାଗୁଥାଏ । ଅବଶେଷରେ ଦଶପଲ୍ଲାର ବାଣୀଗୋଛାର ଘଞ୍ଚ ଜଙ୍ଗଲରେ ବରହମ୍ପୁରର ସୁପରିଣ୍ଟେଣ୍ଡେଣ୍ଟ୍ ଇଞ୍ଜିନିୟର ଶ୍ରୀ ଶ୍ୟାମସୁନ୍ଦର ପଣ୍ଡା, ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ପାତ୍ରସାହେବ ଏବଂ ମୁଁ ତାଙ୍କୁ ସ୍ୱାଗତ କରିବାକୁ ଅପେକ୍ଷା କଲୁ । ନିର୍ଦ୍ଧାରିତ ସମୟର ଦୁଇ ତିନି ଘଣ୍ଟା ବିଳମ୍ବରେ ସେ ଭୁବନେଶ୍ୱରରୁ ଆସି ପହଞ୍ଚିଲେ । ତାଙ୍କ ପଛେ ପଛେ ପାଞ୍ଚ ଛଅଟା ଗାଡ଼ି ଆସିଥାଏ । ଗାଡ଼ିରୁ ଓହ୍ଲାଇ ସମସ୍ତଙ୍କ ସହିତ ହସି ହସି ହ୍ୟାଣ୍ଡ୍‌ସେକ୍ କଲେ । ମୋ' ସହିତ ହ୍ୟାଣ୍ଡ୍‌ସେକ୍ କଲାବେଳେ ସୁପରିଣ୍ଟେଣ୍ଡେଣ୍ଟ୍ ଇଞ୍ଜିନିୟର ଚିହ୍ନାଇ ଦେବାରୁ କହିଲେ, ''ଓ ! ଏଇ ତା'ହେଲେ ମୃତ୍ୟୁଞ୍ଜୟ ପଟ୍ଟନାୟକ, Blue eyed boy of A.C.Padhi. But he has to learn a lot of things in P.W.D.।'' ପଣ୍ଡାସାହେବ କହିଲେ, ''ସାର୍, ସେ ନୂଆ ପିଲା । ଶିଖିବାକୁ ଟିକେ ସମୟ ଲାଗିବ ।''

ତାଙ୍କର କାମ କରିବାର ଶୈଳୀ ଅନ୍ୟମାନଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ସେ ବଲାଙ୍ଗୀର ଗଲାବେଳେ ସୋନପୁରଠାରେ ହଠାତ୍ କହିଲେ, ''ଲଳିତ ! ମୁଁ ଫେରିଲାବେଳେ ଟିକରପଡ଼ା ଶୀତଳପାଣି ଡାକବଙ୍ଗଳାରେ ଚା' ଖାଇକରି ଯିବି ।'' ମୁଁ ଟିକିଏ ଡରିଗଲି । କାରଣ ହାତରେ ଜମା ଚାରି ପାଞ୍ଚ ଦିନ ସମୟ ଥାଏ । ବଙ୍ଗଳାକୁ ପୂରା ଟିପ୍‌ଟପ୍ କରିବାକୁ ହବ । ନୂଆ ପରଦା, ଚାଦର ସବୁ ଲାଗିବ । ତିରିଶ ଚାଳିଶ କି.ମି. ରାସ୍ତାର ଖାଲ ମରାମତି ହୋଇ ଦୁଇ କଡ଼ରେ ନାଳି ମୋରମ୍ ବିଛା ହେବ । ଦୁଇ କଡ଼ର ଗଛମାନଙ୍କରେ ଗେରୁ ଓ ଧଳାରଙ୍ଗ ଲାଗିବ । ସେତେବେଳେ ଚିଫ୍ ଇଞ୍ଜିନିୟରଙ୍କ ଟୁର୍ ପାଇଁ ରାସ୍ତାଘାଟ ଯେଉଁଳି ପ୍ରସ୍ତୁତ କରାଯାଉଥିଲା, ଆଜିକାଲିର ନୂତନ ପିଢ଼ିର ଇଞ୍ଜିନିୟରମାନେ ତା' କଳ୍ପନା କରିପାରିବେ ନାହିଁ । ରାତିଦିନ କାମ ଲାଗିଲା । ଅବଶେଷରେ ସେ ବଲାଙ୍ଗୀରରୁ ଫେରି ଶୀତଳପାଣି ବଙ୍ଗଳାରେ ଚା' ଖାଇଲେ ଏବଂ ଡାକବଙ୍ଗଳାର ଆୟୋଜନ ଦେଖି ସୁନ୍ଦର ଆୟୋଜନ ବୋଲି ମତେ ଧନ୍ୟବାଦ ଦେଲେ । ପରେ ଜାଣିଲି ଯେ ସେ ରାସ୍ତା ଏବଂ ବଙ୍ଗଳାର ଦୁରବସ୍ଥା ବିଷୟରେ ଖୋଦ୍ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆର୍.ଏନ୍. ସିଂହଦେଓ ଅନ୍ୟ ରାଜାଙ୍କ ଠାରୁ ଶୁଣି ତାଙ୍କୁ କହିଥିଲେ । ଶିକାର କରିବା ଉଦ୍ଦେଶ୍ୟରେ ରାଜାମାନେ ଅନେକ ସମୟରେ ଆସି ସେ ଡାକବଙ୍ଗଳାରେ ରହୁଥିଲେ, କାରଣ ସେ ଜାଗାଟା ଟିକରପଡ଼ା ସଂରକ୍ଷିତ ଜଙ୍ଗଲ ଭିତରେ ଥିଲା । ଯାହାହେଉ ତାଙ୍କର ଏଇ ପ୍ରଥମ ଭ୍ରମଣରେ ମୁଁ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲି ।

କିଛିଦିନ ପରେ ଗୋଟେ ଦୁର୍ଭାଗ୍ୟପୂର୍ଣ୍ଣ ଘଟଣାକ୍ରମେ ମୁଁ ମମତାଜ୍ ଅଲ୍ଲୀଙ୍କର ବିଷ ଦୃଷ୍ଟିରେ ପଡ଼ିଲି । ତାଙ୍କର କିପରି ଧାରଣା ହେଲା— ଏତେ ଅଳ୍ପଦିନ ପି.ଡବ୍ଲ୍ୟୁ.ଡି.ରେ ରହି ମୁଁ ଅତି ଶକ୍ତିଶାଳୀ ହେବାକୁ ଯାଉଛି । ତେଣୁ ସେ ମୋତେ ବଉଦରୁ ଚିଫ୍ ଇଞ୍ଜିନିୟର ଅଫିସ୍‌କୁ Leave Reserve Asst. Engineer କରି ବଦଳି କରିଦେଲେ । ଏଟା ସେତେବେଳେ ସବୁଠାରୁ ଖରାପ ପୋଷ୍ଟିଂ ଥିଲା ଏବଂ ସେ ପରୀକ୍ଷା କରୁଥିଲେ ଯେ ମୁଁ କେଉଁଆଡୁ ଚାପ ପକାଇ ସବ୍‌ଡିଭିଜନ୍ ଯିବାକୁ ଚେଷ୍ଟା କରିବି । ମାସ ପରେ ମାସ ବିତିଗଲା; ମାତ୍ର ଚାପ ପକାଇବା ତ ଦୂରର କଥା, ମୋ' ଆଡୁ ସାମାନ୍ୟତମ ଚେଷ୍ଟା ହେଲାନି ତାଙ୍କୁ ଫୋନ୍‌ରେ ଅନୁରୋଧ କରିବାପାଇଁ; ଯଦିଓ ମୋର ଶ୍ୱଶୁର (ସ୍ୱର୍ଗତ ରାଜକିଶୋର ଦାସ) ତାଙ୍କର ବହୁତ ଚିହ୍ନା ଥିଲେ । ଯୋଗକୁ ସେତେବେଳକୁ ସେ ମୋ' ପାଇଁ ଗୋଟେ ଫିଏଟ୍ କାର୍ (ORU-744) କିଣି ଦେଇଥା'ନ୍ତି । ମୁଁ ସେଥିରେ କଟକରୁ ଯିବାଆସିବା କରୁଥାଏ । ସେତେବେଳେ ସାରା ଓଡ଼ିଶାରେ ଦୁଇ ତିନି ଜଣ ଆସିଷ୍ଟାଣ୍ଟ ଇଞ୍ଜିନିୟରଙ୍କର ନିଜର କାର୍ ଥାଏ । କବିବାବୁଙ୍କର (କବିପ୍ରସାଦ ମହାନ୍ତି ସେତେବେଳେ ବଲାଙ୍ଗୀରରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ ଥାଆନ୍ତି)

ଗୋଟେ କଳା ଫିଆଟ୍ କାର୍ ଥିଲା । ଅଲ୍ଲୀ ସାହେବଙ୍କ କାର୍‌ର ନମ୍ବର ଥିଲା ORU-7 । ମୁଁ ମୋ ଗାଡ଼ିକୁ ତାଙ୍କ ଗାଡ଼ି ପାଖରେ ରଖେ ଏବଂ ସନ୍ଧ୍ୟାବେଳେ ସେ ଅଫିସ ଛାଡ଼ିବାବେଳେ ତାଙ୍କୁ ନମସ୍କାର କରେ । ସେ ଟିକିଏ ହସିକରି କହନ୍ତି, ‘‘ମୃତ୍ୟୁଞ୍ଜୟ ! Are you happy?" ‘ମୁଁ ବହୁତ ଖୁସିରେ ଅଛି’ ବୋଲି କହେ । ମତେ ଲାଗେ ସେ ମୋ କଥାକୁ ଅବିଶ୍ୱାସ କରୁଛନ୍ତି ।

ଏମିତି ଛଅ ମାସ ଚାଲିଗଲା । ଆସିଷ୍ଟାଣ୍ଟ୍ ଇଞ୍ଜିନିୟରମାନଙ୍କର ବଦଳି ହେବା ସମୟ ଆସିଗଲା । ତାଙ୍କ ଉପରେ ରାଜନୀତିକ ଏବଂ ଅଣରାଜନୀତିକ ଚାରିଆଡୁ ଚାପ ପଡ଼ିବାକୁ ଲାଗିଲା; ମାତ୍ର ମୁଁ ନିର୍ବିକାର । ମୁଁ ନିଶ୍ଚିତ ଥିଲି ଯେ ଦିନେ ନା ଦିନେ ଅଲ୍ଲୀ ସାହେବ ତାଙ୍କ ଭୁଲ୍ ବୁଝିପାରିବେ ଏବଂ ମୋ’ ପ୍ରତି ଯେଉଁ ଅନ୍ୟାୟ ହୋଇଛି ତା’ର ପ୍ରତିକାର କରିବେ । କେତେଦିନ ପରେ ଥରେ କଟକ ଓ.ଏମ୍.ପି. ଡାକବଙ୍ଗଳାରେ ତାଙ୍କ ସହିତ ଦେଖାହେଲା । ସେତେବେଳେ ଶ୍ରୀ ନିମାଇଁ ଚରଣ ପାଣି କଟକର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥା’ନ୍ତି । ସେ ଅତ୍ୟନ୍ତ ଭଦ୍ରଲୋକ ଏବଂ ମତେ ବହୁତ ସ୍ନେହ କରୁଥିଲେ । ଅଲ୍ଲୀ ସାହେବ ମତେ ଦେଖାଇ ପାଣି ସାହେବଙ୍କୁ ପଚାରିଲେ, ‘‘ଏ ପିଲା ବିଷୟରେ ତମର ମତ କ’ଣ ?’’ ସେ କହିଲେ, ‘‘ସାର୍, Mrutyunjay is a jewel of the department."

ସେ ଟିକିଏ ହସିଲେ ଏବଂ କହିଲେ, ‘‘ୟା’କୁ ରାଜୁବାବୁ (ମୋ ଶ୍ୱଶୁର ଏବଂ ତାଙ୍କର ବନ୍ଧୁ) ଗୋଟେ ଗାଡ଼ି ଦେଇଛନ୍ତି, ସେ ବହୁତ ବୁଲୁଛି । ତାକୁ ଏମିତି ଗୋଟେ ସବ୍‌ଡିଭିଜନ ଦେବି ଯେ ସେ ନିଶ୍ୱାସ ମାରିବାକୁ ବେଳ ପାଇବନି ।’’ ସତକୁ ସତ ସେଥର ତାଲିକାରେ ସେ ଓଡ଼ିଶାର ସବୁଠାରୁ ଅନ୍ୟତମ ବଡ଼ ସୁନ୍ଦରଗଡ଼ ସବ୍‌ଡିଭିଜନକୁ ମୋର ପୋଷ୍ଟିଂ କରିଦେଲେ । ମତେ ଡାକିକରି କହିଲେ, ମୁଁ ତମ ଉପରେ ବହୁତ ଖୁସି । ମୁଁ ସୁନ୍ଦରଗଡ଼ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥିବାବେଳେ ମଧ୍ୟପ୍ରଦେଶର ସୀମାରେ ‘ବଡ଼କେଲୋ’ ପୋଲଟା ଆରମ୍ଭ କରିଥିଲି, ଆଜିପର୍ଯ୍ୟନ୍ତ ସେଇଟା ସରିଲାନି । ତମେ ତାକୁ ସାରିଦେବ । ତାଙ୍କ କଥା ମାନି ପ୍ରବଳ ପରିଶ୍ରମ କରି ସେଇ ଦୁରୂହ କାମଟିକୁ ମୁଁ ବର୍ଷକ ମଧ୍ୟରେ ସାରିଦେଲି । ସେ ବହୁତ ଖୁସି ହେଲେ ।

ସୁନ୍ଦରଗଡ଼ରେ ଥିବାବେଳର ଗୋଟିଏ ଘଟଣା । ଅଲ୍ଲୀ ସାହେବ ସେତେବେଳେ ଆର୍.ଡି. ଡିପାର୍ଟମେଣ୍ଟକୁ ବଦଳି ହୋଇଯାଇଥା’ନ୍ତି । ତାଙ୍କର ସମ୍ବଲପୁରରୁ ରାଉରକେଲା ଟୁର୍‌ରେ ଯିବାର ଥାଏ । ବାଟରେ ସୁନ୍ଦରଗଡ଼ ଡାକବଙ୍ଗଳାରେ ଚା’ ଖାଇବାର ଥାଏ । ମୁଁ ଲାଗିପଡ଼ି Suit No.1 କୁ ସମ୍ପୂର୍ଣ୍ଣ ସଜାସଜି କରିଦେଲି । ହଠାତ୍ ଦଶଟା ବେଳକୁ ସୁନ୍ଦରଗଡ଼ ଆର୍.ଡି. ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ମୋ ପାଖକୁ

ଆସିଲେ ଏବଂ ଟିକେ ଆଶ୍ଚର୍ଯ୍ୟ ହେଲାପରି କହିଲେ, ''ଖବର ଆସିଛି, ସେ ତମ ଘରେ ଚା' ପିଇବେ । ଡାକବଙ୍ଗଳାକୁ ଯିବେ ନାହିଁ ।'' ମୁଁ କହିଲି, ''ଭଲ କଥା ।'' ମୋର ବଙ୍ଗଳାରେ ଗୋଟେ ସୁନ୍ଦର ଲନ୍ କରିଥାଏ । ନାନାରକମର ଫୁଲ ଫୁଟିଥାଏ । ଅଲ୍ଲୀସାହେବ ବହୁତ ନବାବୀ ମିଜାଜ୍‌ର ଲୋକ ଥିଲେ । ପାଞ୍ଚଟା ବେଳକୁ ସେ ଓ ସୁପରିଣ୍ଟେଣ୍ଡେଣ୍ଟ୍ ଇଞ୍ଜିନିୟର ପି.ଏଲ୍. ଦଣ୍ଡପାଟ ଆସି ମୋ' କ୍ୱାର୍ଟରରେ ପହଞ୍ଚିଲେ । ଚା' ଖିଆ ହେଲା । ମୁଁ ଜାଣିଲି ଯେ ବୌଦରେ ହୋଇଥିବା ଭୁଲ ବୁଝାମଣାର ଏଟା ହେଉଛି ସଂଶୋଧନ । ତା'ପରେ ମତେ କହିଲେ, ମୋର ସୁନ୍ଦରଗଡ଼ କଲେକ୍ଟରଙ୍କ ପାଖରେ ଟିକେ ବ୍ୟକ୍ତିଗତ କାମ ଅଛି । ବୁଝ ମୁଁ ତାଙ୍କୁ ଦେଖା କରି ଯିବି । ସେତେବେଳେ ଶ୍ରୀ ଅଶୋକ ମୋବାୟୀ, ଆଇ.ଏ.ଏସ୍. କଲେକ୍ଟର ଥାଆନ୍ତି । ସେ ବହୁତ କ୍ଷମତାଶାଳୀ ଥିଲେ ଏବଂ ଖୋଦ୍ ଇନ୍ଦିରାଗାନ୍ଧୀଙ୍କର ନିଜ ଲୋକ ଥିଲେ । ସେ ମତେ ବହୁତ ସ୍ନେହ କରୁଥିଲେ । ମୁଁ ସଙ୍ଗେ ସଙ୍ଗେ କହିଲି, ''ସାର୍ ! ଚିଫ୍ ଇଞ୍ଜିନିୟର କଲେକ୍ଟରଙ୍କ ପାଖକୁ ଯିବାଟା କ'ଣ ଶୋଭନୀୟ ହେବ ? ମୁଁ କଲେକ୍ଟରଙ୍କୁ ଏଠାକୁ ଡକାଇ ଦେଉଛି ।'' ସେତେବେଳେ ମୋବାଇଲ୍ ଫୋନ୍ ନ ଥିଲା । ମୁଁ ମୋ' ଘର ଫୋନ୍‌ରୁ ମୋବାୟୀ ସାହେବଙ୍କ ସଙ୍ଗେ କଥା ହେଲି ଏବଂ ଚିଫ୍ ଇଞ୍ଜିନିୟର ମୋ' ଘରେ ବସିଛନ୍ତି । ତାଙ୍କ ସଙ୍ଗେ କ'ଣ କାମ ଅଛି ବୋଲି କହିଲି । ସେ କହିଲେ, ''ସଙ୍ଗେ ସଙ୍ଗେ ଆସୁଛି ।'' ତା'ପରେ ଦଣ୍ଡପାଟ ସାହେବଙ୍କୁ ଚାହିଁ କହିଲେ, ''ଏ ପିଲାକୁ ଦେଖୁଛ ତ ? ଯେ ଭବିଷ୍ୟତରେ ବହୁତ ନାଁ କରିବ ।'' ପାଞ୍ଚ ମିନିଟ୍ ଭିତରେ ମୋବାୟୀ ସାହେବ ପହଞ୍ଚିଲେ ଏବଂ ଉଭୟେ ମୋ' ଡ୍ରଇଁରୁମ୍‌ରେ ବସି କ'ଣ କଥାବାର୍ତ୍ତା କଲେ । ଏକଥା ଆଜିର ଆସିଷ୍ଟାଣ୍ଟ ଇଞ୍ଜିନିୟରମାନେ ପଢ଼ିଲେ ହୁଏତ ବିଶ୍ୱାସ କରିବେନି । କେତେକ କହିବେ – ଏଟା ସମ୍ପୂର୍ଣ୍ଣ ନିଜର ବଡ଼େଇ କଥା । ମାତ୍ର ମୁଁ ହଲପ୍ କରି କହୁଛି, ଏଟା ସମ୍ପୂର୍ଣ୍ଣ ସତ୍ୟ । ଆଜିକାଲି ରାଜନୀତି ଏତେ ପ୍ରବଳ ହେଲାଣି ଯେ ଅଫିସରମାନଙ୍କର ଆଉ କୌଣସି ପ୍ରେଷ୍ଟିଜ୍ ନାହିଁ । ସେମାନେ ମନ୍ତ୍ରୀ, ଏମ୍.ଏଲ୍.ଏ.ଙ୍କର ବୋଲକରା ହୋଇଗଲେଣି । ଏଇଟା ଦେଶ ପକ୍ଷରେ ଶୁଭଙ୍କର ନୁହେଁ । ମମତାଜ ଅଲ୍ଲୀ ଅତ୍ୟନ୍ତ ପ୍ରତାପଶାଳୀ ଚିଫ୍ ଇଞ୍ଜିନିୟର ଥିଲେ । ମନ୍ତ୍ରୀ ଏମ୍.ଏଲ.ଏ. ମାନେ ସାହାଯ୍ୟପାଇଁ ତାଙ୍କ ପାଖକୁ ଆସୁଥିଲେ ।

ସେ ଅତ୍ୟନ୍ତ ଦାନଶୀଳ ଥିଲେ । ଥରେ କ'ଣ ଗୋଟେ କାମରେ ମୁଁ ତାଙ୍କ ସୂର୍ଯ୍ୟନଗରସ୍ଥ ଘରକୁ ଯାଇଥାଏ । ଜଣେ ବୁଢ଼ା ବ୍ରାହ୍ମଣ ତାଙ୍କୁ ଦେଖା କରିବାକୁ ଆସିଲେ । ସେ ସୁଦୂର ଭଞ୍ଜନଗରରୁ ଆସିଛନ୍ତି ଏବଂ ନାତିକୁ ବ୍ରତକରାଇବା ପାଇଁ କିଛି ସାହାଯ୍ୟ ଚାହୁଁଛନ୍ତି ବୋଲି ଅନୁରୋଧ କଲେ । ଅଲ୍ଲୀ ସାହେବ ତାଙ୍କ ପକେଟ୍‌ରେ ହାତ ପୂରାଇ କିଛି ଟଙ୍କା ବାହାର କଲେ ଏବଂ ନ ଗଣି ବ୍ରାହ୍ମଣଙ୍କୁ ଦେଲେ ।

ମତେ ଲାଗିଲା ପାଞ୍ଚ ଶହ କି ଛଅ ଶହ ଟଙ୍କା ହେବ । ତଥାପି ସେ ନ ଉଠିବାର ଦେଖି ଆଉ ପକେଟରେ ହାତ ପୂରାଇଲେ ଏବଂ ଆଉ ତିନି ଶହ / ଚାରି ଶହ ହେବ ବାହାର କରି ସେମିତି ନ ଗଣି ତାଙ୍କ ହାତରେ ଦେଲେ । ସେ ଆଶୀର୍ବାଦ କରି ଚାଲିଗଲେ । ମୁଁ ତାଙ୍କୁ ଆଶ୍ଚର୍ଯ୍ୟ ହୋଇ ଚାହିଁଲି । ସେ କହିଲେ, ''ଶୁଣ, ଭଗବାନ୍‌ଙ୍କ ଦୟାରୁ ଏ ଜୀବନରେ ମୁଁ ଅନେକ ଧନ ଅର୍ଜନ କରିଛି । ସେଥିଲାଗି ସେ ମୋ' ଦ୍ୱାରକୁ ଆସିଥିଲେ । ତାଙ୍କୁ ଦାନ ଦେଇ ମୋର ଗର୍ବ କରିବାର କିଛି ନାହିଁ; ବରଂ ସେ ମୋତେ ଏ ସୁଯୋଗ ଦେଇଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।''

ମମତାଜ ଅଲ୍ଲୀଙ୍କର ଅନେକ ଶତ୍ରୁ ଥିଲେ । ତାଙ୍କର କ୍ଷମତାରେ ଈର୍ଷାନ୍ୱିତ ହୋଇ ଲୋକମାନେ ତାଙ୍କ ନାଁ'ରେ ଚୁଗୁଲି କରୁଥିଲେ । ଥରେ କଥା ଛଳରେ ସେ ସମୟର ଅତି ପ୍ରତାପଶାଳୀ ଚିଫ୍ ଜଷ୍ଟିସ୍ ଶ୍ରୀଯୁକ୍ତ ଗତିକୃଷ୍ଣ ମିଶ୍ର (ଯିଏକି ମତେ ତାଙ୍କ ନିଜ ପୁଅ ପରି ଭଲ ପାଉଥିଲେ) ମତେ କହିଲେ, ''ମୁଁ ଶୁଣୁଛି ତମ ମମତାଜ୍ ଅଲ୍ଲୀ କୁଆଡ଼େ ବହୁତ ଟଙ୍କା ଖାଏ ।'' ମୁଁ କହିଲି, ''ସେ କଥା ମୁଁ ମଧ ଶୁଣିଛି ଏବଂ କେତେଦୂର ସତ୍ୟ କହିପାରିବି ନାହିଁ; ମାତ୍ର ମୁଁ ଆଖିରେ ଦେଖିଥିବା ସେ ବ୍ରାହ୍ମଣଙ୍କ କଥାଟି ତାଙ୍କୁ କହିଲି ।'' ସେ ମୋତେ କହିଲେ, ''ସତ କହୁଛ, ନିଜ ଆଖିରେ ଦେଖିଛ ?'' ମୁଁ କହିଲି, 'ସମ୍ପୂର୍ଣ୍ଣ ସତ୍ୟ ।' ଗତିବାବୁ ଘଟଣାକ୍ରମେ ଛଅ ମାସ ପାଇଁ ଓଡ଼ିଶାର ରାଜ୍ୟପାଳ ହେଲେ । ମମତାଜ ଅଲ୍ଲୀଙ୍କର ଗୋଟେ ଫାଇଲ୍ ତାଙ୍କ ପାଖକୁ ଆସିଥିଲା । ସେ କ'ଣ ଅର୍ଡର କଲେ ମୁଁ ଜାଣିନି; ମାତ୍ର କେତେଦିନ ପରେ ମତେ ଅଲ୍ଲୀସାହେବ କହିଲେ, ''ମୃତ୍ୟୁଞ୍ଜୟ ! ତମେ ମୋର କ'ଣ ଉପକାର କଲ ତା' ତମେ ନିଜେ ମଧ ଜାଣିନ । "I wish I had a son like you."

ମମତାଜ ଅଲ୍ଲୀ ଆଜି ଆଉ ନାହାନ୍ତି; ମାତ୍ର ତାଙ୍କ ଦ୍ୱାରା ପ୍ରତିଷ୍ଠିତ 'ମମତାଜ ଅଲ୍ଲୀ ହାଇସ୍କୁଲ' ଭୁବନେଶ୍ୱରରେ ଶହ ଶହ ଛାତ୍ରଛାତ୍ରୀଙ୍କୁ ଶିକ୍ଷାଦାନ କରୁଛି । ଜୀବନରେ ଅଗଣିତ ଗରିବ ପିଲାଙ୍କୁ ନାନାଭାବରେ ସେ ସାହାଯ୍ୟ କରିଥିବାର ମୁଁ ଜାଣିଛି । ଦୁନିଆରେ ବହୁତ ଲୋକଙ୍କ ପାଖରେ ଧନ ଅଛି; ମାତ୍ର ତା'ର ଏପରି ସୁବ୍ୟବହାର ମୁଁ କ୍ୱଚିତ୍ ଦେଖିଛି । ଆମ R & B ବିଭାଗକୁ ସାଙ୍ଗମାନେ ଥଟ୍ଟାରେ 'Raja & Badsaha Deptt.' ବୋଲି କହୁଥିଲେ । ମମତାଜ ଅଲ୍ଲୀ ପ୍ରକୃତରେ ମନରେ ଓ ଧନରେ ବାଦଶାହ ଥିଲେ । ଆମେସବୁ ପରବର୍ତ୍ତୀ ଜୀବନରେ ଚିଫ୍ ଇଞ୍ଜିନିୟର ହେଲୁ; ମାତ୍ର ସେ ଥିଲେ ଚିଫ୍ ଇଞ୍ଜିନିୟରମାନଙ୍କର ଚିଫ୍ ଇଞ୍ଜିନିୟର ।

ଭଗବାନ୍ ତାଙ୍କର ଆତ୍ମାକୁ ଶାନ୍ତି ଦିଅନ୍ତୁ ।



## ଆର୍ତ୍ତବଲ୍ଲଭ ମହାନ୍ତି
## ଇଞ୍ଜିନିୟର ଜଗତର ଏକ ଅନନ୍ୟ ପ୍ରତିଭା

ଆର୍ତ୍ତବଲ୍ଲଭ ମହାନ୍ତି (ସଂକ୍ଷେପରେ ଏ. ବି. ମହାନ୍ତି) ଓଡ଼ିଶା ପି.ଡବ୍ଲ୍ୟୁ.ଡି.ରେ ଜଣେ ଯୋଗଜନ୍ମା ଇଞ୍ଜିନିୟର ଥିଲେ । ତାଙ୍କ ସହିତ ମୋର ପ୍ରଥମ ଦେଖାହୁଏ ମୋର ବିବାହ ଦିନ ରାତିରେ । ସେ ମୋର ଶ୍ୱଶୁରଙ୍କର ସହପାଠୀ ଥିଲେ । ମୋ' ବିବାହ ଦିନ (ଫେବୃଆରୀ ୩ ତାରିଖ ୧୯୬୭) ରାତି ୧୧ଟା ବେଳକୁ ମୋ' ଶ୍ୱଶୁର ଡକ୍ଟର ରାଜକିଶୋର ଦାସ, ପିଏଚ୍.ଡି. (ଲଣ୍ଡନ) ଜଣେ ଭଦ୍ରବ୍ୟକ୍ତିଙ୍କୁ ସାଙ୍ଗରେ ଧରି ମୋ ରୁମ୍‌କୁ ପଶିଆସିଲେ ଏବଂ କହିଲେ– ଇଏ ହେଉଛନ୍ତି ତମମାନଙ୍କର ଚିଫ୍ ଇଞ୍ଜିନିୟର ଶ୍ରୀ ଏ. ବି. ମହାନ୍ତି । ସେ କହିଲେ– ତମ ବାହାଘରରେ ଯୋଗଦେବା ପାଇଁ ମୁଁ ପାରଳାଖେମୁଣ୍ଡିରୁ ସିଧା ସିଧା କଟକ ଆସିଛି । ଘରକୁ ମଧ୍ୟ ଯାଇ ନାହିଁ । ତମେ ସବୁ ଏ. ସି. ପାଡ଼ୀଙ୍କ ପାଖରେ ରହିଲ, କେମିତି ଚିହ୍ନିବ ?

ତା'ପରେ ଜୀବନରେ ଅନେକଥର ମୁଁ ତାଙ୍କ ପାଖରେ କାମ କରିଛି । ସେ ଅତ୍ୟନ୍ତ ଗରିବ ଅବସ୍ଥାରୁ ସମାଜର ଶୀର୍ଷସ୍ଥାନକୁ ଉଠିଥିଲେ ଏବଂ କଠୋର ପରିଶ୍ରମ କରୁଥିଲେ । ତାଙ୍କର ପ୍ରଗାଢ଼ ଉଦ୍ୟମ ଯୋଗୁଁ କଟକଠାରେ ମହାନଦୀ ପୋଲ ହେଲା ଏବଂ କଲିକତାକୁ ସବୁଦିନିଆ ରାସ୍ତା ଫିଟିଲା । ଘଟଣାଚକ୍ରରେ ମୁଁ ସୁନ୍ଦରଗଡ଼ରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥିବାବେଳେ ସେ ପୂର୍ତ୍ତ ବିଭାଗର ଚିଫ୍ ଇଞ୍ଜିନିୟର ଥିଲେ । ସେତେବେଳେ ମୋର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥିଲେ ଶ୍ରୀ ଗଣେଶ୍ୱର ସାହୁ । ସେ ଅତ୍ୟନ୍ତ ଡରୁଆ ଏବଂ ଅସାଧୁ ପ୍ରକୃତିର ଲୋକ ଥିଲେ । ମୋର କଲେକ୍ଟର (ଶ୍ରୀଯୁକ୍ତ ଅଶୋକ ମୋବାଇ) ଏବଂ ଏସ୍.ପି. ହେରିକାଙ୍କ ସହିତ ଅତ୍ୟନ୍ତ ଭଲ ସମ୍ପର୍କ ଥିବାରୁ ସେ ମନେ ମନେ ମୋ ପ୍ରତି ଈର୍ଷାଭାବ ପୋଷଣ କରୁଥିଲେ । ଘଟଣାକ୍ରମେ ଭୁବନେଶ୍ୱର ଯିବା ରାସ୍ତାରେ ମେରାମୁଣ୍ଡଳୀଠାରେ ତାଙ୍କର କାର୍ ଦୁର୍ଘଟଣା ହେଲା ଏବଂ ସେ ଦୁଇ ତିନି ମାସ ଧରି ଶଯ୍ୟାଶାୟୀ ହେଲେ । କଥା ଉଠିଲା, ସୁନ୍ଦରଗଡ଼ର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର କିଏ ହେବ । ସେତେବେଳେ ମୋର ସୁପରିଣ୍ଟେଣ୍ଡେଣ୍ଟ୍ ଇଞ୍ଜିନିୟର ଥିବା ଶ୍ରୀ ଶିବେନ୍ଦ୍ରନାଥ ସିହ୍ନା ସେ ପଦ ଲାଗି ମୋ' ନାମ ସୁପାରିସ କଲେ; ମାତ୍ର ଏଥିରେ ଈର୍ଷାନ୍ୱିତ ହୋଇ ରାଉରକେଲା ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥିବା ଶ୍ରୀ ସୁବାସ ଚନ୍ଦ୍ର ମିଶ୍ର

ଚିଫ୍ ଇଞ୍ଜିନିୟରଙ୍କୁ ଧରାଧରି କରି ତାଙ୍କ ନାଁ'ଟା ପୂର୍ତ୍ତ ବିଭାଗକୁ ପଠାଇଦେଲେ । ଦୁଇ ଜଣଙ୍କ ନାଁ ସୁପାରିସ ହେବାରୁ ତତ୍କାଳୀନ ୱାର୍କସ ସେକ୍ରେଟାରୀ (ପି.ଏସ୍. ହବିବ୍ ମହମ୍ମଦ, ଆଇ.ଏ.ଏସ୍.) ଏ ବିଷୟରେ କଲେକ୍ଟରଙ୍କର ଗୁପ୍ତ ପରାମର୍ଶ ମାଗିଲେ ଏବଂ ସେ ଅନୁସାରେ ମତେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ପାଇଁ ନୋଟିଫିକେସନ୍ କରିଦେଲେ ।

ସୁବାସ ମିଶ୍ର ଏଥିରେ ବହୁତ କ୍ଷୁଣ୍ଣ ହେଲେ ଏବଂ ପରେ ମୋର ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ହେବାବେଳେ ମୋ ନାଁ'ରେ ଚୁଗୁଲି କରି ସୁନ୍ଦରଗଡ଼ରୁ ମୋର ବଦଳି କରାଇଦେଲେ । ମୋର Intesive Investigation sub-divisionକୁ ପୋଷ୍ଟିଂ ହେଲା । ଜୀବନଯାକ ମୁଁ ଦେଖିଆସିଛି ମୋର କୌଣସି ଭୁଲ୍ ନ ଥାଇ ମୁଁ ମୋର ସହକର୍ମୀ ତଥା ଉପରିସ୍ଥ କର୍ମଚାରୀମାନଙ୍କର ରୋଷର ଶିକାର ହୋଇ ବହୁତ କଷ୍ଟ ଭୋଗିଛି । ବିନା କାରଣରେ ଦଣ୍ଡ ଭୋଗିବାରୁ ମତେ ବହୁତ ଖରାପ ଲାଗିଲା ଏବଂ ମୁଁ ଏ. ବି. ମହାନ୍ତିଙ୍କୁ ଦେଖାକରି ସମସ୍ତ କଥା ବୁଝାଇଦେବା ପାଇଁ ସ୍ଥିର କଲି । ସହଜରେ ସେ ମୋ ଶ୍ୱଶୁରଙ୍କର ବନ୍ଧୁ ଥିବାରୁ ମୋର ଟିକିଏ ସାହସ ଥାଏ । ସେ ମୋ କଥା ଶୁଣିବେ ବୋଲି !

ମୁଁ ଦିନେ ତାଙ୍କ ଭୁବନେଶ୍ୱର କ୍ୱାର୍ଟରରେ ସକାଳ ୮ଟା ବେଳେ ପହଞ୍ଚିଲି । ସେଦିନ ତାଙ୍କର କୁଆଡ଼େ ଗୋଟେ ଟୁର୍‌ରେ ଯିବାର ଥାଏ । ସେ ମୁହଁରେ ଗୋଟେ ଚୁରୁଟ୍ ଲଗାଇ ପଦାକୁ ଆସିଲେ ଏବଂ ମୁଁ ନମ୍ରତାର ସହିତ କହିଲି, ''ସାର୍, ମତେ ପାଞ୍ଚ-ଦଶ ମିନିଟ୍ ସମୟ ଦେଲେ ମୁଁ ମୋ' ନାଁ'ରେ ଆପଣଙ୍କ ପାଖରେ ହୋଇଥିବା ଅଭିଯୋଗର ଯଥାର୍ଥ ଉତ୍ତର ଦେବି ।''

ସେ ମୋ ମୁହଁକୁ ନ ଅନାଇ ରୁକ୍ଷ ଭାବରେ କହିଲେ, "I have no time to talk to you." । ତା'ପରେ ଗାଡ଼ିରେ ବସି ବାହାରିଗଲେ । ମତେ ବହୁତ କଷ୍ଟ ହେଲା । ସେ ମୋ କଥା ଶୁଣି ତା'ପରେ ଯାହା ଦଣ୍ଡ ଦିଅନ୍ତୁ, ସେଥିରେ ମୋର ଆପତ୍ତି ନ ଥିଲା । ମୁଁ ମନେ ମନେ ଭାବିଲି, ଯଦି ପ୍ରକୃତରେ ଭଗବାନ୍ ଥାଆନ୍ତି, ତେବେ ଦିନେ ନା ଦିନେ ମୁଁ ଏହାର ଠିକ୍ ଜବାବ୍ ଦେବି । କିଛି ବର୍ଷ ପରେ ସେ ସୁଯୋଗ ଆସିଲା । ମୋର ସାନଭାଇ କୃତିତ୍ୱର ସହ ଆଇ.ଏ.ଏସ୍. ପାଇଲା । ଅନେକ ବଡ଼ ବଡ଼ ଜାଗାରୁ ତା'ପାଇଁ ବିବାହ ପ୍ରସ୍ତାବ ଆସିଲା । ଏ. ବି. ମହାନ୍ତିଙ୍କର

କନ୍ୟା ଲାଗି ପି.ଡବ୍ଲ୍ୟୁ.ଡି.ର ଜଣେ ଉଚ୍ଚପଦସ୍ଥ ଅଫିସର ମୋ' ଘରକୁ ଆସିଲେ ଏବଂ ଚିଫ୍ ଇଞ୍ଜିନିୟର ମୋତେ ଦେଖାକରି କଥାବାର୍ତ୍ତା କରିବାକୁ ଚାହୁଁଛନ୍ତି ବୋଲି କହିଲେ । ମୁଁ ତାଙ୍କୁ କହିଲି, "Tell him, I have no time to talk to him." ସେ ମହାଶୟ ଭୂତ ଦେଖିଲାପରି ମତେ ଚାହିଁଲେ ଏବଂ କହିଲେ – ତମେ କ'ଣ କହୁଛ ଜାଣିଛ ତ ? ମୁଁ ସେତେବେଳେ କଟକରେ ତାଙ୍କ ଅଧୀନରେ କ୍ୟାଣ୍ଟନ୍‌ମେଣ୍ଟ ସବ୍‌ଡିଭିଜନ୍‌ରେ ଏସ୍.ଡି.ଓ. ଥାଏ । ମୁଁ କହିଲି, ''ଆପଣ ଯାଆନ୍ତୁ । ଏ. ବି. ମହାନ୍ତି ଏ କଥାର ଅର୍ଥ ଠିକ୍ ବୁଝିପାରିବେ ।'' ପରେ ଶୁଣିଲି ଚିଫ୍ ଇଞ୍ଜିନିୟର କୁଆଡ଼େ କହିଲେ, ''ସେ ଠିକ୍ କହିଛି । ଏ ବାହାଘର ହୋଇପାରିବନି;'' ମାତ୍ର ସେ ମୋର କିଛି କ୍ଷତି କରି ନ ଥିଲେ ।

ଏ. ବି. ମହାନ୍ତି ଜଣେ ଦକ୍ଷ ଚିଫ୍ ଇଞ୍ଜିନିୟର ଥିଲେ ଏବଂ ଉଭୟ ପି. ଡବ୍ଲ୍ୟୁ. ଡି. ଏବଂ ଆର୍. ଡି. ଡିପାର୍ଟମେଣ୍ଟର ଅନେକ ରାସ୍ତାଘାଟ, ପୋଲ ତାଙ୍କ ସମୟରେ ହୋଇଥିଲା । ସେ କଠୋର ପରିଶ୍ରମୀ ଥିଲେ ଏବଂ ତାଙ୍କ ଅଧୀନରେ କାମ କରୁଥିବା ଇଞ୍ଜିନିୟରମାନେ ତାଙ୍କୁ ବଡ଼ ଭୟ କରୁଥିଲେ; ମାତ୍ର ତାଙ୍କର ଶେଷଜୀବନ ଅତ୍ୟନ୍ତ ଦୁଃଖମୟ ହେଲା ।

ଆମେ ସବୁ ଚିଫ୍ ଇଞ୍ଜିନିୟରଙ୍କ ଅଫିସ୍‌ରେ ଥାଉ । ସେତେବେଳେ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଚାଲିଥାଏ । ୧୧ଟା ବେଳକୁ ରାଜ୍ୟପାଳଙ୍କ ଠାରୁ ଡାକରା ପାଇ ସେ ସେକ୍ରେଟାରୀଏଟ୍‌କୁ ଚାଲିଗଲେ ଏବଂ ଘଣ୍ଟାକ ପରେ ଫେରିଆସି ଅଫିସର ସମସ୍ତଙ୍କୁ ତାଙ୍କ ରୁମ୍‌କୁ ଡକାଇଲେ । ବାଷ୍ପରୁଦ୍ଧ କଣ୍ଠରେ କହିଲେ, ''ମୁଁ ଆଜି ଇସ୍ତଫା ଦେଇଦେଉଛି । ମୋର ଭୁଲ୍ ଥିଲେ କ୍ଷମା କରିଦେବେ ।'' ତା'ପରେ ଅଫିସ୍ ଛାଡ଼ି ଚାଲିଗଲେ । ଆମେ ଶୁଣିଲୁ ଗଭର୍ଣ୍ଣର ବି. ଡି. ଜତି କୁଆଡ଼େ ତାଙ୍କୁ ସଙ୍ଗେ ସଙ୍ଗେ ଇସ୍ତଫା ଦେବାକୁ ନିର୍ଦ୍ଦେଶ ଦେଇଥିଲେ, ନଚେତ୍ ତାଙ୍କୁ ଚାକିରିରୁ ବରଖାସ୍ତ କରାଯାଇଥାଆନ୍ତା । ଏହିଭଳି ଭାବରେ ଜଣେ ପ୍ରତିଭାବାନ୍ ଇଞ୍ଜିନିୟରଙ୍କ ଜୀବନର କରୁଣ ପରିସମାପ୍ତି ଘଟିଲା ।

□□□

# ବୈକୁଣ୍ଠନାଥ ପଟ୍ଟନାୟକ
# ଏକ ସାଲିସହୀନ ବ୍ୟକ୍ତିତ୍ୱ

ବୈକୁଣ୍ଠନାଥ ପଟ୍ଟନାୟକ ମୋର ବଡ଼ବାପା ଥିଲେ । ତାଙ୍କର ବାପା ଶ୍ରୀ ନାରାୟଣ ସୁମନ୍ତ ପଟ୍ଟନାୟକ ଏବଂ ମୋ' ଜେଜେବାପା ଶ୍ରୀ ଲୋକନାଥ ପଟ୍ଟନାୟକ ଦୁଇ ଭାଇ ଥିଲେ । ସୁମନ୍ତ ପଟ୍ଟନାୟକ ତତ୍କାଳୀନ ବଡ଼ମ୍ବା ରାଜାଙ୍କ ବିରୋଧରେ ବିଦ୍ରୋହ କରି ରାଜ୍ୟରୁ ତଡ଼ା ଖାଇଥିଲେ ଏବଂ ମୋ' ଜେଜେବାପା ତାଙ୍କ ବନ୍ଧୁ ତଥା ସହପାଠୀ ଉତ୍କଳମଣି ଗୋପବନ୍ଧୁ ଦାସଙ୍କୁ କହି ସତ୍ୟବାଦୀ ବନବିଦ୍ୟାଳୟରେ ତାଙ୍କୁ କୃଷିଶିକ୍ଷକ ରୂପେ ନିଯୁକ୍ତି ଦେଇଥିଲେ ।

ଯେଉଁମାନେ ଚାକିରି ଜୀବନରେ ମତେ ଏବଂ ମୋ' ପରିବାରକୁ ଜାଣିଛନ୍ତି, ସେମାନେ ମତେ କହୁଥିଲେ ଲୋକନାଥବାବୁଙ୍କ ଅପେକ୍ଷା (ସେ ଅତ୍ୟନ୍ତ ସରଳ ପ୍ରକୃତିର ଲୋକ ଥିଲେ) ବୈକୁଣ୍ଠବାବୁଙ୍କର ଛାପ ଆପଣଙ୍କଠାରେ ବେଶି ଅଛି । ମୁଁ ପିଲାଦିନୁ ସ୍ପଷ୍ଟବାଦୀ ଥିଲି ଏବଂ ପରବର୍ତ୍ତୀ କାଳରେ ସେଥିପାଇଁ ମତେ ବହୁତ ମୂଲ୍ୟ ଦେବାକୁ ପଡ଼ିଛି । 'ସତ୍ୟଂ ବ୍ରୁୟାତ୍ ପ୍ରିୟଂ ବ୍ରୁୟାତ୍' ଶ୍ଳୋକର ମୁଁ ପ୍ରଥମ ଧାଡ଼ିଟି କେବଳ ପାଳନ କରୁଥିଲି । ଥରେ କେନ୍ଦ୍ରାପଡ଼ାରେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥିଲାବେଳେ ତତ୍କାଳୀନ ଏମ୍.ଏଲ୍.ଏ. (ପରେ ଓଡ଼ିଶାର ପୂର୍ତ୍ତ ବିଭାଗର ମନ୍ତ୍ରୀ)ଙ୍କ ସହିତ ଯୁକ୍ତିତର୍କ ହେଲା । ମୁଁ କହିଲି, ''ସାର୍, ମୁଁ ଜଣେ ଯନ୍ତ୍ରୀ । ଚେଷ୍ଟାକଲେ ଏବଂ ଭାଗ୍ୟରେ ଥିଲେ ମୁଁ ଭବିଷ୍ୟତରେ ମନ୍ତ୍ରୀ ହୋଇପାରିବି; ମାତ୍ର ଆପଣ କ'ଣ ଏ ଜନ୍ମରେ ଯନ୍ତ୍ରୀ ହୋଇପାରିବେ ?'' ପରବର୍ତ୍ତୀ କାଳରେ ସେ ମୋ ବିଭାଗର ମନ୍ତ୍ରୀ ହୋଇ ଏକଥା ମନେରଖିଥିଲେ ଏବଂ ସେକ୍ରେଟାରୀ ବାରିପଦା ପୂର୍ତ୍ତ ବିଭାଗ ପାଇଁ ମୋର ନାଁ' ସୁପାରିସ କରିଥିଲେ ମଧ୍ୟ ତାକୁ ବାତିଲ କରି ଅଫିସକୁ ପୋଷ୍ଟିଂ କରିଦେଲେ ।

ମାତ୍ର ସେଥିଲାଗି ମୋର ତିଳେମାତ୍ର ଅବଶୋଷ ନାହିଁ । ଏ ବିଷୟରେ ମୁଁ ପୂରାପୂରି ବଡ଼ବାପାଙ୍କ ପରି ଥିଲି । ମୁଣ୍ଡ କଟିଯାଉ ପଛକେ ନଇଁବା ମୋର ସ୍ୱଭାବରେ ନ ଥିଲା । ବୈକୁଣ୍ଠବାବୁ ପ୍ରଥମେ ପୁରୀ ଜିଲ୍ଲା ସ୍କୁଲର ଏବଂ ପରେ ରେଭେନ୍ସା କଲିଜିଏଟ୍‌ର ପ୍ରଧାନ ଶିକ୍ଷକ ଥିଲେ । ଓଡ଼ିଶାର ସ୍ୱନାମଧନ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ (ବର୍ତ୍ତମାନ ଆସାମର ରାଜ୍ୟପାଳ) ତାଙ୍କର ଛାତ୍ର ଥିଲେ ।

ସେ ପୁରୀ ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଥିଲାବେଳେ ଶ୍ରୀ ନୀଳକଣ୍ଠ ବାହିନୀପତି ସମଗ୍ର ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ ଏବଂ ଚାକିରି କ୍ଷେତ୍ରରେ ନିଜ ଇଚ୍ଛା ବିରୋଧରେ ବାପାଙ୍କ କଥା ମାନି ଇଞ୍ଜିନିୟର ହୋଇଥିଲେ ମଧ୍ୟ ସେତେଟା ଭଲ କରିପାରି ନ ଥିଲେ । ମୁଁ ଇଞ୍ଜିନିୟର ହେବା ପରେ ବଡ଼ବାପା ଅନେକଥର 'ନୀଳକଣ୍ଠ କେମିତି ଅଛି ?' ବୋଲି ପଚାରି ଖବର ରଖୁଥିଲେ ।

ମୁଁ ରେଭେନ୍ସା କଲେଜରେ ପଢ଼ିବା ବେଳର ଘଟଣା ମନେପଡୁଛି । ଓଡ଼ିଆ ସାହିତ୍ୟରେ ମୋର ବ୍ୟୁତ୍ପତ୍ତି ଯୋଗୁଁ ହେଉ କିମ୍ବା ମୋର ସୁନ୍ଦର ହସ୍ତାକ୍ଷର ପାଇଁ ହେଉ ଟିଉଟରିଆଲ୍ ଶ୍ରେଣୀରେ ମୁଁ ସବୁବେଳେ ଅଧିକ ନମ୍ବର ରଖୁଥିଲି; ଯଦିଓ ମୁଁ ବିଜ୍ଞାନର ଛାତ୍ର ଥିଲି, ଅଧ୍ୟାପକ ଥିଲେ ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର । ମୋ ସହପାଠୀମାନେ ମତେ ଥଟ୍ଟାରେ କହୁଥିଲେ, "ତୋ' ଅକ୍ଷର ଦେଖି ସାର୍ ନମ୍ବର ଦେଇଦେଉଛନ୍ତି । ସେ ତୋ' ଲେଖା ପଢୁ ନାହାନ୍ତି ।" ସେ ବଡ଼ବାପାଙ୍କ ଛାତ୍ର ଥିଲେ ଏବଂ ଥରେ ତାଙ୍କୁ କହିଲେ, "ମୃତ୍ୟୁଞ୍ଜୟ, ବିଜ୍ଞାନ ବଦଳେଇ କରି ଓଡ଼ିଆ ଅନର୍ସ ନେଲେ ନିଶ୍ଚୟ ସ୍ୱର୍ଣ୍ଣପଦକ ପାଇବ ।" ବଡ଼ବାପା କୁଆଡ଼େ କହିଲେ, "ଓଡ଼ିଆ ପଢ଼ି ଆମେ ସବୁ କ'ଣ ହେଲେ ଦେଖୁଛୁ । ତା'ର ଯାହା ଇଚ୍ଛା ସେ ପଢୁ ।" ପରେ ତାଙ୍କ ଘରକୁ ବୁଲିଗଲାବେଳେ ମତେ ସେ ଏ କଥା କହିଲେ ।

ବଡ଼ବାପା ପ୍ରଚଣ୍ଡ ସ୍ୱାଭିମାନୀ ଥିଲେ । ଥରେ ଅନୁଗୁଳ ସ୍କୁଲରେ ପ୍ରଧାନ ଶିକ୍ଷକ ଥିବାବେଳେ ସେ ଏବଂ ସେତେବେଳର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ଗୋଟେ ସଭାରେ ଏକାଠି ବସିଥିଲେ । କବି ଓ ଲେଖକ ହିସାବରେ ମହତାବଙ୍କ ସହିତ ତାଙ୍କର ବ୍ୟକ୍ତିଗତ ବନ୍ଧୁତା ଥିଲା । ମୁଖ୍ୟମନ୍ତ୍ରୀ ତାଙ୍କୁ ଥଟ୍ଟାରେ କହିଲେ, "ବୈକୁଣ୍ଠବାବୁ ! ଏଠି ତ ମାରୱାଡ଼ିମାନେ ଅଛନ୍ତି । ଟିଉସନ୍‌ରେ ଭଲ ଦୁଇ ପଇସା ପାଉଥିବ ।" ମାତ୍ର ବଡ଼ବାପାଙ୍କୁ ଏ କଥା ଭାରି ବାଧିଲା । ସେ କହିଲେ, "ଆଜ୍ଞା ! ମାରୱାଡ଼ିଙ୍କୁ ଦୁହିଁବାପାଇଁ ଯେଉଁ ମୋଟା ହାତ ଦରକାର, ସେଟା ମୋର ନାହିଁ । ଆମର ମାଷ୍ଟ୍ରିଆ ହାତ । ମୁଁ ଜୀବନରେ ଟିଉସନ୍ କରେ ନାହିଁ ।" ଏ କଥା କହି ସେ ସଭାମଞ୍ଚ ଛାଡ଼ି ଚାଲିଆସିଲେ । ଯେତେ ବୁଝାଇଲେ ବି ଗଲେନି । ସେ ବହୁତ ନିର୍ଭୀକ ଏବଂ ଜିଦ୍‌ଖୋର ଥିଲେ ଏବଂ ଏଥିଲାଗି ସରକାରୀ ଚାକିରିରେ ତାଙ୍କୁ ବହୁତ ହୀନସ୍ତା ହେବାକୁ ପଡ଼ିଛି; ମାତ୍ର ନିଜ ମତରେ ସେ ସବୁବେଳେ ଅଟଳ ରହୁଥିଲେ । ଏ କଥା ସେ ମତେ ନିଜେ କହିଛନ୍ତି ।

ଆଉ ଥରେ ସେ ସରକାରୀ ସ୍କୁଲରେ କେଉଁ ବହି ଚଳିବ, ସେ କମିଟିର ମେମ୍ବର ଥିଲେ । ଓଡ଼ିଶାର ଜଣେ ଜଣାଶୁଣା ପ୍ରକାଶକ ତାଙ୍କରି ବହି ବାଛିବାକୁ କହି ତାଙ୍କୁ ଟଙ୍କା ଯାଚିଲେ । ସେତେବେଳେ ବିବି ଅପା କିମ୍ବା ବୁବୁ ଅପା (ସ୍ୱନାମଧନ୍ୟ କଣ୍ଠଶିଳ୍ପୀ କୁମାରୀ ସୁନନ୍ଦା ପଟ୍ଟନାୟକ) କିଏ ଜଣେ ଜରରେ ପଡ଼ିଥା'ନ୍ତି । ବଡ଼ବାପାଙ୍କର ଗୋଟେ ବିରାଟ ପରିବାର । ସଦାବେଳେ ଅର୍ଥର ଅଭାବ ଲାଗିରହିଥାଏ; ମାତ୍ର ସେ ରୋକ୍‌ଠୋକ୍ ପଇସା ଦେବାପାଇଁ ମନା କରିଦେଲେ ଏବଂ ପରେ କଥା ଛଳରେ ମତେ ଥରେ କହିଲେ, ''ବୁଝିଲୁ ! ସେ ପଇସାରେ ଔଷଧ କିଣିଥିଲେ ମୋ ଝିଅ ବୋଧେ ମରିଯାଇଥାଆନ୍ତା ।'' ଆଜି 'ସମାଜ' ଖୋଲିଲେ, ଯନ୍ତୀଙ୍କ ଠାରୁ ଆରମ୍ଭ କରି ମନ୍ତ୍ରୀଙ୍କ ପର୍ଯ୍ୟନ୍ତ ଲକ୍ଷ ଲକ୍ଷ ଟଙ୍କା ଆତ୍ମସାତ୍ ହେବାର ଖବର ଦେଖିବାକୁ ମିଳୁଛି; ମାତ୍ର ବୈକୁଣ୍ଠବାବୁଙ୍କ ପରି ସାଧୁ ଏବଂ ସ୍ୱାଭିମାନୀ ଲୋକ ସରକାରୀ ଚାକିରିରେ ଥିଲେ – ଏ'ଟା ହୁଏତ ଅନେକ ଲୋକ ବିଶ୍ୱାସ କରିବେନି ।

ବଡ଼ବାପା ସବୁଜ ଯୁଗର କବି । କାଳିନ୍ଦୀଚରଣ ପାଣିଗ୍ରାହୀ, ହରିହର ମହାପାତ୍ର, ଶରତ ଚନ୍ଦ୍ର ମୁଖାର୍ଜୀ, ଅନ୍ନଦା ଶଙ୍କର ରାୟଙ୍କ ସହିତ ତାଙ୍କର ପ୍ରଗାଢ଼ ବନ୍ଧୁତା ଥିଲା । ଥରେ ଖୁସିରେ ଜଷ୍ଟିସ ହରିହର ମହାପାତ୍ରଙ୍କୁ ମୁଁ ଆମ ଗାଁ ବଡ଼ମ୍ବା ଯିବାଲାଗି ନିମନ୍ତ୍ରଣ କରିବାରୁ ସେ କହିଲେ, ''ବୈକୁଣ୍ଠବିହୀନ ବଡ଼ମ୍ବାକୁ ମୁଁ ଯାଇପାରିବିନି ।''

ଜୀବନର ଶେଷଆଡ଼କୁ ସେ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ । ତାଙ୍କ ଲିଖିତ ବୁଦ୍ଧ ବନ୍ଦନା –

ପାପତାପ ପ୍ରାଣେ
　　ବରିବାକୁ ତବ ଦୀକ୍ଷା
ଶ୍ରାନ୍ତ କ୍ଷୁବ୍ଧ ଭିକ୍ଷୁ ଆସିଛି
　　ଦିଅ ହେ ମୁକ୍ତି ଭିକ୍ଷା ।
ମୁକ୍ତ କର ହେ ମୁକ୍ତ
　　ମୋ ମନ ମନ୍ଦିର ଅବରୁଦ୍ଧ
ବୁଦ୍ଧ ! ହେ ବୁଦ୍ଧ !
　　ହେ ଅବିନେଶ୍ୱର ଶୁଦ୍ଧ ।

ଏହାର ପ୍ରକୃତ ଉଦାହରଣ – ତାଙ୍କ ଜୀବନରେ ସେ ଅନେକ ବିପର୍ଯ୍ୟୟକୁ ସାମ୍ନା କରିଛନ୍ତି । ପରିଣତ ବୟସରେ ଗେହ୍ଲାପୁଅ ହାକିମକୁ ହତ୍ୟା କରାଯାଇଛି । ଡାକ୍ତର ପୁଅ ଦୀପଙ୍କର (ବାବୁ) କେଉଁଆଡ଼େ ନିରୁଦ୍ଦିଷ୍ଟ ହୋଇଯାଇଛି । ନିଜର କର୍ମସ୍ଥଳୀ କଟକ ସହର ଛାଡ଼ି ଜନ୍ମଭୂମି ବଡ଼ମ୍ବାକୁ ଫେରିଯାଇଛନ୍ତି; ମାତ୍ର ଦୁର୍ଦ୍ଧର୍ଷ ବୈକୁଣ୍ଠବାବୁ ଭାଙ୍ଗିପଡ଼ି ନାହାନ୍ତି । ତାଙ୍କ ଅମର ଲେଖନୀରୁ ନିଃସୃତ ଏବଂ କୋକିଳକଣ୍ଠୀ ସୁନନ୍ଦାଙ୍କ କଣ୍ଠରେ ଉଚ୍ଚାରିତ –

''ଜୀବନ ପାତ୍ର ମୋ ଭରିଛି କେତେମତେ
ନ ଦେଲ କିଛି ବୋଲି କହିବି କିହେ, ଆଉ
ଜୀବନ ପ୍ରିୟତମ ହରିଛ ମୋ ଭରମ
ତରଣୀ ମମ ତବ ସାଗରେ ବହିଯାଉ ।''

– ଏବେବି ଆକାଶବାଣୀର ଅଗଣିତ ଶ୍ରୋତାଙ୍କ ହୃଦୟରେ ସ୍ପନ୍ଦନ ଯୋଗାଇଦିଏ । ଜୀବନର ଶେଷଭାଗରେ ଭାରତ ସରକାରଙ୍କ ତରଫରୁ ତାଙ୍କୁ ଯଚା ଯାଇଥିବା 'ପଦ୍ମଶ୍ରୀ' ସମ୍ମାନ ସେ ବିନମ୍ରତାର ସହିତ ପ୍ରତ୍ୟାଖ୍ୟାନ କରିଥିଲେ ।

ଜୀବନରେ କେବେ କାହା ସହିତ ସାଲିସ୍ କରି ନ ଥିବା ଏଇ ସ୍ୱାଭିମାନୀ କବି ତାଙ୍କ ପ୍ରିୟ ଜନ୍ମଭୂମିରେ ନିଜର ଆରାଧ୍ୟ ଦେବତା 'ରାଧାମାଧବ'ଙ୍କ ଦର୍ଶନ କରିସାରିବାପରେ ଶେଷ ନିଶ୍ୱାସ ତ୍ୟାଗ କଲେ । ଉତ୍କଳ ଜନନୀ ତା'ର ଜଣେ ଶ୍ରେଷ୍ଠ ବରପୁତ୍ରଙ୍କୁ ହରାଇଲା ।

❑❑❑

# ନନ୍ଦିନୀ ଶତପଥୀ
# ଓଡ଼ିଶାର ଲୌହମାନବ

ନନ୍ଦିନୀ ଶତପଥୀଙ୍କୁ ମୁଁ ଜାଣିବା ଆଗରୁ ତାଙ୍କ ବିଷୟରେ ଗୋଟେ କବିତାରେ ପଢ଼ିଥିଲି । ସେ ରେଭେନ୍‌ସା କଲେଜର ଛାତ୍ରୀ ଥିଲାବେଳେ ଛାତ୍ର ଆନ୍ଦୋଳନରେ ଭାଗ ନେଇଥିଲେ ଏବଂ ସେଥିଲାଗି ତାଙ୍କୁ ପୋଲିସ୍‌ର ଲାଠିମାଡ଼ ଏବଂ ହୋସ୍ ପାଇପ୍‌ରେ ପାଣିମାଡ଼ ସହିବାକୁ ପଡ଼ିଥିଲା । କବିତା ଗୋଟେ ଧାଡ଼ି ମନେପଡୁଛି –

''କାନନ ସହିଛି ପୋଲିସର ଲାଠି
କହିପାରି ନାହିଁ କଥା,
ଠେଙ୍ଗାର ମାଡ଼େ ଭଙ୍ଗା ହୋଇଛି
ନନ୍ଦିନୀ ନତ ମଥା ।''

ମୁଁ ଇଞ୍ଜିନିୟରିଂ କଲେଜରେ ପଢ଼ିଲାବେଳର କଥା । ମୋର ବଡ଼ବାପା ସବୁଜଯୁଗର କବି ଶ୍ରୀଯୁକ୍ତ ବୈକୁଣ୍ଠନାଥ ପଟ୍ଟନାୟକଙ୍କର ସାନପୁଅର କଟକରେ ଛୁରାମାଡ଼ରେ ମୃତ୍ୟୁ ହେଲା । ଆସାମୀର ପତ୍ତା ମିଳିଲା ନାହିଁ । ବଡ଼ବାପା ଦୁଃଖରେ ଭାଙ୍ଗିପଡ଼ିଲେ, ଯେତେବେଳେ ଖୋଦ୍ ଏସ୍.ପି. ତାଙ୍କୁ କହିଲେ, ''ସାର୍, ସେ ପିଲା ଉଚ୍ଚ ରାଜନେତାଙ୍କ ବାହୁଛାୟା ତଳେ ରହିଛି, ଗିରଫ କରିବା କଷ୍ଟ ହେବ ।'' ସେଇ ଦୁଃଖରେ ବଡ଼ବାପା ତାଙ୍କ ଭାଷାରେ ଅସତ୍ୟ ନଗରୀ 'କଟକ'କୁ ଛାଡ଼ି ତାଙ୍କ ଜନ୍ମସ୍ଥାନ ବଡ଼ାମ୍ବାକୁ ଚାଲିଗଲେ ଏବଂ ସେହିଠାରେ ଶେଷନିଃଶ୍ୱାସ ତ୍ୟାଗ କଲେ । ସେ ବହୁତ ସ୍ୱାଭିମାନୀ ଥିଲେ । ଏ କଥା ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ କାହିଁକି ଆଣିଲେନି ବୋଲି ପଚାରିବାରୁ କହିଲେ, ''ହଇରେ, କୁନି (ନନ୍ଦିନୀ ଦେବୀଙ୍କ ଡାକନାମ) କ'ଣ ମତେ ଜାଣିନି ? ପିଲାଟିବେଳୁ ମୁଁ ତାକୁ କୋଳରେ ଧରି ମଣିଷ କରିଛି । ବଡ଼ବାପା ଏବଂ କାଳିନ୍ଦୀଚରଣ ପାଣିଗ୍ରାହୀ ଅଭିନ୍ନ ଆତ୍ମା ଥିଲେ ଏବଂ ଗୋଟିଏ ପରିବାର ପରି ଚଳୁଥିଲେ । ସେ ନିଜେ ନ ଆସି ଗୋଟେ ଅଶୋକ ସ୍ତମ୍ଭ ଦିଆ କାଗଜରେ (ମୁଖ୍ୟମନ୍ତ୍ରୀଙ୍କ ଅଫିସ୍ ପ୍ୟାଡ୍‌ରେ) ମତେ ସମବେଦନା ପଠାଉଛି ।

ମୋର ମୁଖ୍ୟମନ୍ତ୍ରୀଙ୍କ ସହିତ ପ୍ରଥମ ଦେଖାହୁଏ ଫୁଲବାଣୀରେ । ମୁଁ ସେତେବେଳେ ଫୁଲବାଣୀର ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥାଏ । କଲେକ୍ଟର ଥା'ନ୍ତି ଶ୍ରୀ ପି.ଏସ୍. ରାଓ । ସେ ମୋର ବାଲ୍ୟବନ୍ଧୁ ଅମୂଲ୍ୟ ନନ୍ଦର ବ୍ୟାଚ୍‌ମେଟ୍ ହୋଇଥିବାରୁ ମତେ ବହୁତ ଭଲପାଉଥିଲେ । ସକାଳ ୬ଟାରେ ଫୋନ୍ ବାଜିଉଠିଲା । କଲେକ୍ଟର କହିଲେ, ''ପଟ୍ଟନାୟକବାବୁ, ମୁଖ୍ୟମନ୍ତ୍ରୀ ସର୍କିଟ୍ ହାଉସ୍‌ରେ ବସିଛନ୍ତି ।'' ଆପଣ ପାଞ୍ଚ ମିନିଟ୍ ଭିତରେ ଆସନ୍ତୁ । ତାଙ୍କ ସ୍ୱର ଥରିଲା ପରି ମତେ ଲାଗିଲା । ମୁଁ କାଳବିଳମ୍ବ ନ କରି ସର୍କିଟ୍ ହାଉସ୍‌ରେ ପହଞ୍ଚିଲି । ସେଠି ଯାହା ଦେଖିଲି, ମୋ' ଆଖିକୁ ବିଶ୍ୱାସ କରିପାରିଲିନି । ଗୋଟେ ଡବଲ୍ ସୋଫାରେ ବସିଛନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଏବଂ ତାଙ୍କ ପାଖରେ ତାଙ୍କର ସେକ୍ରେଟାରୀ ଶ୍ରୀ ରମାକାନ୍ତ ରଥ, ଆଇ.ଏ.ଏସ୍ । ରମାକାନ୍ତବାବୁ ମତେ କହିଲେ, ''ତମେ ଏଠି ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଅଛ ? ଦୁଇ କପ୍ କଫି ମିଳିପାରିବ ? ମୁଖ୍ୟମନ୍ତ୍ରୀ ସକାଳୁ ଚା' ଖାଇ ନାହାନ୍ତି ।'' ମୁଁ ଦେଖିଲି କଲେକ୍ଟର ଠାରୁ ଆରମ୍ଭ କରି ଖାନ୍‌ସମା ପର୍ଯ୍ୟନ୍ତ ସମସ୍ତେ ଏ ଅଚାନକ ଗସ୍ତରେ ସ୍ତବ୍ଧ । କାହା ପାଟିରୁ କଥା ବାହାରୁ ନାହିଁ । ମୁଁ କହିଲି, ''ସାର୍, ମୁଁ ପନ୍ଦର ମିନିଟ୍ ମଧ୍ୟରେ ଆସୁଛି ।''

ସେତେବେଳେ ଫୁଲବାଣୀକୁ ଓଡ଼ିଶାର ୧୩ ନମ୍ବର ଜିଲ୍ଲା କୁହାଯାଉଥିଲା । ବଜାରରେ ବେଳେ ବେଳେ ନେସ୍ କଫି ମିଳୁ ନ ଥାଏ । ଭାଗ୍ୟକୁ ମୁଁ ନେସ୍ କଫି ଖାଉଥିବାରୁ ଏବଂ ଘରେ ଗୋଟେ ଦେଶୀ ଗାଈ ଥିବାରୁ ମୋ ସ୍ତ୍ରୀ ସଙ୍ଗେ ସଙ୍ଗେ ତିନି ଚାରି କପ୍ କଫି କରି ଫ୍ଲାସ୍କରେ ଭର୍ତ୍ତି କରିଦେଲେ । ମୁଁ ତାଙ୍କୁ କହିଲି, ''କିଛି ପଚାର ନାହିଁ, ପରେ କହିବି । କେବଳ ଏତିକି ଜାଣିଥା ମୁଖ୍ୟମନ୍ତ୍ରୀ ସର୍କିଟ୍ ହାଉସ୍‌ରେ ବସିଛନ୍ତି ।''

ମୁଖ୍ୟମନ୍ତ୍ରୀ ଓ ସେକ୍ରେଟାରୀ କଫି ପିଇଲେ ଓ ରମାକାନ୍ତବାବୁ ଖାଲି କହିଲେ 'Good Coffee' । ତା'ପରେ ନିତ୍ୟକର୍ମ ସାରିବାପାଇଁ ସେମାନେ ନିଜ ନିଜ ରୁମ୍‌କୁ ଚାଲିଗଲେ । କଲେକ୍ଟର କହିଲେ – ଫୁଲବାଣୀର ଜଳକଷ୍ଟ ଏବଂ ନଳକୂପ କାମ କିପରି ଚାଲିଛି, ସେ କଥା ପ୍ରତ୍ୟକ୍ଷ ଭାବରେ ଅନୁଧ୍ୟାନ କରିବାପାଇଁ ସେ ଆସିଛନ୍ତି । ରାତିରେ ଭଞ୍ଜନଗର ପି.ଡବ୍ଲ୍ୟୁ.ଡି. ଆଇ.ବି.ରେ ରହି ଭୋର୍‌ରୁ ଫୁଲବାଣୀ ଟାଉନ୍‌ର ସବୁ ନଳକୂପ ବୁଲି ସର୍କିଟ୍ ହାଉସ୍‌କୁ ଆସିଛନ୍ତି । ପି.ଡବ୍ଲ୍ୟୁ.ଡି. ଆଇ.ବି.ରେ ମଧ୍ୟ ଭିଜିଲାନ୍ସ ଆଇ.ଜି/ଡି.ଆଇ.ଜି. ଙ୍କ ନାଁ'ରେ ରୁମ୍ ବୁକ୍ ହୋଇଥିଲା । ଏକଥା ଶୁଣି

ମତେ ଗୋଟିଏ ଡିଟେକ୍ଟିଭ୍ ଗପ ଶୁଣିବା ପରି ଲାଗିଲା । ମୁଖ୍ୟମନ୍ତ୍ରୀ ହେବା ଆଗରୁ ସେ ଖୋଦ୍ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ଅତି ନିକଟତର ଥିଲେ ଏବଂ Minister without portfolio ଥିଲେ ।

ଦଶଟା ବେଳକୁ କନ୍‌ଫରେନ୍ସ ହଲ୍‌ରେ ମିଟିଂ ଆରମ୍ଭ ହେଲା । ଜନସ୍ୱାସ୍ଥ୍ୟ ବିଭାଗର ମୁଖ୍ୟଯନ୍ତ୍ରୀ ଶ୍ରୀ ଡି.ଏନ୍. ସିଂହଦେଓ ଏବଂ ଅନ୍ୟ ଉଚ୍ଚପଦସ୍ଥ କର୍ମଚାରୀମାନେ ଉପସ୍ଥିତ ଥାଆନ୍ତି । ଭୀଷଣ ଗାଳି ହେଲା ଏବଂ ନିର୍ଦ୍ଦିଷ୍ଟ ତାରିଖରେ ସବୁ ନଳକୂପ କାମ ସାରିବାପାଇଁ ସେ କଡ଼ା ନିର୍ଦ୍ଦେଶ ଦେଲେ । ସେତେବେଳକୁ ମୁଣ୍ଡରେ ଗୋଟେ ଓଢ଼ଣା ଦେଇ କାମ କରୁଥିବା ଶ୍ରମିକମାନଙ୍କଠାରୁ କାମ କିପରି ଚାଲିଛି, ଓଭରସିୟର ଇଞ୍ଜିନିୟରମାନେ କେତେ ଦିନରେ ଥରେ ଆସୁଛନ୍ତି, ସବୁକଥା ଟିକିନିଖି ବୁଝିନେଇଥିଲେ । କହିବା ବାହୁଲ୍ୟ, ମୁଖ୍ୟମନ୍ତ୍ରୀଙ୍କର ଏହି ତୋଫାନୀଗସ୍ତ ଅଫିସର ମହଲରେ ଗୋଟେ କୋକୁଆଭୟ ଖେଳାଇଦେଲା ଏବଂ ସରକାରୀ କଳ ତତ୍ପର ହୋଇଉଠିଲା । ନନ୍ଦିନୀ ଶତପଥୀଙ୍କର ଏଭଳି କାମ କରିବା ଶୈଳୀ ଦେଖି ଆମେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲୁ ।

ଫୁଲବାଣୀରୁ ବଦଳି ହୋଇ ମୁଁ ଓଡ଼ିଶାର ଉପାନ୍ତ ଅଞ୍ଚଳ ରାଇରଙ୍ଗପୁରରେ ଏସ୍.ଡି.ଓ. ଥାଏ । ମୁଖ୍ୟମନ୍ତ୍ରୀଙ୍କର ଗସ୍ତକ୍ରମ ଆସିଲା ଏବଂ ମହୁଲଡିହା ପି.ଡବ୍ଲ୍ୟୁ.ଡି. ଡାକବଙ୍ଗଳାରେ ରାତ୍ରିଯାପନର ପ୍ରୋଗ୍ରାମ୍ ଥିଲା । ମୁଁ ଟିକିଏ ବିଚଳିତ ହୋଇଗଲି । ଦୁର୍ଭାଗ୍ୟକୁ ମୋର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଶ୍ରୀ ଏମ୍. କୋରା ଛୁଟିନେଇ କେରଳ ଚାଲିଯାଇଥା'ନ୍ତି । କଲେକ୍ଟର ଶ୍ରୀଯୁକ୍ତ ବିବେକାନନ୍ଦ ପଟ୍ଟନାୟକ ମୋର କିଛି ଅସୁବିଧା ହେବ କି ବୋଲି ପଚାରିଲେ । ମୁଁ କହିଲି, ''ସାର୍, ମୁଁ ସବୁ ମ୍ୟାନେଜ୍ କରିଦେବି । କେବଳ ମୋର ଗୋଟେ ଭଲ ଜିପ୍ ଦରକାର ।'' ମୋ ଜିପ୍‌ଟା ତିରିଶ ବର୍ଷର ପୁରୁଣା ଏବଂ ରାସ୍ତାରେ ଖରାପ ହେଉଥାଏ ।

ସେ ସଙ୍ଗେ ସଙ୍ଗେ ତା'ର ବନ୍ଦୋବସ୍ତ କରିଦେଲେ । ମୁଁ ମୋର ଜେ.ଇ. ଫକୀରମୋହନ ପୃଷ୍ଟିଙ୍କୁ ଧରି ଜାମ୍‌ସେଦପୁର ଗଲି ଆଇ.ବି. ଲାଗି ଆବଶ୍ୟକୀୟ ଜିନିଷପତ୍ର କିଣିବାପାଇଁ । ସେତେବେଳେ ରାଇରଙ୍ଗପୁରରେ କିଛି ମିଳୁ ନ ଥାଏ, ଯାହା କିଣିବ 'ଟାଟା' ଯିବାକୁ ପଡ଼ିବ । ଆମ ବର୍ଡର ତିରିଙ୍ଗଠାରୁ ଟାଟା ସହରର ଦୂରତା ମାତ୍ର ୩୫ କି.ମି. । ରାସ୍ତା ଅତି କଦର୍ଯ୍ୟ । ଦେଢ଼ ଘଣ୍ଟାରୁ ଦୁଇ ଘଣ୍ଟା ଲାଗେ ।

ମୁଁ ସଙ୍ଗେ ସଙ୍ଗେ ମୋ ଫୋନ୍‌ରୁ ପୂର୍ତ୍ତ ବିଭାଗ ସେକ୍ରେଟାରୀ ଶ୍ରୀଯୁକ୍ତ ଆନନ୍ଦ ଚନ୍ଦ୍ର ପାଢ଼ୀଙ୍କ ସହିତ ଆଇ.ବି.ରେ ଗୋଟିଏ ଟେଲିଫୋନ୍ ଲଗାଇବାକୁ ଅନୁମତି ଚାହିଁଲି । ସେଇ ବର୍ଷ ଆଇ.ଏ.ଏସ୍. ଅଫିସରଙ୍କ ବଦଳରେ ଆମ ନିଜ ଡିପାର୍ଟମେଣ୍ଟର ସର୍ବୋଚ୍ଚ ଯନ୍ତ୍ରୀ ଓ୍ୱାର୍କସ ସେକ୍ରେଟାରୀ ହେବାର ବ୍ୟବସ୍ଥା ନୂଆ କରି ହୋଇଥାଏ । ସେ ବହୁତ କଡ଼ା ଲୋକ । ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର କିମ୍ବା ସୁପରିଣ୍ଟେଣ୍ଡେଣ୍ଟ୍ ଇଞ୍ଜିନିୟରମାନେ ତାଙ୍କ ସହିତ କଥା ହେବା ପାଇଁ ଡରନ୍ତି । ମାତ୍ର ମୁଁ ସୁନାବେଡ଼ା ପ୍ରୋଜେକ୍ଟରେ ତାଙ୍କ ଅଧୀନରେ କାମ କରିଥିବାରୁ ସାହସ ଥାଏ । ସେ କହିଲେ, "ନୂଆ ଟେଲିଫୋନ୍‌ର ଅନୁମତି କିଏ ଦିଏ ଜାଣିଛ ?" ମୁଁ କହିଲି, "ସାର୍, Ports and Commerce Department; ମାତ୍ର ଏଟା ନିତାନ୍ତ ଜରୁରୀ । ବଙ୍ଗଳାଟା ଟାଉନ୍ ଠାରୁ ତିନି କି.ମି. ଦୂର ନିଛାଟିଆ ଜାଗାରେ । ମୁଖ୍ୟମନ୍ତ୍ରୀଙ୍କ ନିରାପତ୍ତା ଦୃଷ୍ଟିରୁ ତଥା ଅଫିସିଆଲ୍ କାମ ଲାଗି ଗୋଟେ ଟେଲିଫୋନ୍ ନିହାତି ଦରକାର ।" ସେ କହିଲେ, "ଠିକ୍ ଅଛି । 'କୋରା' (M.Korah) ଆସିଲେ କହିବ ସବୁକଥା ଲେଖିକରି ଆପ୍ରୋଭାଲ୍ ଲାଗି ଗୋଟେ ଡି.ଓ. ଲେଟର ଲେଖିଦେବ । ବର୍ତ୍ତମାନ ଷ୍ଟକ୍‌କୁ ଚାର୍ଜ କରି ଲଗାଇଦିଅ ।" ମୁଁ ଟେଲିଫୋନ୍ ବିଭାଗକୁ କହି ସେଇଦିନ ରାତିସୁଦ୍ଧା ସଂଯୋଗ ନେଇଗଲି । ଟେଲିଫୋନବାଲାଙ୍କ ସହିତ ମୋର ସଦାବେଳେ ସମ୍ପର୍କ ଭଲ ଥାଏ । ସେତେବେଳେ ଆଜିକାଲି ପରି ମୋବାଇଲ୍ ଫୋନ୍ ପ୍ରଚଳନ ନ ଥିଲା ।

ମୁଖ୍ୟମନ୍ତ୍ରୀ ଆସିଲେ । ରାଇରଙ୍ଗପୁର ପରି ଗୋଟେ ଉପାନ୍ତ ଅଞ୍ଚଳର ଛୋଟ ଡାକବଙ୍ଗଳାର ଆଇ.ବି.ର ସାଜସଜ୍ଜା ଦେଖି ବହୁତ ଖୁସି ହେଲାପରି ମତେ ଲାଗିଲା । ଟେଲିଫୋନ୍‌ଟା ଥିବାରୁ ତାଙ୍କ ଅଫିସ୍ ସଙ୍ଗେ ଯୋଗାଯୋଗ କରିବାକୁ ବହୁତ ସୁବିଧା ହେଲା । ମୁଁ ତାଙ୍କୁ କହିଲି ଯେ "ମ୍ୟାଡାମ୍ ! ମୁଖ୍ୟମନ୍ତ୍ରୀଙ୍କ ଗସ୍ତ ଲାଗି ସ୍ୱତନ୍ତ୍ର ଅନୁମତି ନେଇ ମୁଁ ଏ'ଟା ଗତକାଲି ରାତିରେ ଲଗାଇଛି ।" ସେ କିଛି କହିଲେ ନାହିଁ, ଖାଲି ଟିକିଏ ହସିଲେ । ରାଇରଙ୍ଗପୁରରୁ ଟାଟା ରାସ୍ତାର ଅବସ୍ଥା କଥା ଆଗରୁ କହିଛି । ରାଇରଙ୍ଗପୁରରେ ମୁଁ ବହୁତ ଲୋକପ୍ରିୟ ଥିଲି । ଗୋବିନ୍ଦରାମ୍ ଅଗ୍ରଓ୍ୱାଲ ଏବଂ ସହରର ଅନ୍ୟ କେତେକ ବିଶିଷ୍ଟ ବ୍ୟକ୍ତି ମତେ ଅନୁରୋଧ କଲେ ଯେ ମୁଖ୍ୟମନ୍ତ୍ରୀ ତିରିଙ୍ଗରେ ମିଟିଂ କରୁଛନ୍ତି । ବିହାର ସୀମା ଆଉ ମାତ୍ର ୩ କି.ମି. । ଆପଣ ଚେଷ୍ଟାକରି ବିହାର ଭିତରେ ତାଙ୍କୁ ଦୁଇ ତିନି କି.ମି. ରାସ୍ତା ଦେଖାଇଦିଅନ୍ତୁ । ନିଜ ଆଖିରେ ରାସ୍ତାର ଦୁରବସ୍ଥା ଦେଖିଲେ ସେ ନିଶ୍ଚୟ କିଛି ନା କିଛି କରିବେ ।"

ମୁଁ କଲେକ୍ଟରଙ୍କ ସହ ଏ ବିଷୟରେ ପରାମର୍ଶ କଲି; ମାତ୍ର ସେ ପ୍ରୋଟକଲର ଆଳ ଦେଖାଇ ଏଟା ସମ୍ଭବପର ନୁହେଁ ବୋଲି ମନା କଲେ । ମୁଁ ତାଙ୍କୁ କହିଲି, "ସାର୍, ଏଭଳି ସୁବର୍ଣ୍ଣ ସୁଯୋଗ ଜୀବନରେ ଥରେ ମାତ୍ର ଆସେ। ଆପଣ ମନା କରନ୍ତୁନି । ମୁଁ ନିଜେ ମୁଖ୍ୟମନ୍ତ୍ରୀଙ୍କୁ ବୁଝାଇଦେବି ।" ତା'ପରେ ଗୋଟେ ସ୍କେଚ୍ ମ୍ୟାପ୍ କରି କିପରି ମିଟିଂ ଆରମ୍ଭ ହେବାର ପନ୍ଦର ମିନିଟ୍ ମଧ୍ୟରେ ଆମେ ଯାଇ ଫେରିପାରିବା ତାଙ୍କୁ କହିଲି । ଏ ସମୟରେ ମୁଖ୍ୟମନ୍ତ୍ରୀ ରୁମ୍‌ରୁ ବାହାରିଆସିଲେ ଏବଂ ଆମକୁ ଏକାଠି ଦେଖି କହିଲେ, "ବିବେକ ! What the young Ex. Engineer saying?" କୋରା ସାହେବଙ୍କୁ ସେ ଆଗରୁ ଦେଖି ନ ଥିବାରୁ ଏବଂ ମତେ ଚିହ୍ନି ନ ଥିବାରୁ ମତେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ବୋଲି ଭ୍ରମ କରିଥିଲେ । ମୁଁ ତାଙ୍କୁ ସବୁକଥା ବୁଝାଇଲି ଏବଂ ପନ୍ଦର ମିନିଟ୍ ଅଧିକ ସମୟ ନେବି ନାହିଁ ବୋଲି କହିଲି । ସମଗ୍ର ରାଇରଙ୍ଗପୁରବାସୀ ଏହି ସଡ଼କ ଉପରେ ନିର୍ଭର କରନ୍ତି ବୋଲି ବୁଝାଇଦେଲି । ସେ କେବଳ ଏତିକି କହିଲେ, "All right" ।

ମଧ୍ୟାହ୍ନଭୋଜନ ଖାଇସାରିବା ପରେ ଘଣ୍ଟାଏ ବିଶ୍ରାମ କରି ଚାରିଟା ବେଳକୁ ଆମେମାନେ ମିଟିଂ ଲାଗି ତିରିଙ୍ଗ ଅଭିମୁଖେ ବାହାରିଲୁ । ମୁଖ୍ୟମନ୍ତ୍ରୀଙ୍କ ଡ୍ରାଇଭରକୁ କହିଥାଏ, "ଆମ ରାସ୍ତା ବହୁତ ଭଲ ଅଛି । ତମେ ଷାଠିଏ ସତୁରି କି.ମି. ବେଗରେ ନବ । ଓଡ଼ିଶା ସୀମା ଶେଷ ବୋଲି ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି, ସେଇଠୁ ବିହାର ସୀମା ଆରମ୍ଭ । ତା' ଭିତରେ ପୂରାଇଦେବ । ସେ କହିଲା, "ସାର୍, ମୁଁ ଶୁଣୁଛି ସେ ରାସ୍ତା କୁଆଡ଼େ ବହୁତ ଖରାପ ।" ମୁଁ କହିଲି ସେଇଥିପାଇଁ ତ ଏତେ ପରିଶ୍ରମ । ମୁଖ୍ୟମନ୍ତ୍ରୀ ଥରେ ନିଜ ଆଖିରେ ଦେଖନ୍ତୁ । ସେ ହଁ କଲା ।

ତା'ପରେ ଯାହା ଘଟିଲା ଭାବିଲାବେଳକୁ ମୋ ଦେହ ଏବେବି ଶିହରି ଉଠୁଛି । ଗାଡ଼ିଟା ବିହାର ଭିତର ଦେଇ ପଶିଲାମାତ୍ରେ ଭୀଷଣ ଜୋର୍‌ରେ ଦୁଇ କଡ଼କୁ ହଲିବାକୁ ଲାଗିଲା । ପଛରେ ସାତ ଆଠଟି ଗାଡ଼ି ଯାଉଥିବାରୁ ଭୀଷଣ ଧୂଳି ଉଡୁଥାଏ କିଛି ସମୟପାଇଁ କିଛି ଦେଖାଗଲା ନାହିଁ । ନନ୍ଦିନୀ ଦେବୀ ଅଧମାଇଲ ଗଲାପରେ ଗାଡ଼ି ରଖିଲେ ଏବଂ ପାଖରେ ବସିଥିବା ଜିଲ୍ଲାପାଳଙ୍କୁ କହିଲେ, "Where is that young Executive Engineer"? ମୁଁ ଦୁଇଟା ତିନିଟା ଗାଡ଼ି ପଛରେ ତାଙ୍କୁ ଅନୁସରଣ କରୁଥିଲି । ଦୌଡ଼ିଲି ଏବଂ ତାଙ୍କ ପାଖକୁ ଗଲି । ସେ ମତେ ତୀକ୍ଷ୍ଣ ଦୃଷ୍ଟିରେ ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଚାହିଁଲେ । ତା'ପରେ କହିଲେ, "Youngman!

Are you now satisfied ?'' ମୁଁ ହଁ କଲାରୁ କହିଲେ "Let's go back" । ସେଦିନ ମିଟିଂରେ ବିରାଟ ଜନସଭାକୁ ସମ୍ବୋଧନ କରି ନନ୍ଦିନୀ ଶତପଥୀ ଗୋଟେ ଉଚ୍ଚକୋଟୀର ଭାଷଣ ଦେଲେ ଏବଂ ଓଡ଼ିଶାରେ ତଥା ଦିଲ୍ଲୀରେ ତାଙ୍କ ବିରୋଧରେ ଚାଲିଥିବା ଷଡ଼୍ଯନ୍ତ ବିଷୟରେ ସୂଚନା ଦେଲେ । ତା'ର ଅଳ୍ପଦିନ ପରେ ସେ ନିଜ ନିର୍ବାଚନମଣ୍ଡଳୀ ଢେଙ୍କାନାଳ ଠାରେ ଭାଷଣ ଦେଉଥିବା ସମୟରେ, ଦିଲ୍ଲୀରୁ ଗୋଟେ ଖବର ପାଇଲେ, ଯେଉଁଥିରେ ତାଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାପାଇଁ ନିର୍ଦ୍ଦେଶ ଥିଲା । ସେ ଭୁବନେଶ୍ୱର ଆସି ସଙ୍ଗେ ସଙ୍ଗେ ଇସ୍ତଫା ଦେଇଦେଲେ । ବିନାୟକ ଆଚାର୍ଯ୍ୟ ମୁଖ୍ୟମନ୍ତ୍ରୀ ହେଲେ । ପରେ ଅମୂଲ୍ୟ ନନ୍ଦ (ପୁରୀର ତତ୍କାଳୀନ କଲେକ୍ଟର) କହିଲା, ''ଇସ୍ତଫା ଦେଇ ସେ ସଙ୍ଗେ ସଙ୍ଗେ ପୁରୀ ଚାଲିଗଲେ । କଲେକ୍ଟର, ଏସ୍.ପି.ଙ୍କୁ କହିଲେ– ''ମତେ ଟିକିଏ ଏକୁଟିଆ ରହିବାକୁ ଦିଅ । ତା'ପରେ ସେ ପିଲାଙ୍କ ପରି ଠୁଙ୍ଗାରେ ଚୀନାବାଦାମ କିଣି ପୁରୀ ବେଳାଭୂମିରେ ବୁଲିବାକୁ ଲାଗିଲେ ।''

ଡାକବଙ୍ଗଳାକୁ ଫେରି ମୁଖ୍ୟମନ୍ତ୍ରୀ ସେ ରାସ୍ତା ବିଷୟରେ ଗୋଟିଏ ସର୍ଟ୍ ନୋଟ୍ ଏବଂ ସ୍କେଚ୍ ତିଆରି କରି ସଙ୍ଗେ ସଙ୍ଗେ ତାଙ୍କୁ ଦେବାପାଇଁ କହିଲେ । ମୁଁ ତାଙ୍କୁ ଦେବାପରେ ସେ ସେଠାରେ ତାଙ୍କ ସଙ୍ଗେ ଆସିଥିବା ରେଭେନ୍ୟୁ ଡିଭିଜନାଲ୍ କମିସନର୍ ଶ୍ରୀ ନଳିନୀ ପଣ୍ଡାଙ୍କୁ ଗୋଟେ ଚିଠିର ଡିକ୍ଟେସନ୍ ନେବାପାଇଁ କହିଲେ । ସମ୍ପୂର୍ଣ୍ଣ ଚିଠି ତ ମୋର ମନେ ନାହିଁ; ମାତ୍ର ତା'ର ପ୍ରଥମ ଧାଡ଼ି ଏପରି ଥିଲା, "My dear Jagannath Misraji, ନିଜ ଆଖିରେ ନ ଦେଖିଥିଲେ ଭାରତବର୍ଷରେ ଏଭଳି ରାସ୍ତା ଅଛି ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥାନ୍ତି ।'' ଏ ରାସ୍ତାକୁ ତୁରନ୍ତ ମରାମତି କରିବାପାଇଁ ସେଥିରେ ସେ ଅନୁରୋଧ କରିଥିଲେ ।

ଚିଠି ଲେଖିବାର ଅଳ୍ପଦିନ ପରେ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । କିଛିମାସ ପରେ ଶ୍ରୀ ଜଗନ୍ନାଥ ମିଶ୍ର ମଧ ଇସ୍ତଫା ଦେଲେ; ମାତ୍ର ସେ ରାସ୍ତା ସମ୍ପୂର୍ଣ୍ଣଭାବେ ମରାମତି ହୋଇ ନୂଆ ରାସ୍ତା ହୋଇଗଲା । ରାଇରଙ୍ଗପୁରବାସୀଙ୍କର ଦୀର୍ଘଦିନର ଆଶା ପୂରଣ ହେଲା । ମୁଁ ସେଠାରୁ ବଦଳିହୋଇ କରଞ୍ଜିଆରେ ଥିବା ବେଳେ ଗୋବିନ୍ଦବାବୁ ଓ ଅନ୍ୟ କେତେଜଣ ଭଦ୍ରବ୍ୟକ୍ତି ମତେ ଏଥିପାଇଁ ଧନ୍ୟବାଦ ଦେବାକୁ ଆସିଲେ । ଏତେ କମ୍ ବୟସରେ ଏଭଳି ଦୁଃସାହସ କରିବାକୁ ମୋର କେମିତି ସାହସ ହେଲା, ତା' ଭାବିଲାବେଳକୁ ମତେ ଏବେ ନିଜକୁ ମଧ

ଆଶ୍ଚର୍ଯ୍ୟ ଲାଗୁଛି । ପରେ କଲେକ୍ଟର ମତେ କହିଲେ, ''ମୃତ୍ୟୁଞ୍ଜୟ ! ତମେ ସମସ୍ତଙ୍କୁ ବିପଦରେ ପକାଇବ । ରାଞ୍ଚିରୁ କମିସନରଙ୍କଠାରୁ ମତେ ଚିଠି ଆସିଛି, କେଉଁ ପରିସ୍ଥିତିରେ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ବିହାର ମାଟିରେ ପାଦଦେଲେ, ଅଥଚ ବିହାର ସରକାର ତାଙ୍କର ସ୍ୱାଗତ କରିବାର ସୁଯୋଗ ପାଇଲେନି. ଏହାର ଜବାବ ଦେବାପାଇଁ ।''

ମାତ୍ର ଇଂରେଜୀରେ ଗୋଟିଏ କଥା ଅଛି, "All is well that ends well." ସେଦିନ କିଛି ଅଘଟଣ ଘଟିଥିଲେ ମୁଁ ଚାକିରିରୁ ନିଶ୍ଚୟ ସସ୍‌ପେଣ୍ଡ ହୋଇଥା'ନ୍ତି । ସେପରି କରିବା ମୋର ଦାୟିତ୍ୱ ମଧ ନ ଥିଲା; ମାତ୍ର ମୁଁ ଜୀବନରେ ଅନୁଭବ କରିଛି, ଯେଉଁଟା କଲେ ସାଧାରଣ ଜନତାର ଉପକାର ହେବ, ସେଟା କରିବା ଉଚିତ । ସେଥିଲାଗି ସରକାରୀ ନୀତିନିୟମ ଟିକିଏ ଭାଙ୍ଗିଲେ ମଧ ଡରିବାର କିଛି ନାହିଁ । ଏ ବିଷୟରେ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ମୋର ଆଦର୍ଶ ।

ନନ୍ଦିନୀ ଦେବୀ ଆଉ ନାହାନ୍ତି; ମାତ୍ର ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଏବଂ ସାଧାରଣ ଖଟିଖିଆ ଜନତାଙ୍କ ପ୍ରତି ଦରଦ ତାଙ୍କୁ ଚିରଦିନ ଅମର କରି ରଖିବ । ସେ ଥିଲେ ଓଡ଼ିଶାର ଲୌହମାନବ ।

ଭଗବାନ୍ ତାଙ୍କ ଆତ୍ମାକୁ ଶାନ୍ତି ଦିଅନ୍ତୁ ।

❑❑❑

# ନୀଳମଣି ରାଉତରାୟ
# ଓଡ଼ିଶାର ଭଦ୍ର ମୁଖ୍ୟମନ୍ତ୍ରୀ
# ଏକ ଅଭୁଲା ସ୍ମୃତି

ନୀଳମଣି ରାଉତରାୟଙ୍କ ସହିତ ମୋର ପ୍ରତ୍ୟକ୍ଷ ପରିଚୟ ନ ଥିଲା । ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ଏବଂ ବିଜୁ ପଟ୍ଟନାୟକ କେନ୍ଦ୍ରରେ କ୍ୟାବିନେଟ୍ ମନ୍ତ୍ରୀ । ଥରେ ଦୁଇ ଜଣଙ୍କର ଏକାଠି ଯଶୀପୁର ବଙ୍ଗଳାକୁ ଗସ୍ତକର୍ମ ସ୍ଥିର ହେଲା । ମୁଁ ସେତେବେଳକୁ କରଞ୍ଜିଆର ପୂର୍ତ୍ତ ବିଭାଗର ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥାଏ । ଯଶୀପୁର ବଙ୍ଗଳା ମୋ ଅଧୀନରେ ଥାଏ । ମୁଁ ସକାଳୁ ସକାଳୁ ଯାଇ ଦୁଇଜଣଯାକଙ୍କର ରୁମ୍, ବାଥ୍ରୁମ୍ ଆଦି ଠିକ୍ କରୁଥାଏ । ଏତିକିବେଳେ ମୁଖ୍ୟମନ୍ତ୍ରୀଙ୍କୁ ଗାର୍ଡ ଅଫ୍ ଅନ୍‌ର ଦେବାଲାଗି ଜଣେ ଡି.ଏସ୍.ପି.ଙ୍କ ନେତୃତ୍ୱରେ ପୋଲିସ ଟିମ୍ ପହଞ୍ଚିଲେ । ସେମାନେ ଡାକବଙ୍ଗଳା ସାମ୍ନାରେ ଥିବା ଖାଲି ଜାଗାରେ ଯେଉଁଠି ଛଅ ଜଣ ଗାର୍ଡ ଠିଆ ହୋଇପାରିବେ, ସେଠି ଚୂନରେ ଗୋଟେ ମୁଣ୍ଡଳା ବୁଲାଇଲେ । ଉଦ୍ଦେଶ୍ୟ, ମୁଖ୍ୟମନ୍ତ୍ରୀ ସେଠି ଠିଆହୋଇ ସାଲ୍ୟୁଟ୍ ନେବେ । ମୋର ପିଲାଦିନୁ ଗୋଟେ ବଦଭ୍ୟାସ, ମୁଁ ଗୋଟେ ଭୁଲ୍ ଦେଖିଲେ ସେଟା ମୋର କାମ ନ ହେଲେ ବି ବତାଇଦିଏ । ମୁଁ ଡି.ଏସ୍.ପି.ଙ୍କ ପାଖକୁ ଯାଇ କହିଲି, ''ମୁଖ୍ୟମନ୍ତ୍ରୀଙ୍କ ସାଙ୍ଗରେ ବିଜୁବାବୁ ଆସୁଛନ୍ତି । ସେ ଥାଉ ଥାଉ ମୁଖ୍ୟମନ୍ତ୍ରୀ କ'ଣ ସେଠି ଏକା ସାଲ୍ୟୁଟ୍ ନେବେ ? ଆପଣ ପାଖାପାଖି ଦୁଇଟା ମୁଣ୍ଡଳାର ଚିହ୍ନ ଦିଅନ୍ତୁ, ତା'ହେଲେ ଉଭୟେ ଏକାଥରକେ ସାଲ୍ୟୁଟ୍ ନେଇଯିବେ । ନଚେତ୍ କଥାଟା ଅସୁନ୍ଦର ହେବ ।'' ସେ ମୋତେ ଗୋଟେ ୱ୍ୟାରଲେସ୍ କାଢ଼ି ଦେଖାଇଲେ ଏବଂ ସେଥିରେ କେବଳ ମୁଖ୍ୟମନ୍ତ୍ରୀଙ୍କ ଗାର୍ଡ ଅଫ୍ ଅନ୍‌ର ଲାଗି ବ୍ୟବସ୍ଥା କରିବାକୁ ନିର୍ଦ୍ଦେଶ ଥିଲା ।

ମୁଖ୍ୟମନ୍ତ୍ରୀ ଓ ବିଜୁବାବୁ ଏକାଠି କାର୍‌ରୁ ଓହ୍ଲାଇଲେ । ବିଜୁବାବୁ ତାଙ୍କ ଚିରାଚରିତ ଢଙ୍ଗରେ ସିଧା ଯାଇ ସେ ମୁଣ୍ଡଳା ଭିତରେ ଠିଆହେଲ ଏବଂ ନୀଳମଣିବାବୁ ବାଧ ହୋଇ ତାଙ୍କ ପଛରେ ଠିଆହେଲେ । ଗାର୍ଡ ଅଫ ଅନ୍‌ର ଦିଆହେଲା । ପରେ ଯେତେବେଳେ ଏସ୍.ପି.ଙ୍କ ସାମ୍ନାରେ ଏକଥା ପଡ଼ିଲା, ଡି.ଏସ୍.ପି. କହିଲେ, ''ସାର୍, ପି.ଡବ୍ଲ୍ୟୁ.ଡି ଏସ୍.ଡି.ଓ. ଠିକ୍ କହୁଥିଲେ, ଦୁଇଟା ମୁଣ୍ଡଳା କରିଥିଲେ ଭଲ ହୋଇଥା'ନ୍ତା । ମାତ୍ର ମୁଁ ୱ୍ୟାରଲେସ୍‌ରେ ଅର୍ଡର ଅନୁସାରେ କଲି ।'' ଏସ୍.ପି. କହିଲେ ବେଳେବେଳେ ପରିସ୍ଥିତି ଅନୁଯାୟୀ ବିଚାର କରିବା ଦରକାର ହୋଇଥାଏ । ମୋର ନୀଳମଣି ରାଉତରାୟଙ୍କ ସଙ୍ଗେ ସେଇ ପ୍ରଥମ ସାକ୍ଷାତ ।

ସେ ଡାକବଙ୍ଗଳାରେ ଗୋଟେ ମଜା କଥା ହେଲା । ମୋ' ସାନଭାଇ ଗୋପବନ୍ଧୁ ସେ ବର୍ଷ ଆଇ.ଏ.ଏସ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥାଏ । ତା'ର ଉତ୍ତରପ୍ରଦେଶ କ୍ୟାଡର ହୋଇଥାଏ । ତାକୁ ସୁବିଧା ଦେଖି ଓଡ଼ିଶା କ୍ୟାଡ୍‌ର କରିବାକୁ ମୋ ବାପା ମତେ କହିଥା'ନ୍ତି । ସୁନାବେଡ଼ାରେ ମିଗ୍ କାରଖାନାରେ କାମ କରିବା ଦିନୁ ବିଜୁବାବୁ ମତେ ଜାଣିଥିଲେ । ମୁଁ ଦେଖିଲି ଏ'ଟା ସୁବର୍ଣ୍ଣ ସୁଯୋଗ । ମୁଁ ବିଜୁବାବୁଙ୍କ ପାଖକୁ ଯାଇ କହିଲି, ସାର୍ ! ମୋ ସାନଭାଇ ଏ ବର୍ଷ ଆଇ.ଏ.ଏସ୍. ପାଇଛି । ସେ କହିଲେ, 'ଭେରି ଗୁଡ୍' । ତା'ପରେ ମୁଁ କହିଲି, ସାର୍, ତାକୁ ଓଡ଼ିଶା ଆଣିଲେ ମୋ ବାପାମାଆ ବହୁତ ଖୁସି ହୁଅନ୍ତେ । ସେ ମୁଖ୍ୟମନ୍ତ୍ରୀଙ୍କ ଆଡ଼କୁ ଅନେଇ କହିଲେ, 'ନୀଳମଣି ! ଓଡ଼ିଆଙ୍କର ଗୁଣ ବାହାରିଲା ।' ତା'ପରେ ତା'ର କେଉଁ ରାଜ୍ୟ ହୋଇଛି ବୋଲି ପଚାରିଲେ । ଉତ୍ତରପ୍ରଦେଶ ହେଇଛି ଶୁଣି ଖୁସି ହେଲେ ଏବଂ କହିଲେ, "Let him rule U.P." । ସେ ସେଠି ୩୪ ବର୍ଷ କାଳ ସୁନାମର ସହିତ କାମ କରି ଅବସର ନେଇଛି । ରାଜନୀତିକ କାରଣ ଯୋଗୁଁ ମୁଖ୍ୟମନ୍ତ୍ରୀ ତାକୁ ଚିଫ୍ ସେକ୍ରେଟାରୀ କଲେ ନାହିଁ । ତା'ର ଓଡ଼ିଶା କ୍ୟାଡ୍‌ର ହେବା କଥା ସେତିକିରେ ରହିଲା ।

ଜରୁରୀ ପରିସ୍ଥିତି ଜାରି ହେବାର ଦୁଇ ବର୍ଷ ପରେ ଇନ୍ଦିରା ଗାନ୍ଧୀ ବିପୁଳ ଭୋଟ ପାଇ ପୁଣି ଶାସନ କ୍ଷମତାକୁ ଫେରିଲେ । ଭାରତର ଛଅ ସାତଟା ରାଜ୍ୟରେ ଜନତା ସରକାର ଥାଏ । ଓଡ଼ିଶା ତା' ଭିତରୁ ଗୋଟିଏ । ୧୯୭୯ ମସିହାର କଥା । ମୁଖ୍ୟମନ୍ତ୍ରୀଙ୍କର ଏଥର କରଞ୍ଜିଆ ସବ୍‌ଡିଭିଜନକୁ ଗସ୍ତ ପଡ଼ିଲା । ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ହିସାବରେ ଆମ ଡାକବଙ୍ଗଳାକୁ ରଙ୍ଗ କରି, ପରଦା ଇତ୍ୟାଦି ବଦଳ କରିବାରେ ଆମେମାନେ ତତ୍ପର ହୋଇପଡ଼ିଲୁ । ମୁଖ୍ୟମନ୍ତ୍ରୀ ଠିକ୍ ସମୟରେ ସନ୍ଧ୍ୟା ପୂର୍ବରୁ ପହଞ୍ଚିଲେ ଏବଂ ଗାର୍ଡ ଅଫ୍ ଅନର୍ ନେବାପରେ ତାଙ୍କ କକ୍ଷକୁ ଯାଇ ଟିକେ ବିଶ୍ରାମ ନେଲେ । ସେଠି ତାଙ୍କର ସ୍ଥାନୀୟ ମନ୍ତ୍ରୀ (ନାଁ'ଟା ମୋର ଠିକ୍ ମନେପଡୁନି, ବୋଧହୁଏ ରଘୁନାଥ ହେମ୍ବ୍ରମ), କଲେକ୍ଟର, ଏସ୍.ପି. ଏବଂ ଅନ୍ୟାନ୍ୟ ଅଫିସରମାନେ ବାହାର ବାରଣ୍ଡାରେ ଚୌକିରେ ବସି ଗପସପ କରୁଥାଆନ୍ତି । ମୋର ଯେତେଦୂର ମନେପଡୁଛି, ସେତେବେଳେ ଶ୍ରୀ ପ୍ରଫୁଲ୍ଲ ପଣ୍ଡା ଜିଲ୍ଲାପାଳ ଏବଂ ଶ୍ରୀ ବି. ବି. ସିଂହ ମୟୂରଭଞ୍ଜ ଏସ୍.ପି. ଥିଲେ । ଏସ୍.ପି.ଙ୍କ ସହିତ ମୋର ବ୍ୟକ୍ତିଗତ ବନ୍ଧୁତା ଥାଏ ।

ରାତ୍ରି ଆଠଟା ବେଳକୁ କଥା ହେଲା ମୁଖ୍ୟମନ୍ତ୍ରୀ କୀଚକେଶ୍ୱରୀଙ୍କୁ ଦର୍ଶନ କରିବାକୁ ଯିବେ । କୀଚକେଶ୍ୱରୀ ମୟୂରଭଞ୍ଜର ଅଧିଷ୍ଠାତ୍ରୀ ଦେବୀ । ମତେ କାହିଁକି କଥାଟା ଅଡୁଆ ଅଡୁଆ ଲାଗିଲା । ମୁଁ ଏସ୍.ପି.ଙ୍କୁ କହିଲି, "ମୁଁ ଯେତେଦୂର ଜାଣେ, ମନ୍ଦିର କବାଟ ୮.୩୦ ମିନିଟ୍‌ରେ ବନ୍ଦ ହୋଇଯାଏ ଏବଂ ଥରେ ବନ୍ଦ ହେଲେ ସକାଳ

ନ ହେବା ପର୍ଯ୍ୟନ୍ତ ଏହା ଖୋଲେନି ।'' ସେ ସେକଥା ସ୍ଥାନୀୟ ମନ୍ତ୍ରୀଙ୍କୁ କହିଲେ । ସେ ଟିକିଏ ହସିକରି କହିଲେ, ''ଆପଣମାନେ ବ୍ୟସ୍ତ ହୁଅନ୍ତୁନି । କୀଚକେଶ୍ୱରୀ ଆମ ଗାଁ ଠାକୁରାଣୀ । ମୁଁ ସେ ଦାୟିତ୍ୱ ନେଉଛି ।'' ଭଲ କଥା । କଲେକ୍ଟର, ଏସ୍.ପି. ଏବଂ ମନ୍ତ୍ରୀଙ୍କ ସଙ୍ଗରେ ମୁଖ୍ୟମନ୍ତ୍ରୀ ବାହାରିଗଲେ । ମୁଁ ସଙ୍ଗରେ ଗଲି ନାହିଁ । ରାତିର ଖାଇବା ପିଇବା ଦାୟିତ୍ୱ ତଦାରଖ କରିବାକୁ ରହିଲି । ଘଣ୍ଟାକ ପରେ ସବୁ ଗାଡ଼ି ଫେରିଆସିଲା । ଏତେଶୀଘ୍ର ଦର୍ଶନ କେମିତି ହେଲା ବୋଲି ମୁଁ ଏସ୍.ପି.ଙ୍କୁ ପଚାରିବାରୁ ସେ କହିଲେ, ''ତମ କଥାଟା ନ ଶୁଣି ବଡ଼ ଭୁଲ୍ ହୋଇଗଲା । କବାଟ ଫିଟିଲା ନାହିଁ । ସେ ମନ୍ତ୍ରୀ ବିଚରା ଲାଜରେ ଡାକବଙ୍ଗଳାକୁ ନ ଫେରି ନିଜ ଗାଁ'ରେ ରହିଗଲେ । ମୁଖ୍ୟମନ୍ତ୍ରୀ କୀଚକେଶ୍ୱରୀଙ୍କୁ ଦର୍ଶନ କରିପାରିଲେ ନାହିଁ ।''

ତା'ପରେ ସେ ରାତିରେ ଯାହା ଘଟିଲା, ପରବର୍ତ୍ତୀକାଳରେ ଅନେକଥର ସେ କଥା ଭାବିଛି । ମୋରି ଭାଗ୍ୟରେ ଏମିତି କଥା କାହିଁକି ଲେଖାଥାଏ ବୋଲି ମନକୁ ମନ ପଚାରିଛି । ଦଶଟା ବେଳକୁ ମୁଖ୍ୟମନ୍ତ୍ରୀ ଖାଇସାରି ଶୋଇବାକୁ ଗଲେ । ଆମେ ସବୁ ଖାଇପିଇ ଏବଂ ସକାଳ ପାଇଁ ଗରମ ପାଣି ବେଡ୍ ଟି'ର ବନ୍ଦୋବସ୍ତ କରି ଘରକୁ ଫେରିଲାବେଳକୁ ରାତି ଏଗାରଟା । ଶୀତଦିନ । ପ୍ରବଳ ଶୀତ ପଡୁଥାଏ । ମୁଁ ଘରକୁ ଆସି ସଙ୍ଗେ ସଙ୍ଗେ ବିଛଣାରେ ଗଡ଼ିଗଲି । ଛଅଟା ବେଳକୁ ପୁଣି ଡାକବଙ୍ଗଳାକୁ ଯିବାକୁ ହେବ ।

ରାତି କେତେ ହେବ ଜାଣିନି । ତୁହାକୁ ତୁହା ଟେଲିଫୋନ୍ ଶବ୍ଦରେ ମୋର ଗଭୀର ନିଦ୍ରା ଭଙ୍ଗ ହେଲା । ମୋ ମନକୁ ପାପ ଛୁଇଁଲା । ବାପା, ମା' କାହାର ଦେହ ଖରାପ ହେଲା କି ? ଅଧା ନିଦରେ ଫୋନ୍ ଧରିଲି । ସେତେବେଳେ ଆଜିକାଲି ପରି ମୋବାଇଲ୍ ନ ଥିଲା । ଏସ୍.ଟି.ଡି. ମାଧ୍ୟମ ମଧ୍ୟ ନ ଥିଲା । ଟେଲିଫୋନ୍ ଏକ୍ସଚେଞ୍ଜ୍ ଅଫିସରେ ଅପରେଟ୍‌ରମାନଙ୍କଦ୍ୱାରା ଟ୍ରଙ୍କକଲ୍ ହେଉଥିଲା । ମୋର କ୍ୱାର୍ଟର ପାଖରେ ଟେଲିଫୋନ୍ ଏକ୍ସଚେଞ୍ଜ୍ ଅଫିସ୍ । ଅପରେଟ୍‌ର କହିଲା, ''ସାର୍, କଲିକତାରୁ ପି.ଟି.ଆଇ.ରୁ ଫୋନ୍ ଆସିଛି ।'' ମୁଁ ପ୍ରଥମେ କିଛି ବୁଝିପାରିଲିନି । ସେପଟୁ ଶୁଭିଲା – ଏସ୍.ଡି.ଓ. କହୁଛନ୍ତି ? ମୁଁ ହଁ କଲାରୁ ସେ କହିଲେ, ''ପ୍ରଧାନମନ୍ତ୍ରୀ ସାତଟି ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କୁ ବରଖାସ୍ତ କରିଛନ୍ତି । ଛଅ ଜଣଙ୍କ ସହିତ ଯୋଗାଯୋଗ ହୋଇ ତାଙ୍କର ପ୍ରତିକ୍ରିୟା ଆମେ ପାଇସାରିଲୁଣି । କେବଳ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭୁବନେଶ୍ୱରରେ ନ ଥିବାରୁ ଆମେ କଥା ହୋଇପାରୁନୁ ।'' ମୋ' ଛାତି ହଠାତ୍ ଧପ୍ କରି ହେଲା । ଯାହାକୁ କହନ୍ତି, ବିନା ମେଘରେ ବଜ୍ରପାତ । ଡାକବଙ୍ଗଳାରେ ମୁଖ୍ୟମନ୍ତ୍ରୀଙ୍କୁ ଯୋଗାଯୋଗ କରିହେବ କି ନାହିଁ ବୋଲି ପଚାରିବାରୁ ମୁଁ ନାହିଁ କଲି । ଡାକବଙ୍ଗଳାରେ ଫୋନ୍ ନାହିଁ । ତା'ପରେ ସେ ମତେ କହିଲେ, ''ଆପଣ ଡାକବଙ୍ଗଳା

ଯାଇ ମୁଖ୍ୟମନ୍ତ୍ରୀଙ୍କୁ ଏ ଖବର ଦିଅନ୍ତୁ ।'' ଆଜିକାଲି ଟିଭିରେ ମିନିଟ୍‌କୁ ମିନିଟ୍ ଯେଭଳି ଖବର ପ୍ରସାରିତ ହେଉଛି, ଏକଥା ହୁଏତ ଅନେକ ବିଶ୍ୱାସ କରିପାରିବେନି । ମୁଁ ତାଙ୍କୁ କହିଲି, ମୁଁ ମୁଖ୍ୟମନ୍ତ୍ରୀଙ୍କ ଅଫିସ୍‌ରୁ ନିର୍ଦ୍ଦେଶ ନ ପାଇଲେ ମୁଁ ଏ କାମ କରିପାରିବିନି । ତା'ପରେ ଅପରେଟର୍‌ଙ୍କୁ ମୁଖ୍ୟମନ୍ତ୍ରୀଙ୍କ ଘରକୁ ଲଗାଇବାକୁ କହିଲି । ତାଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ଧରିବାରୁ ଘଟଣାର ସତ୍ୟାସତ୍ୟ ପଚାରିଲି । ସେ 'ହଁ' କହିବାରୁ ତାଙ୍କ ନାଁ ଟିପିଲି । ତା'ପରେ ଭଗବାନ୍‌ଙ୍କୁ ଡାକି ପ୍ୟାଣ୍ଟ ଶାର୍ଟ ପିନ୍ଧି ଡାକବଙ୍ଗଳାକୁ ଯିବାକୁ ବାହାରିଲି । ସେତେବେଳକୁ ରାତି ତିନିଟା ଉପରେ । ମୋ' ସ୍ତ୍ରୀ ପୁଣି 'କୁଆଡ଼େ ବାହାରିଲ ? ସକାଳୁ ଗଲେ ହେବନି ?' ପଚାରିବାରେ 'କଥା ବହୁତ ଗୁରୁତର । ସକାଳ ଯାଏ ଅପେକ୍ଷା କରିହେବନି, ପରେ ସବୁ କହିବି' କହି ଡାକବଙ୍ଗଳାକୁ ଚାଲିଗଲି ।

ଡାକବଙ୍ଗଳାରେ ପହଞ୍ଚି ପ୍ରଥମେ ଏସ୍.ପି. ଏବଂ କଲେକ୍ଟରଙ୍କୁ ନିଦରୁ ଉଠାଇଲି । ସେ ଦୁହେଁ ପ୍ରଥମେ ଆବାକାବା ହୋଇ ମୋ ମୁହଁକୁ ଚାହିଁଲେ, ସତେଯେପରି ଏ ଖବର ସେମାନେ ବିଶ୍ୱାସ କରିପାରୁ ନାହାନ୍ତି । ତା'ପରେ ଏସ୍.ପି. ମତେ କହିଲେ, ''ମୃତ୍ୟୁଞ୍ଜୟ, ତମେ ଠିକ୍ ଶୁଣିଛ ତ ? ଖବର ଭୁଲ୍ ହେଲେ, ଆମ ସମସ୍ତଙ୍କ ଅବସ୍ଥା କ'ଣ ହେବ ଜାଣୁଛ ତ ?'' ମୁଁ ପି.ଟି.ଆଇ. କହିବା କଥା ଏବଂ ପରେ ମୁଖ୍ୟମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟାରୀ କହିବା କଥା କହିବାରୁ ସେମାନେ ବିଶ୍ୱାସ କଲେ । ତା'ପରେ କଥା ପଡ଼ିଲା ଯେ ଏ କଥା ମୁଖ୍ୟମନ୍ତ୍ରୀଙ୍କୁ କିଏ ଜଣାଇବ । ନିୟମ ଅନୁସାରେ ଜିଲ୍ଲାପାଳ ନିଜେ ଏକଥା କହିବା ଉଚିତ ହେବ ବୋଲି ମୁଁ କହିଲି । ଏସ୍.ପି. ମଧ ମୋ କଥାକୁ ସମର୍ଥନ କଲେ; ମାତ୍ର ପଣ୍ଡା ସାହେବ ଟିକିଏ ଦୋଦୋପାଞ୍ଚ ହେଲେ । ତା'ପରେ ମୁଁ ବି. ବି. ସିଂହଙ୍କୁ କହିଲି, ''ତା'ହେଲେ ଆପଣ କୁହନ୍ତୁ ।'' ସେ କହିଲେ, ''ମୁଁ ତ ସାଧା ପୋଷାକରେ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିପାରିବି ନାହିଁ; ମତେ ୟୁନିଫର୍ମରେ ଯିବାକୁ ହେଲେ ସମୟ ଲାଗିବ ।'' ମତେ ଲାଗିଲା ଦୁଇଜଣଯାକ ଏପରି ଅପ୍ରୀତିକର ଖବର ଦେବାପାଇଁ ପଛଘୁଞ୍ଚା ଦେଉଛନ୍ତି । ତା'ପରେ ମତେ କହିଲେ, ''ସବୁଠୁ ଭଲ ହେବ ତମେ ନିଜେ କହିଲେ, କାରଣ ତମେ ନିଜେ ଟେଲିଫୋନ୍ ଧରିଛ ।'' ମୁଁ କିଛି କହିଲି ନାହିଁ । ଚାକିରି ଜୀବନରେ ଅନେକ ଅଫିସର ଦେଖିଛି, ଯେଉଁମାନେ ଅଧସ୍ତନ କର୍ମଚାରୀଙ୍କୁ ପଛରେ ରଖି ବାହାବା ନେବାପାଇଁ ଆଗରେ ରହିଯା'ନ୍ତି; ମାତ୍ର ନିଜ ଉପରକୁ ଟିକିଏ ବିପଦ ଆସିଲେ ପଛରେ ରହି ଅନ୍ୟକୁ ଆଗକୁ ଠେଲିଦିଅନ୍ତି । ପିଲାଦିନୁ ସ୍ପଷ୍ଟବାଦୀ ଏବଂ ଦୁଃସାହସୀ ହିସାବରେ ମୋର ବହୁତ ଦୁର୍ନାମ ଅଛି । ମୁଁ କହିଲି, ''ଠିକ୍ ଅଛି, ଆପଣମାନେ ପ୍ରସ୍ତୁତ ହୋଇ ଆସନ୍ତୁ, ମୁଁ ମୁଖ୍ୟମନ୍ତ୍ରୀଙ୍କୁ କହୁଛି ।''

ମୁଖ୍ୟମନ୍ତ୍ରୀଙ୍କ କବାଟରେ ଦୁଇ ତିନି ଥର ଠକ୍ ଠକ୍ କରିବାରେ ସେ ନିଦ ମଳମଳ ଆଖିରେ କବାଟ ଖୋଲିଲେ । ମୁଁ ନମସ୍କାର କରି କହିଲି, ''ସାର୍, ମୁଁ ମୃତ୍ୟୁଞ୍ଜୟ ପଟ୍ଟନାୟକ । ଏଠିକାର ଏସ୍.ଡି.ଓ. ପି.ଡବ୍ଲ୍ୟୁ.ଡି. ।'' ସେ କେବଳ କହିଲେ, ଜାଣିଛି । ତା'ପରେ ତାଙ୍କୁ କହିଲି, ''ସାର୍ ! ମତେ ମୁଖ୍ୟମନ୍ତ୍ରୀଙ୍କୁ ଗୋଟେ ଦୁଃସମ୍ବାଦ ଦେବାର ଅଛି ।'' ସେ ମୋତେ ଟିକିଏ ଚାହିଁଲେ, ତା'ପରେ କହିଲେ, "Madam ministry dismiss କରିଦେଲେ କି ?'' ମୁଁ ମୁଣ୍ଡ ଟୁଙ୍ଗାରିଲି ଏବଂ କଲିକତାରୁ ପି.ଟି.ଆଇ. କରିଥିବା ଫୋନ୍ କଥା ଏବଂ ମୁଁ ମୁଖ୍ୟମନ୍ତ୍ରୀଙ୍କ ଘରୁ ଜଣାଇଥିବା କଥା କହିଲି । ସେ କହିଲେ, 'ଧନ୍ୟବାଦ' । ଏଭଳି ପରିସ୍ଥିତିରେ ମଧ୍ୟ ତାଙ୍କର କଥା କହିବାର ଶୈଳୀ ଏବଂ ଭଦ୍ରାମି ମତେ ଅଭିଭୂତ କରିଦେଲା । ତା'ପରେ ମତେ କହିଲେ, ''ବାଲ୍‌ଟିଏ ଗରମପାଣି ହୋଇପାରିବ ?'' ମୁଁ କହିଲି, ''ସାର୍, ପନ୍ଦର ମିନିଟ୍ ମଧ୍ୟରେ ହେଇଯିବ ।'' ସେତେବେଳେ ବଙ୍ଗଳାରେ ଗିଜର୍ ଇତ୍ୟାଦି ଆଧୁନିକ ଉପକରଣ ନ ଥିଲା । ମୁଁ ଚୌକିଦାରକୁ ଗୋଟେ ବଡ଼ ଡେକ୍‌ଚିରେ ଗରମ ପାଣି ବସାଇବାକୁ କହି ମୋ ସାଙ୍ଗରେ ଥିବା ଓଭରସିୟର ବିଶ୍ୱାଳବାବୁଙ୍କୁ ଚା' କରିବାପାଇଁ ବରାଦ କଲି । ସେତେବେଳକୁ କରଞ୍ଜିଆରେ ପ୍ରବଳ ଶୀତ ପଡୁଥାଏ । ଅଧଘଣ୍ଟାଏ ପରେ ମୁଖ୍ୟମନ୍ତ୍ରୀ ରୁମ୍‌ରୁ ବାହାରିଲେ । କଲେକ୍ଟର ଏବଂ ଏସ୍.ପି. ରେଡ଼ି ହୋଇ ବାରଣ୍ଡାରେ ଅପେକ୍ଷା କରିଥା'ନ୍ତି । ଏସ୍.ପି. ଗାର୍ଡ ଅଫ୍ ଅନର୍ ଦେବାଲାଗି କହିବାରୁ ସେ ବିନମ୍ର ଭାବରେ ମନାକଲେ ଏବଂ ଆମ ସମସ୍ତଙ୍କଠାରୁ ବିଦାୟ ନେଇ ଭୁବନେଶ୍ୱର ଅଭିମୁଖେ ଯାତ୍ରା କଲେ ।

ନୀଳମଣି ରାଉତରାୟଙ୍କ ସହିତ ଜୀବନରେ ସେଇ ଦୁଇ ଥର ଦେଖା । ତା' ପୁଣି କରଞ୍ଜିଆ ଭଳି ଓଡ଼ିଶାର ଉପାନ୍ତ ଅଞ୍ଚଳର ଗୋଟେ ଛୋଟ ଜାଗାରେ; ମାତ୍ର ଏଭଳି ପରିସ୍ଥିତିରେ ମଧ୍ୟ ତାଙ୍କର ଧୈର୍ଯ୍ୟ ଏବଂ ଭଦ୍ରତା ମତେ ମୁଗ୍ଧ କରିଥିଲା ।

ନୀଳମଣି ରାଉତରାୟ ଆଉ ନାହାନ୍ତି; ମାତ୍ର ଜଣେ ଭଦ୍ର ମୁଖ୍ୟମନ୍ତ୍ରୀ ହିସାବରେ ଓଡ଼ିଶାର ଜନସାଧାରଣଙ୍କ ମନରେ ସେ ଅନେକ ଦିନ ଧରି ରହିବେ ।

❑❑❑

## ବିଜୁ ପଟ୍ଟନାୟକ
## ଓଡ଼ିଶାର ମୁକୁଟବିହୀନ ସମ୍ରାଟ୍

ବିଜୁ ପଟ୍ଟନାୟକଙ୍କୁ ମୁଁ ପ୍ରଥମେ ଦେଖିଲି କଟକ କିଲା ପଡ଼ିଆରେ । ମୋର ସେତେବେଳକୁ ନବମ କିମ୍ବା ଦଶମ ଶ୍ରେଣୀ । ୧୯୫୫ ମସିହାର କଥା । ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁ ଓଡ଼ିଶା ଗସ୍ତରେ ଆସି କିଲା ପଡ଼ିଆରେ ଭାଷଣ ଦେଉଥା'ନ୍ତି । ସେତେବେଳେ ଆଜିକାଲି ଭଳିଆ ଏତେ ହେଲିକପ୍ଟରର ପ୍ରଚଳନ ନ ଥିଲା । ଭୁବନେଶ୍ୱରରେ ଓହ୍ଲାଇ ଗୋଟେ ଖୋଲାଗାଡ଼ିରେ ଠିଆ ହୋଇ ଜନତାର ଅଭିବାଦନ ଗ୍ରହଣ କରି ପଣ୍ଡିତ ଜବାହରଲାଲ ନେହରୁ ମଞ୍ଚ ଉପରକୁ ଉଠିଲେ । ଚାରିଆଡ଼େ ପଣ୍ଡିତ ନେହରୁଙ୍କ ଜୟଧ୍ୱନି । ସେ ସମସ୍ତଙ୍କୁ ନମସ୍କାର କରି ପ୍ରଥମେ ଚାରି-ପାଞ୍ଚ ମିନିଟ୍ ବିଳମ୍ବ ହୋଇଥିବାରୁ କ୍ଷମା ମାଗିଲେ ଏବଂ ଆସିବା ବାଟରେ ପ୍ରବଳ ଭିଡ଼ ଏବଂ ଫୁଲତୋଡ଼ା ଗ୍ରହଣ କରିବା ଯୋଗୁଁ ଏପରି ହେଲା ବୋଲି କହିଲେ । ତା'ପରେ ସେ ତାଙ୍କ ଭାଷଣ ଆରମ୍ଭ କଲେ । ପାଖରେ ବସିଥାଆନ୍ତି ଜଣେ ଦୀର୍ଘକାୟ, ସୁଦର୍ଶନ ଚଷମାପିନ୍ଧା ଯୁବକ । କିଛି ମିନିଟ୍ ପରେ ହଠାତ୍ ଦେଖାଗଲା ଯେ, ସେ ବ୍ୟକ୍ତି ନେହରୁଙ୍କ ମାଇକ୍ ଆଗରେ ହାତ ଦେଇ ତାଙ୍କ ଭାଷଣ ବନ୍ଦ କରିଦେଲେ ଓ ତାଙ୍କ କାନରେ କିଛି କହିଲେ । ସମଗ୍ର ଜନତା ସ୍ତବ୍ଧ । କାହାର ଏତେ ସାହସ ହେବ, ପ୍ରବଳପ୍ରତାପୀ ଜବାହରଲାଲ ନେହରୁଙ୍କ ମାଇକ୍ ଆଗରେ ହାତ ଦେବ । ତା'ପରେ ନେହରୁ ହସି ହସି କହିଲେ, ''ସେ କହୁଛନ୍ତି ମତେ ବିଜୟାନନ୍ଦ ପଟ୍ଟନାୟକ କୁହନ୍ତୁନି କେବଳ 'ବିଜୁ ପଟ୍ଟନାୟକ' ଡାକନ୍ତୁ । ମୁଁ ଆଜିଠୁ ତାଙ୍କୁ ବିଜୁ ପଟ୍ଟନାୟକ ଡାକିବି ।'' ହେଲା ପ୍ରବଳ କରତାଳି । ସେଇଦିନଠାରୁ ବିଜୁ ପଟ୍ଟନାୟକ ମୋର କିଶୋର ପ୍ରାଣର ହୀରୋ ହୋଇଉଠିଲେ ।

ଅନେକ ଦିନ ପରେ, ମୁଁ ଇଞ୍ଜିନିୟରିଂ ପଢ଼ା ଶେଷକରି ପାରାଦ୍ୱୀପ ପୋର୍ଟରେ ଆସିଷ୍ଟାଣ୍ଟ ଇଞ୍ଜିନିୟର ଭାବରେ ଯୋଗଦେଇଥାଏ । ଖୋର୍ଦ୍ଧା ପାହାଡ଼ ସବୁ ଫଟାଯାଇ ଶହ ଶହ ଟ୍ରକରେ ପଥର ଯାଉଥାଏ ସମୁଦ୍ର ପୋତିବାପାଇଁ । ରାମଚନ୍ଦ୍ର ସମୁଦ୍ରରେ ସେତୁବନ୍ଧ ବାନ୍ଧିଥିଲେ । ଦୁର୍ଦ୍ଧର୍ଷ ଜନନାୟକ ବିଜୁପଟ୍ଟନାୟକ ଅଣ୍ଟା ଭିଡ଼ିଥା'ନ୍ତି ଅଶାନ୍ତ ସମୁଦ୍ରକୁ ବଶକରି Break water ତିଆରି କରିବାକୁ । ଆମେସବୁ ତାଙ୍କର ବାନର

ସେନା । ପାଣିର ଗଭୀରତା ତଥା ଅଶାନ୍ତ ଲହଡ଼ି ଯୋଗୁଁ ପଥର ସବୁ ପଡ଼ିଲାମାତ୍ରେ ଭାସିଯାଉଥାଏ । 'ସମାଜ' ଲେଖୁଥାଏ ଇଞ୍ଜିନିୟରମାନେ ପଇସା ଖାଇଗଲେ । ମନରେ ବହୁତ ଦୁଃଖ ଆସୁଥାଏ । ଥରେ ମୁଁ ସେ ପଥର ଟ୍ରକ୍‌ରେ ବସି Break water କାମ ଦେଖିବାକୁ ପାରାଦ୍ୱୀପ ଯାଇଥାଏ । ହଠାତ୍ ଦେଖିଲି ଆମ ଚିଫ୍ ଇଞ୍ଜିନିୟରଙ୍କ ଗାଡ଼ି ଆଉ ଦୁଇଟା ଗାଡ଼ିକୁ ପାଇଲଟିଂ କରି ଆଣୁଛି। ମୁଣ୍ଡରେ ଟୋପି ପିନ୍ଧି ପୂରା ଇଞ୍ଜିନିୟର ପୋଷାକ (ଖାକି ପ୍ୟାଣ୍ଟ୍ ଓ ଧଳା ଫୁଲ୍ ଶାର୍ଟ)ରେ ଓହ୍ଲାଇଲେ ଓଡ଼ିଶାର ମହାମାନ୍ୟ ରାଜ୍ୟପାଳ ଅଯୋଧ୍ୟାନାଥ ଖୋସଲା । ତା' ପଛକୁ ଗୋଟେ ଟୋପି ପିନ୍ଧି ସ୍ୱୟଂ ବିଜୁ ପଟ୍ଟନାୟକ– 'ଓଡ଼ିଶା ପ୍ରଗତିର ସାରଥି' । ଆମକୁ ଦେଖି ପଚାରିଲେ, ''ଦିନକୁ କେତେ ଟ୍ରକ୍ ପଥର ଆସୁଛି ?'' ମୁଁ ପିଲାଦିନୁ ଟିକିଏ ଆଗଚଲା ଥିଲି । ସେଥିଲାଗି ଅନେକ ଉପରିସ୍ଥ କର୍ମଚାରୀଙ୍କ ଠାରୁ ଗାଳି ଶୁଣିଛି; ମାତ୍ର ସେଦିନ ଚିଫ୍ ଇଞ୍ଜିନିୟର ଥିବା ସତ୍ତ୍ୱେ ହଠାତ୍ କହିଦେଲି, ''ସାର୍, ତିନି ଶହ ପାଖାପାଖି ।'' ସେ କହିଲେ, "Why not one thousand" ? ମୁଁ କହିଲି, ''ସାର୍ ତିନିଟି ସିଫ୍ଟରେ ଓ୍ୱେ ବ୍ରିଜ୍‌ରେ ଓଜନ ହେବାପରେ ଟ୍ରକ୍ ସବୁ ଆସୁଛି ଆଉ ଚାରି ଜଣ ଓଭରସିୟର ହେଲେ ଆମେ ୨୪ ଘଣ୍ଟା କାମ କରି ଅଧିକା ଟ୍ରକ୍ ପଠାଇପାରିବୁ ।'' ସେ ସଙ୍ଗେ ସଙ୍ଗେ ଚିଫ୍ ଇଞ୍ଜିନିୟରଙ୍କ ଆଡ଼କୁ ଚାହିଁ କହିଲେ, "Give this young man four Overseers." କହିବାବାହୁଲ୍ୟ, ସାତ ଦିନ ପରେ ଚାରି ଜଣ ଓଭରସିୟର ଖୋର୍ଦ୍ଧାରେ ଆସି ଯୋଗଦେଲେ । ସମୁଦ୍ର ପୋତା ହେଲା । Break Water ତିଆରି ସରିଲା । 'ସମାଜ'ରେ ଆଉ ଆମର ନିନ୍ଦା ବାହାରିଲାନି ।

ତା'ପରେ ୧୯୬୫ ମସିହାରେ ମୋର ସୁନାବେଡ଼ା 'Aero Engine Factory Project' କୁ ବଦଳି ହୋଇଗଲା । ପାଞ୍ଚ ବର୍ଷ କାଳ ମିଗ୍ ଇଞ୍ଜିନ୍ କାରଖାନା ନିର୍ମାଣ ଦାୟିତ୍ୱରେ ରହିଲି । ମିଗ୍ ବିମାନ ପ୍ରଥମେ ବାଙ୍ଗାଲୋରରୁ ଏବଂ ନାସିକରେ ହେବାର ସ୍ଥିର ହୋଇଥିଲା; ମାତ୍ର ରୁଷୀୟ ଇଞ୍ଜିନିୟରମାନଙ୍କୁ ନିଜେ ବିମାନରେ ବସାଇ ଆକାଶମାର୍ଗରୁ ସୁନାବେଡ଼ାର ପର୍ବତ ପରିବେଷ୍ଟିତ ଜାଗା ଦେଖାଇ ଏହା ଇଞ୍ଜିନ୍ କାରଖାନା ଲାଗି ସର୍ବୋତ୍କୃଷ୍ଟ ସ୍ଥାନ ବୋଲି ସେ ନେହରୁଙ୍କୁ ହୃଦବୋଧ କରାଇପାରିଥିଲେ । ଥରେ ସୁନାବେଡ଼ାରେ ପ୍ଲାଣ୍ଟ୍ କାମ ପରିଦର୍ଶନ କଲାବେଳେ ସେ କହିଲେ, ''ଭୋକିଲା ବାଘୁଣୀ ମୁହଁରୁ ମାଂସଖଣ୍ଡେ ଛଡ଼ାଇ ଆଣିଲା ପରି ମୁଁ ଏ କାରଖାନାକୁ ଓ୍ୱାଇ.ବି. ଚୌହାନ (ତଦାନୀନ୍ତନ ଦେଶରକ୍ଷାମନ୍ତ୍ରୀ)

ମୁହଁରୁ ଛଡ଼ାଇ ଆଣିଛି । ଅଥଚ ମିଗ୍‌ର ପ୍ରଥମ ଇଞ୍ଜିନ୍ ନାସିକ ପଠାଗଲାବେଳେ ବିଜୁବାବୁଙ୍କୁ ନିମନ୍ତ୍ରଣ ମଧ୍ୟ କରାଯାଇ ନ ଥିଲା । ରାଜନୀତିର ନଗ୍ନରୂପ ସେଦିନ ଆମେମାନେ ଦେଖିଲୁ ଏବଂ ମୋ ମନରେ ଗଭୀର ଦୁଃଖ ହେଲା; କିନ୍ତୁ ବିଜୁ ପଟ୍ଟନାୟକ ଥିଲେ ମିଗ୍ ଇଞ୍ଜିନିୟରମାନଙ୍କ ମଧ୍ୟରେ ହୀରୋ । ଆଉ ଥରେ ଭାରତର ପ୍ରତିରକ୍ଷା ସେକ୍ରେଟାରୀ ସୁନାବେଡ଼ା ପରିଦର୍ଶନରେ ଆସିଲାବେଳକୁ ବିଜୁବାବୁ ଉପସ୍ଥିତ ଥିଲେ ଏବଂ ଆମମାନଙ୍କୁ ଚିହ୍ନାଇ କହିଲେ, 'ମାଲହୋତ୍ରା ! These young engineers are building the modern Konark at Sunabeda ! ମୋ ଜୀବନରେ ଏଭଳି ସାର୍ଟିଫିକେଟ୍ ପାଇବା ପ୍ରଥମ ଓ ଶେଷ । ଇଞ୍ଜିନିୟରମାନଙ୍କୁ ସେ ଅତ୍ୟନ୍ତ ଭଲ ପାଉଥିଲେ ଏବଂ ଆମ ଚିଫ୍ ଇଞ୍ଜିନିୟର ପାଢ଼ୀ ସାହେବଙ୍କୁ ସ୍ନେହରେ 'ସୁନାବେଡ଼ା ମ୍ୟାନ୍' ଓ ବାଲିମେଳା ଚିଫ୍ ଇଞ୍ଜିନିୟର ସୁରେଶ ତ୍ରିପାଠୀଙ୍କୁ 'ବାଲିମେଳା ମ୍ୟାନ୍' ବୋଲି ସମ୍ବୋଧନ କରୁଥିଲେ ।

ଅନେକ ଦିନ ପରେ ଥରେ କେନ୍ଦ୍ରାପଡ଼ା ଉପନିର୍ବାଚନ ବେଳେ ରାଜନଗର ଏମ୍.ଏଲ୍.ଏ. ଶ୍ରୀଯୁକ୍ତ ନଳିନୀ ମହାନ୍ତି ମତେ କେନ୍ଦ୍ରାପଡ଼ା ଏକ୍ସପ୍ରେସ୍ ହାଇୱେ ଇଞ୍ଜିନିୟର ହିସାବରେ ଚିହ୍ନାଇଦେବାରୁ ସେ କହିଲେ, "I know him. He is a MIG Boy." ସେଇ ସମୟର କଥା । ବିଜୁବାବୁ ଥାଆନ୍ତି, ପବ୍ଲିକ୍ ଆକାଉଣ୍ଟ୍ସ କମିଟିର ଅଧ୍ୟକ୍ଷ । ଚାନ୍ଦବାଲିରୁ ରାଜନଗରର ଗୁପ୍ତି ବୋଲି ଗୋଟେ ଛୋଟ ଜାଗାକୁ ଲଞ୍ଚ୍ ଯୋଗେ ଆସୁଥା'ନ୍ତି । ୧ଟା ପାଖାପାଖି, ତାଙ୍କ ଲଞ୍ଚ୍ ଦେଖାଗଲା । ହଜାର ହଜାର ଲୋକ ହରିବୋଲ ହୁଳହୁଳି ଧ୍ୱନିରେ ଗଗନପବନ ପ୍ରକମ୍ପିତ କରିଦେଉଥା'ନ୍ତି । ଲଞ୍ଚ୍ ସାମ୍ନାରେ ସଦର୍ପରେ ଠିଆହୋଇ ହାତ ହଲାଉଥା'ନ୍ତି, ଓଡ଼ିଶାର ମୁକୁଟବିହୀନ ସମ୍ରାଟ୍ ବିଜୁପଟ୍ଟନାୟକ । ମୁଁ ଚିରଦିନ ଦେଖିଛି କୌଣସି ପଦପଦବୀରେ ତାଙ୍କ ବ୍ୟକ୍ତିତ୍ୱ ବଢ଼ିଯାଏନି ବା ପଦ ଚାଲିଗଲାପରେ କମିଯାଏନି, ଯେପରି ଏଭେରେଷ୍ଟ ଶୃଙ୍ଗର ଉଚ୍ଚତା କମ୍‌ବେଶୀ ହୁଏନି । ସେ ଖାଇଲାବେଳେ ବହୁତ ରକମର ଖାଦ୍ୟ ହେଉଥିଲା । ଛୋଟ କୋଠରିରେ ଖାଇବା ଟେବୁଲ୍ ପ୍ରାୟ ଭର୍ତ୍ତି ହୋଇଥିଲା । ମୋ' ଉପରେ କଲେକ୍ଟର ଶ୍ରୀଯୁକ୍ତ ଅକ୍ଷୟ ଦାସ ସେ ଭାର ନ୍ୟସ୍ତ କରିଥିଲେ । ମୁଁ ପାଖକୁ ଯାଇ କହିଲି, ''ସାର୍, ଆପଣଙ୍କ ପ୍ରିୟ ଖାଦ୍ୟ ତିଆରି ହୋଇଛି ।'' ଜଣେ ପରିଚାରକ ଦୁଇଟା ବିରାଟ ଚିଙ୍ଗୁଡ଼ି ଭଜା ଓ ଗୋଟେ ବଡ଼ ଥାଳିରେ ମଦନପୁର ଗାଁ'ର ସର ପଡ଼ିଥିବା ବସାଦହି ଆଣି ଥୋଇଲା । ସଙ୍ଗେ ସଙ୍ଗେ ଅନ୍ୟସବୁ ଖାଦ୍ୟକୁ ସେ ହାତରେ'

ଠେଲିଦେଲେ ଏବଂ ଅତି ଆଗ୍ରହ ସହକାରେ ସବୁ ଖାଇଲେ । ଟୁର୍ ସରିଲାପରେ ପାରାଦ୍ୱୀପ ନେହରୁ ବଙ୍ଗଳାରେ ଖାଇଲାବେଳେ କଲେକ୍ଟରଙ୍କୁ କୁଆଡ଼େ କହିଲେ, "Akhaya ! Pattnaik has given the best lunch at Gupti." କଲେକ୍ଟର ମତେ ପରେ ଥଟ୍ଟା କଲେ, ''କ'ଣ ଏମିତି ବିଜୁବାବୁଙ୍କୁ ଖୁଆଇଲେ ?''

ମଧ୍ୟାହ୍ନଭୋଜନ ପରେ ଏକ ଘଣ୍ଟା ବିଶ୍ରାମ । ତା'ପରେ ଲୁଣା ଜଙ୍ଗଲ, କେନାଲ ବନ୍ଧ ଏବଂ ଅତି ବିପଦପୂର୍ଣ୍ଣ ରାସ୍ତାରେ ସମୁଦ୍ର ଖାଇଯାଇଥିବା ଗାଁ ସବୁ ପରିଦର୍ଶନ କରି ରାଜନଗର ରେଭେନ୍ୟୁ ବଙ୍ଗଳାରେ ରାତି ୯ଟା ବେଳକୁ ପହଞ୍ଚିଲେ । କଲେକ୍ଟର, ଏସ୍.ପି., ଡି.ଏଫ୍.ଓ. ଓ ଇରିଗେସନ୍‌ର ବଡ଼ ବଡ଼ ଇଞ୍ଜିନିୟର ଭର୍ତ୍ତି ହୋଇଥାଆନ୍ତି । ତା'ପରଦିନ ୧୦ଟାବେଳେ କେନ୍ଦ୍ରାପଡ଼ା ଟାଉନ୍ ହଲ୍‌ରେ ସଭା ଥାଏ । ତା'ପରେ ସମସ୍ତଙ୍କୁ ଚାହିଁ କହିଲେ, ''ଏଠି ତ ଜାଗା ନାହିଁ, ତମେ ସବୁ କେନ୍ଦ୍ରାପଡ଼ା ଫେରିଯାଅ । କାଲି ୯ଟା ବେଳକୁ ଆସିଲେ ଯିବା । ପଟ୍ଟନାୟକ ମୋ' ସାଙ୍ଗରେ ରହିବ ।'' ମତେ ବହୁତ ଖୁସି ଲାଗିଲା ତାଙ୍କର ମୋ' ଉପରେ ବିଶ୍ୱାସ ଦେଖି; ମାତ୍ର ମନ ଭିତରେ ଟିକିଏ ଭୟ ବି ଥାଏ । କିଛି ଅସୁବିଧା ହେଲେ ମୁଁ ଏକୁଟିଆ । ଛୋଟ ରୁମ୍‌ରେ ସେ ଶୋଇଲେ । ଆରଟିରେ ମୁଁ ଏବଂ ମୋର ଜଣେ ବିଶ୍ୱସ୍ତ ଓଭରସିଅର ।

ମୁଁ ସବୁଦିନ ଭୋର୍ ୫ଟା ବେଲୁ ନିଦରୁ ଉଠେ; ମାତ୍ର ୪ଟା ବେଳକୁ ନିଦ ଭାଙ୍ଗିଗଲା । ନିତ୍ୟକର୍ମ ସାରି ୫ଟା ବେଳକୁ ସାଙ୍ଗରେ ନେଇଥିବା ଷ୍ଟୋଭ୍‌ରେ କଫି ତିଆରି କଲି ଏବଂ ଠିକ୍ ୫ଟା ୩୦ ମିନିଟ୍‌ରେ ତାଙ୍କ ରୁମ୍‌ରେ ଦୁଇ ଥର ଠକ୍ ଠକ୍ କଲି । ଭିତରୁ ଶୁଭିଲା "Come in" । ମୁଁ ଓଭରସିଅରଙ୍କୁ କହିଥିଲି– ଟ୍ରେରେ କଫି ଧରି ପଛେ ପଛେ ଆସିବାକୁ । ମତେ ଦେଖୁ ଦେଖୁ ପଚାରିଲେ, "Where is my coffee?" ମୁଁ କହିଲି, Sir, Ready. ସେ ଦୁଇ କପ୍ ପିଇ କହିଲେ "very good" । ମୁଁ କହିଲି, ''ସାର୍ ସବୁ ଚେଷ୍ଟା ସତ୍ତ୍ୱେ ଆପଣଙ୍କର ପ୍ରିୟ news paper Statesmanଟା ଏ ଜାଗାରେ ମଗାଇ ହେଲାନି ।'' ସେ ଟିକିଏ ହସିଲେ ।

ମୁଁ କହିଲି, ''ସାର୍, ସକାଳ ଜଳଖିଆ ୮ଟା ୩୦ମିନିଟ୍‌ରେ । ଜଳଖିଆ ପରେ ମତେ କହିଲେ, ''ପଟ୍ଟନାୟକ, ସେ ଘାଟିଆ ଡଙ୍ଗା ପାଖରେ ଅଛି ?'' ସେତେବେଳେ ରାଜନଗରଠାରେ ହଂସୁଆ ନଦୀରେ ପୋଲ ହୋଇ ନ ଥାଏ । ମୁଁ ହଁ କହିବାରୁ କହିଲେ – କଲେକ୍ଟର, ଏସ୍.ପି. ଆସିବାରେ ଡେରି ହେବ । ଚାଲ୍ କେନ୍ଦ୍ରାପଡ଼ା ଗରାପୁର ଡାକବଙ୍ଗଳାକୁ ଚାଲିଯିବା । ତୋର ଆଉ ପାଖରେ ଗାଡ଼ି ଅଛି ତ ?'' ମୁଁ କହିଲି, ''ସାର୍ ଗୋଟେ କାର୍ ଏବଂ ମୋ ଜିପ୍ ଅଛି;

ମାତ୍ର ପୋଲିସ ସୁରକ୍ଷା ତ ଏବେ ଶୀଘ୍ର କରିହେବନି ।'' ସେ କହିଲେ – କିଛି ଦରକାର ନାହିଁ । ବିଜୁବାବୁ ପ୍ରୋଟୋକଲ୍‌ରେ ଆଦୌ ବିଶ୍ୱାସ କରୁ ନ ଥିଲେ । ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ହେବାର ୧୫ ଦିନ ପରେ ବିନା ପୋଲିସ ସୁରକ୍ଷାରେ କଟକ ବକ୍ସିବଜାର ରୋଡ୍‌ରେ ଭିଡ଼ ଭିତରେ ନିଜେ ଷ୍ଟେସନ୍ ୱାଗନ୍ ଚଲାଇ ଯାଉଥିବାର ମୁଁ ଦେଖିଛି । ଡଙ୍ଗାରେ ପହଞ୍ଚି ଘାଟିଆର ନାଁ ଧରି କହିଲେ, ''କିରେ ବିଶ୍ୱନାଥ ! ଭଲ ଅଛୁ ? ସେ କହିଲା– ହଜୁର୍ ! ''ତୋ' ପୁଅ କ'ଣ ପଢୁଛି ?'' ସେ କହିଲା– ବି.ଏ. ପଢୁଛି । ''ବି.ଏ. ପାସ୍ କଲାପରେ ମୋ ପାଖକୁ ନେଇକରିଯିବୁ ।''

ଯେଉଁମାନେ କୁହନ୍ତି– ବିଜୁବାବୁଙ୍କର କିଛି ମନେ ରହେନି ବୋଲି ସେମାନଙ୍କୁ ଏଇ ଗୋଟାଏ ଦୃଷ୍ଟାନ୍ତ ଯଥେଷ୍ଟ । କାରଣ ସେ ଡଙ୍ଗାରେ ପଚାଶ ଥର ପାରି ହୋଇଥିଲେ ମଧ୍ୟ ମୁଁ ନିଜେ ଘାଟିଆର ନାଁ ଜାଣି ନ ଥିଲି । ସେ ଓଡ଼ିଶାକୁ ଓ ତା'ର ଲୋକଙ୍କୁ ଅନ୍ତରର ସହିତ ଭଲପାଉଥିଲେ ।

ଆଉ ଗୋଟେ ଘଟଣା ମନକୁ ଆସୁଛି । ୧୯୭୭/୭୮ ମସିହା ହେବ । ବିଜୁବାବୁ କେନ୍ଦ୍ରରେ ଇସ୍ପାତ ଓ ଖଣିମନ୍ତ୍ରୀ । ମୁଁ ରାଇରଙ୍ଗପୁରରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥାଏ । ଖଡ଼କେଇ ଡ୍ୟାମ୍ ଉଦ୍‌ଘାଟନ କରିବାକୁ ସେ ଆସିଥାଆନ୍ତି । ମୁଁ ବଙ୍ଗଳା ଦାୟିତ୍ୱରେ ଥାଏ ଏବଂ ତାଙ୍କ ରୁମ୍‌କୁ ପରିଷ୍କାର ପରିଚ୍ଛନ୍ନ କରି, ଗାଧୁଆଘରକୁ ନିଜେ ତଦାରଖ କରିଥାଏ । ବିଜୁବାବୁ ପରିଷ୍କାର ପରିଚ୍ଛନ୍ନତାକୁ ଖୁବ୍ ଭଲପାଉଥିଲେ । ଦରକାର ପଡ଼ିଲେ, ବହୁତ ଛୋଟ ଡାକବଙ୍ଗଳାରେ ଆଧୁନିକ ସୁବିଧା ସୁଯୋଗ ନ ଥାଇ ରାତି କଟାଇବାର ମୁଁ ଦେଖିଛି; ମାତ୍ର ଅପରିଷ୍କାରକୁ ଆଦୌ ସହିପାରୁ ନ ଥିଲେ । ସେମିତି ସେ ସଦାବେଳେ ଚାହୁଁଥିଲେ– ତାଙ୍କ କର୍ମଚାରୀମାନେ ଜ୍ଞାନୀ ଓ ସ୍ମାର୍ଟ୍ ହୁଅନ୍ତୁ । ଖୋସାମତିକୁ ସେ ଘୃଣା କରୁଥିଲେ ।

ସ୍ୱତନ୍ତ୍ର ଉଡ଼ାଜାହାଜରେ ଆସି ସେ ରାଇରଙ୍ଗପୁର ଉଡ଼ାଜାହାଜ ପଡ଼ିଆରେ ଓହ୍ଲାଇଲେ ଏବଂ ଡାକବଙ୍ଗଳାରେ ନିତ୍ୟକର୍ମ ସାରି ଖଡ଼କେଇ ଡ୍ୟାମ୍ ଉଦ୍‌ଘାଟନ କରିବା ଲାଗି ସୁଲେଇପାଟ ଚାଲିଗଲେ । ସନ୍ଧ୍ୟାବେଳକୁ ଫେରିଲେ । ରାତିରେ ଖାଇବାପାଇଁ ଜଳସେଚନ ବିଭାଗ ତରଫରୁ ବିରାଟ ଆୟୋଜନ ହୋଇଥାଏ । ଠିକ୍ ସନ୍ଧ୍ୟା ଆଗରୁ ରାଇରଙ୍ଗପୁରର ଜଣେ ଜଣାଶୁଣା ବ୍ୟବସାୟୀ ଶ୍ରୀ ଗୋବିନ୍ଦରାମ ଅଗ୍ରୱାଲ୍ ଗୋଟେ ବଡ଼ ଟିଫିନ୍ କ୍ୟାରିଅର ଧରି ପହଞ୍ଚିଲେ ଏବଂ ମତେ କହିଲେ, ''ସାର୍, ବିଜୁବାବୁ ଦିଲ୍ଲୀରୁ ଫୋନ୍ କରିଥିଲେ । ମୋ ସ୍ତ୍ରୀ ତିଆରି କରିଥିବା ଢୋକଲା ଓ କିଛି ଜଳଖିଆ ଅଛି, ସେ ଏହାକୁ ବହୁତ ଭଲପା'ନ୍ତି । ଆପଣ ଏ କଥା ତାଙ୍କୁ କହି ଖାଇବାକୁ ଦେବେ ।''

ମୁଁ ଇରିଗେସନ ଇଞ୍ଜିନିୟରଙ୍କୁ କହିବାରୁ ସେ କହିଲେ– ସେମାନେ ଡରୁଛନ୍ତି । ରାତି ୮ଟା ବେଳକୁ ବିଜୁବାବୁ ଖାଇବା ଟେବୁଲରେ ବସିବା ପରେ ଖାଇବା ବଢ଼ା ହେଲା । ଚିଫ୍ ଇଞ୍ଜିନିୟର ଶ୍ରୀ ଆର୍.କେ. ସାହୁ ସବୁ ତଦାରଖ କରୁଥା'ନ୍ତି । ଏଇ ସମୟରେ ଟିଫିନ୍ ନେଇ ମୁଁ ଟେବୁଲ ଉପରେ ଥୋଇଲି ଏବଂ ଗୋବିନ୍ଦ ଅଗ୍ରୱାଲ କହିଥିବା କଥା କହିଲି । ସେ କହିଲେ, ''ଆରେ ସେ ଗୋବିନ୍ଦା କୁଆଡ଼େ ଗଲା ? ତାକୁ ଡାକ ।''

ମୁଁ କହିଲି– ସେ ଖାଇବା ଟିଫିନ୍ ଦେଇ ସାଙ୍ଗେ ସାଙ୍ଗେ ଚାଲିଗଲାଣି । ସେ ତାକୁ ଖୋଲି ଢୋକଲା ଓ ଅନ୍ୟ ଜଳଖିଆ ଖାଇବାରେ ଲାଗିଲେ ଏବଂ ତାଙ୍କ ସ୍ତ୍ରୀଙ୍କ ରନ୍ଧାର ବହୁତ ପ୍ରଶଂସା କଲେ । ପରେ ଶୁଣିଲି ଯେ ଚିଫ୍ ଇଞ୍ଜିନିୟର ଆର୍.କେ. ସାହୁ ଏଥିଲାଗି ମୋ' ଉପରେ ସାମାନ୍ୟ ଅସନ୍ତୁଷ୍ଟ ହୋଇଥିଲେ । ଆଉଥରେ ମୋ' ଗାଁ ବଡ଼ମ୍ବା ଗସ୍ତ କଲାବେଳେ ଭଟ୍ଟାରିକାଙ୍କୁ ଦର୍ଶନ ସାରି ମୋର ସାନଭାଇ ବିଭୁଦକୁ କହିଲେ, ''ମା'ଙ୍କୁ ଖବର ଦେ, ମୁଁ ଗଲାବେଳେ ତମ ଘରେ ଖାଇକରି ଯିବି ।'' ତାଙ୍କର ଆଶୀର୍ବାଦରୁ ସେ ପରେ ବଡ଼ମ୍ବା ବ୍ଲକ୍ ଚେୟାରମ୍ୟାନ୍ ରୂପେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲା । ମୁଁ ସେତେବେଳେ ସୁନ୍ଦରଗଡ଼ରେ ପୂର୍ତ୍ତବିଭାଗର ନିର୍ବାହୀ ଯନ୍ତ୍ରୀ ଥିଲି ।

ବିଜୁବାବୁ ପ୍ରଥମ ଥର ବହୁତ ଅଳ୍ପକାଳ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ; ମାତ୍ର ସେଇ ସ୍ୱଳ୍ପକାଳ ମଧ୍ୟରେ ପାରାଦ୍ୱୀପ ବନ୍ଦର, ଏକ୍ସପ୍ରେସ୍ ହାଇୱେ, ସୁନାବେଡ଼ା ମିଗ୍ ପ୍ରୋଜେକ୍ଟ, ସୈନିକ ସ୍କୁଲ, ରାଉରକେଲା ଇଞ୍ଜିନିୟରିଂ କଲେଜ ଇତ୍ୟାଦି ବହୁ ଉନ୍ନୟନମୂଳକ କାର୍ଯ୍ୟ କରିଯାଇଛନ୍ତି । ମହାନଦୀରେ ଦ୍ୱିତୀୟ ବନ୍ଧ ଲାଗି ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁଙ୍କୁ ନେଇ ଟିକରପଡ଼ା ଯାଇଥିଲେ; ମାତ୍ର ନେହରୁଙ୍କ ଅକାଳ ବିୟୋଗ ପରେ ସେ ଯୋଜନା କାର୍ଯ୍ୟକାରୀ ହୋଇପାରିଲା ନାହିଁ ।

ମୁଁ ସୁନ୍ଦରଗଡ଼ରେ ଥିଲାବେଳର କଥା । ବିଜୁବାବୁ ନିର୍ବାଚନ ପ୍ରଚାରରେ ଆସି ବଡ଼ଗାଁ ପଡ଼ିଆରେ ଓହ୍ଲାଇଲେ । ମୁଁ ହେଲିପ୍ୟାଡ୍ ଦାୟିତ୍ୱରେ ଥିଲି । ମୋ ସାଙ୍ଗରେ ଶ୍ରୀମତୀ ବି. ରାଧିକା ଏସ୍.ପି. (ସୁନ୍ଦରଗଡ଼) ଥିଲେ । ସେ ଅଳ୍ପ ବୟସରେ ଏସ୍.ପି. ହୋଇଥିଲେ । ସେ ସାଲ୍ୟୁଟ୍ କରିବାରୁ ତାଙ୍କୁ ନ ଚିହ୍ନିଲାପରି ମୋ ଆଡ଼କୁ ଚାହିଁଲେ । ମୁଁ କହିଲି, ''ସାର୍, ଏ ହେଉଛନ୍ତି ବି. ରାଧିକା, ସୁନ୍ଦରଗଡ଼ ଏସ୍.ପି. ।'' ସେ ମୁହଁରେ ଆଶ୍ଚର୍ଯ୍ୟଭାବ ଦେଖାଇ କହିଲେ, ''ଏସ୍.ପି. ? I thought she is a college student." ତା' ପରେ ତାଙ୍କ ପାଇଁ ଥିବା ଗାଡ଼ିରେ ବସି ବଡ଼ଗାଁ ପି.ଡବ୍ଲ୍ୟୁ.ଡି. ଡାକବଙ୍ଗଳାକୁ ମଧ୍ୟାହ୍ନଭୋଜନ ପାଇଁ ଗଲେ । ଆମେ ତାଙ୍କ ପଛେ ପଛେ

ଗଲୁ । ତାଙ୍କୁ ଏପରି ଥଟ୍ଟା କରିଥିବାରୁ ରାଧିକା ମ୍ୟାଡାମ୍ କହିଲେ, ''ସେ ନିଜେ ମତେ ଏଠି ପୋଷ୍ଟିଂ କରିଛନ୍ତି । ସେ କ'ଣ ଜାଣି ନାହାନ୍ତି ?'' ମୁଁ କହିଲି, ''ମ୍ୟାଡାମ୍, ବିଜୁବାବୁ ନେହରୁଙ୍କ ପ୍ରିୟପାତ୍ର । ସେ ଇନ୍ଦିରାଗାନ୍ଧୀଙ୍କୁ ମଧ୍ୟ ଥଟ୍ଟା କରନ୍ତି । ଆପଣଙ୍କୁ ଅଧିକା କ'ଣ କହିଲେ, ଆପଣ ତ ୟୁନିଫର୍ମରେ ନ ଥିଲେ, ସତରେ କଲେଜ ଛାତ୍ରୀ ପରି ଦେଖାଯାଉଛନ୍ତି ।'' ସେ ଟିକିଏ ହସିଲେ । ରାଧିକା ବହୁତ ଦକ୍ଷ ଏସ୍.ପି. ଥିଲେ ଏବଂ ସୁନ୍ଦରଗଡ଼ରେ ବହୁତ ସୁନାମ ଅର୍ଜନ କରିଥିଲେ ।

ବିଜୁବାବୁ ଆଜି ସ୍ୱର୍ଗରେ । ତାଙ୍କ ବିୟୋଗରେ ଓଡ଼ିଶା ତା'ର ଶ୍ରେଷ୍ଠ ସନ୍ତାନକୁ ହରାଇଲା । କିଛି ଲୋକଙ୍କ ଚକ୍ରାନ୍ତ ଯୋଗୁଁ ଭି.ପି.ସିଂହ ପରେ ସେ ଭାରତର ପ୍ରଧାନମନ୍ତ୍ରୀ ହୋଇପାରିଲେନି । ସେଟା ଓଡ଼ିଶାର ଦୁର୍ଭାଗ୍ୟ । ତାଙ୍କ ଶବ ଶୋଭାଯାତ୍ରାରେ ଅନ୍ୟୂନ ୧୦ ଲକ୍ଷ ଲୋକ ଯୋଗଦେଇଥିଲେ । ପ୍ରଧାନମନ୍ତ୍ରୀ ଅଟଳବିହାରୀ ବାଜପେୟୀ ଭୁବନେଶ୍ୱର ଆସି ଓଡ଼ିଶାବାସୀଙ୍କୁ ସମବେଦନା ଜଣାଇ ଭାଷଣ ଦେଇଥିଲେ । ବିଜୁବାବୁଙ୍କୁ ଭାରତର ଜଣେ କୃତୀ ସନ୍ତାନ ତଥା ଆଧୁନିକ ଭାରତର ଅନ୍ୟତମ ନିର୍ମାତା ଭାବେ ଅଭିହିତ କରିଥିଲେ । ଭଗବାନ୍ କରନ୍ତୁ, ଓଡ଼ିଶା ମାଟିରେ ତାଙ୍କ ପରି ପ୍ରବାଦ ପୁରୁଷ ଯୁଗେ ଯୁଗେ ଜନ୍ମନିଅନ୍ତୁ ।

❑❑❑

# ଜାନକୀ ବଲ୍ଲଭ ପଟ୍ଟନାୟକ
# ରାଜନୀତିଜ୍ଞ, କୂଟନୀତିଜ୍ଞ ଓ ସାହିତ୍ୟିକ

ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଜଣେ ପ୍ରବୀଣ ରାଷ୍ଟ୍ରନୀତିଜ୍ଞ ହିସାବରେ ଓଡ଼ିଶାରେ ତଥା ଓଡ଼ିଶା ବାହାରେ ସମସ୍ତେ ଜାଣନ୍ତି; ମାତ୍ର ରାଜନୀତି କରି ନ ଥିଲେ ମଧ୍ୟ ସାହିତ୍ୟିକ ହିସାବରେ ସେ ଓଡ଼ିଆ ସାହିତ୍ୟ ଜଗତରେ ଧ୍ରୁବତାରା ପରି ରହିଥା'ନ୍ତେ, ଏକଥା ସାଧାରଣତଃ କେହି ଭାବିପାରନ୍ତିନି । ସେ ଏକାଧାରରେ ସଂସ୍କୃତ ଏବଂ ରାଜନୀତି ବିଜ୍ଞାନରେ ବନାରସ ବିଶ୍ୱବିଦ୍ୟାଳୟରୁ ସ୍ୱର୍ଣ୍ଣପଦକ ପାଇଥିଲେ, ଏକଥା ଓଡ଼ିଶାର ବହୁତ କମ୍ ଲୋକ ଜାଣନ୍ତି ।

ପୁରୀରେ ଆୟୋଜିତ ଆନ୍ତର୍ଜାତିକ ସଂସ୍କୃତ ମହାସଭାରେ ସାରା ଭାରତର ଏବଂ ଭାରତ ବାହାରୁ ନିମନ୍ତିତ ସଂସ୍କୃତ ବିଦ୍ୱାନ୍‌ମଣ୍ଡଳୀ ଆଗରେ ଦୀର୍ଘ ଏକଘଣ୍ଟା ଧରି ସଂସ୍କୃତରେ ଯେତେବେଳେ ସେ ଓଜସ୍ୱିନୀ ଭାଷଣ ଦେଲେ, ସେତେବେଳେ ସମଗ୍ର ଶ୍ରୋତାମଣ୍ଡଳୀ ସ୍ତବ୍ଧ ହୋଇଗଲେ । ଜଣେ ମୁଖ୍ୟମନ୍ତ୍ରୀ ଯେ ଏଭଳି ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ଦେଇପାରନ୍ତି, ତା' ଅନେକଙ୍କର କଳ୍ପନାର ବାହାରେ ଥିଲା । ଆଉ ଥରକର କଥା । କଟକର 'ୟୁନିଭର୍ସ' ରେ ସାଂପ୍ରତିକ ରାଜନୀତି ଉପରେ ଭାଷଣ ଦେବାଲାଗି ଗିରିଜାବାବୁ (ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ) ତାଙ୍କୁ ନିମନ୍ତ୍ରଣ କରିଥା'ନ୍ତି । କନଫରେନ୍ସ ହଲ୍ ଭରପୂର ଥାଏ; ମାତ୍ର ଯା' ଭିତରେ ହଠାତ୍ ନିର୍ବାଚନ ହେବାରୁ 'କୋର୍ଡ ଅଫ୍ କଣ୍ଡକ୍ଟ' ଲାଗୁ ହୋଇଗଲା ଏବଂ ଜାନକୀବାବୁ ରାଜନୀତି ଉପରେ ନ କହି ଭାରତୀୟ ସଂସ୍କୃତି ଉପରେ ଗୋଟେ ସାରଗର୍ଭକ ଭାଷଣ ଦେଲେ । ତାଙ୍କୁ ଧନ୍ୟବାଦ ଦେବାକୁ ଯାଇ ଗିରିଜାବାବୁ କହିଥିଲେ, ''ବର୍ତ୍ତମାନ ଆପଣମାନେ ଦୀର୍ଘ ପଞ୍ଚାବନ ମିନିଟ୍ ଧରି (ସେତେବେଳେ କଲେଜରେ ଗୋଟେ ପିରିୟଡ଼ର ଅବଧି ଥିଲା ୫୫ ମିନିଟ୍) ଅଧାପକ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ଭାଷଣ ମୁଗ୍ଧ ହୋଇ ଶୁଣୁଥିଲେ ।''

ଜାନକୀବାବୁ ଖୋର୍ଦ୍ଧାର ରାମେଶ୍ୱର ଗ୍ରାମରେ ଗୋଟିଏ ସଂଭ୍ରାନ୍ତ କରଣ ପରିବାରରେ ଜନ୍ମଗ୍ରହଣ କରିଥିଲେ ଏବଂ ଗଞ୍ଜାମର ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ପରିବାରରେ ବିବାହ କରିଥିଲେ । ତାଙ୍କ ପତ୍ନୀ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ ଉଭୟ ସାହିତ୍ୟ ଓ ରାଜନୀତିରେ ସ୍ୱାମୀଙ୍କର ପ୍ରକୃତ ସହଧର୍ମିଣୀ ଥିଲେ । କଥାବାର୍ତ୍ତା,

ଚାଲିଚଳଣ ସବୁଥିରେ ଉଭୟଙ୍କର ଉଚ୍ଚକୋଟୀର ଆଭିଜାତ୍ୟ ବାରି ହୋଇପଡୁଥିଲା ଏବଂ ରାଜନୀତିର ପଙ୍କିଳ ପରିବେଶରେ ମଧ୍ୟ ସେ କେବେହେଲେ ତାକୁ ଛାଡ଼ି ନ ଥିଲେ । ତାଙ୍କର ଭଗବଦ୍‌ଗୀତା ପ୍ରକାଶ ପାଇଲା ପରେ ଓଡ଼ିଶାର ସ୍ୱନାମଧନ୍ୟ ମୁଖ୍ୟ ବିଚାରପତି ସ୍ୱର୍ଗତ ଗତିକୃଷ୍ଣ ମିଶ୍ର ଥରେ ସମସ୍ତଙ୍କ ଆଗରେ କହିଲେ, "I have to revise my opinion about Janakibabu after going through 'The Bhagbat Gita'." ନିର୍ଭୀକ ଏବଂ ସତ୍ୟକଥା କହିବାରେ ଗତିବାବୁଙ୍କର ସାରା ଓଡ଼ିଶାରେ ସୁନାମ ଥିଲା ।

ମୋର ବଡ଼ବାପା ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ ପୁରୀ ଜିଲ୍ଲା ସ୍କୁଲର ପ୍ରଧାନଶିକ୍ଷକ ଥିଲାବେଳେ ଜାନକୀବାବୁ ତାଙ୍କର ଜଣେ ଗୁଣମୁଗ୍ଧ ଛାତ୍ର ଥିଲେ । ସେ ଏକଥା ନିଜେ ମତେ କହିଛନ୍ତି । ସେଇ ସୂତ୍ରରେ ସେ ମତେ ଚାକିରି ଆରମ୍ଭରୁ ଜାଣିଥିଲେ । ଥରେ ମୁଁ କେନ୍ଦ୍ରାପଡ଼ାରେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥିଲାବେଳେ କଂଗ୍ରେସର ଜଣେ ନେତା ମୋର ପରିଚୟ ଦିଅନ୍ତେ, ସେ ସାମାନ୍ୟ ବିରକ୍ତ ହୋଇ କହିଲେ, ''ମୁଁ ତାକୁ ଜାଣେ । ସେ ବୈକୁଣ୍ଠବାବୁଙ୍କ ପୁତୁରା, ସୁନନ୍ଦାର ଭାଇ ।'' ବିଚରା ନେତାଙ୍କୁ ସୁନନ୍ଦା ପଟ୍ଟନାୟକ କିଏ ମାଲୁମ୍ ନ ଥାଏ । ଯାହାର ଶାସ୍ତ୍ରୀୟ ସଙ୍ଗୀତରେ ସାରା ଭାରତବର୍ଷର ସୁଧୀ ଶ୍ରୋତାମଣ୍ଡଳୀ ମୁଗ୍ଧ , ଯାହାଙ୍କୁ କଲିକତାର ଜନସାଧାରଣଙ୍କଠାରୁ ମୁଖ୍ୟମନ୍ତ୍ରୀ ପର୍ଯ୍ୟନ୍ତ 'ଆମାଦେର ସୁନନ୍ଦା' ବୋଲି ଜାଣନ୍ତି, ଶିକ୍ଷିତ ଓଡ଼ିଆ ଯୁବକଯୁବତୀମାନଙ୍କ ପାଖରେ ସେ ଅପରିଚିତା । ଏହାହିଁ ଓଡ଼ିଶାର ଚରମ ଦୁର୍ଭାଗ୍ୟ ।

ଥରକର ଘଟଣା । ମୁଁ ସେତେବେଳେ କଟକ ମ୍ୟୁନିସିପାଲ କର୍ପୋରେସନ୍‌ରେ ଉଭୟ ଏକ୍‌ଜିକ୍ୟୁଟିଭ୍ ଅଫିସର ଏବଂ ମ୍ୟୁନିସିପାଲ ଇଞ୍ଜିନିୟର ଦାୟିତ୍ୱରେ ଥାଏ । ପ୍ରବଳ କାମର ଚାପ ପଡୁଥାଏ । ସେତେବେଳେ ମ୍ୟୁନିସିପାଲିଟି ସରକାରଙ୍କ ଖାସ୍ ଅଧୀନରେ ଥାଏ । କଲେକ୍ଟର ଅକ୍ଷୟ କୁମାର ଦାସ (ଆଇ.ଏ.ଏସ୍) ଚେୟାରମ୍ୟାନ୍ ଥାଆନ୍ତି, ଯାହାଙ୍କୁ କହନ୍ତି, 'One man council'. ପ୍ରବଳ କାମ ହେଉଥାଏ । ଥରେ ମୁଖ୍ୟମନ୍ତ୍ରୀ ଓ.ଏମ୍.ପି. ଡାକବଙ୍ଗଳାରେ ରହିଲେ । ଓ.ଏମ୍.ପି. ଛକ ପାଖରେ ବହୁତ ଗରିବ ଲୋକ ଉଠାଦୋକାନ କରି ରାସ୍ତାକଡ଼ରେ ରହନ୍ତି । ତାଙ୍କ ଲାଗି ମ୍ୟୁନିସିପାଲିଟି ଦୋକାନଘର କରି ଯୋଗାଇ ଦଉ । କେତେ ଶୀଘ୍ର ହୋଇପାରିବ ବୋଲି ମତେ ପଚାରିବାରେ ମୋ' ପାଟିରୁ ବାହାରିପଡ଼ିଲା, ''ସାର୍ ଚେଷ୍ଟା କଲେ ଜମି ମିଳିବାର ୯୦ ଦିନରେ ହୋଇପାରିବ ।'' ସେ କହିଲେ, ''ପ୍ଲାନ୍ ପ୍ରସ୍ତୁତ କର, ଜମି କଥା ମୁଁ ବୁଝିବି ।'' ପରେ ମତେ ଜଣେ ବରିଷ୍ଠ ଅଫିସର କହିଲେ, ''ଜାଣିଛ ? ତମର ଏ

ଜମି ଲାଗି ମୁଖ୍ୟମନ୍ତ୍ରୀ ନିଜେ ଦିଲ୍ଲୀ ଗସ୍ତ ବେଳେ Minister of shipping and transport କୁ କହିଛନ୍ତି ।'' ଜମି ମିଳିଗଲା । ଯୁଦ୍ଧକାଳୀନ ଭିତ୍ତିରେ କାମ ଆରମ୍ଭ ହେଲା । ଟେଣ୍ଡର ଡାକିବାକୁ ସମୟ ନାହିଁ । ମୁଁ ଚେୟାରମ୍ୟାନ୍‌ଙ୍କୁ କହି ଡିପାର୍ଟମେଣ୍ଟାଲି କାମ କରିବାକୁ ପ୍ରସ୍ତାବ ଦେଲି । ଅକ୍ଷୟବାବୁ ରାଜି ହେଲେ; କିନ୍ତୁ ମତେ କହିଲେ– ଆପଣ ହଠାତ୍ ତିନି ମାସରେ ହୋଇପାରିବ ବୋଲି, କାହିଁକି କହିଦେଉଥିଲେ ? ମୁଁ ଓ ମୋର ସହକର୍ମୀମାନଙ୍କ ଅକ୍ଲାନ୍ତ ପରିଶ୍ରମରୁ ଏବଂ ଭଗବାନ୍‌ଙ୍କ କୃପାରୁ ଏ କାର୍ଯ୍ୟଟି ନିର୍ଦ୍ଦିଷ୍ଟ ସମୟରେ ଶେଷ ହେଲା । ଏହାର ଉଦ୍‌ଘାଟନ କରିବା ଅବସରରେ ମୁଖ୍ୟମନ୍ତ୍ରୀ ଉପସ୍ଥିତ ବିରାଟ ଜନତାଙ୍କୁ କହିଲେ, ''ପ୍ରକଳ୍ପ ଆରମ୍ଭରେ ନିର୍ବାହୀ ଯନ୍ତ୍ରୀ ଶ୍ରୀ ପଟ୍ଟନାୟକ ତିନି ମାସ ମଧ୍ୟରେ ସାରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ; ମାତ୍ର ମୁଁ ଦେଖିଛି ଅନେକ କାମ ତିନି ମାସ ମଧ୍ୟରେ ଆରମ୍ଭ ହୋଇ ନ ଥାଏ । ଆଜି ତିନି ମାସ ପୂରୁଛି ଏବଂ ମୁଁ ମାର୍କେଟ୍ କମ୍ପ୍ଲେକ୍ସର ଶୁଭ ଉଦ୍‌ଘାଟନ କରୁଛି । ତାଙ୍କୁ ଅନ୍ତରର ସାଧୁବାଦ ଜଣାଉଛି ।'' ପ୍ରଚଣ୍ଡ ଇଚ୍ଛାଶକ୍ତି ଏବଂ କାମ କରିବାର ଆଗ୍ରହ ଥିଲେ ଯେ କୌଣସି କାମ କରାଯାଇପାରେ । ମାତ୍ର ମତେ ଅତି ଦୁଃଖର ସହିତ କହିବାକୁ ପଡୁଛି– ଆଜିର ଯୁବ ଇଞ୍ଜିନିୟରମାନଙ୍କ ମଧ୍ୟରେ ସେ ଆଗ୍ରହ ଆଉ ନାହିଁ । ଅର୍ଥଲୋଭ ଏବଂ ଆଳସ୍ୟ ଆଜି ସମାଜକୁ ପଙ୍ଗୁ କରିବାକୁ ବସିଲାଣି । ଏହା ଯେତେ ଶୀଘ୍ର ଦୂର ହୁଏ, ସେତେ ଭଲ ।

କଟକ ମ୍ୟୁନିସିପାଲିଟିରେ ଥିବାବେଳେ ମୋର କାର୍ଯ୍ୟଦକ୍ଷତା ପାଇଁ ହେଉ କିମ୍ୱା ରୋକ୍‌ଠୋକ୍ କଥା କହିବାର ଶୈଳୀ ଯୋଗୁଁ ହେଉ, ଅନେକ ଲୋକ ମୋ' ଉପରେ ଈର୍ଷାନ୍ୱିତ ଥିଲେ ଏବଂ ମୋ' ବିରୋଧରେ ବାରମ୍ବାର ମୁଖ୍ୟମନ୍ତ୍ରୀଙ୍କ ନିକଟରେ ଚୁଗୁଲି କରୁଥିଲେ । ମୋର ବାଲ୍ୟବନ୍ଧୁ ଶ୍ରୀ ଅମୂଲ୍ୟରତ୍ନ ନନ୍ଦ ସେତେବେଳେ ମୁଖ୍ୟମନ୍ତ୍ରୀଙ୍କ ସେକ୍ରେଟେରୀ ଥାଏ । ତେଣୁ ମତେ ଟିକିନିଖି ସବୁ ଖବର ମିଳୁଥାଏ । ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରି ସବୁକଥା ବୁଝାଇଦେବାକୁ ମତେ ସେ ପରାମର୍ଶ ଦେଉଥାଏ; ମାତ୍ର ମୋର ଗୋଟେ ବଦ୍‌ଗୁଣ ବିନା ଡାକରାରେ ମୁଁ କାହା ପାଖକୁ ଯାଏ ନାହିଁ । ଶେଷରେ ସେ ଡାକରା ଆସିଲା । ସେତେବେଳେ କଟକରେ ଆର୍.ଡି.ସି. ଥିବା ମୋର ଶୁଭାକାଂକ୍ଷୀ ଶ୍ରୀ ସତ୍ୟରଞ୍ଜନ ପାଲ ଦିନେ ମତେ କହିଲେ, ''ସବୁ କାମ ତ କରୁଛ, ମୁଖ୍ୟମନ୍ତ୍ରୀଙ୍କୁ ମଝିରେ ମଝିରେ ଦେଖାକରି ସବୁକଥା ବୁଝାଇ ଦଉନ କାହିଁକି ? ମୁଁ ତାଙ୍କୁ ତମ ବିଷୟରେ ସବୁ କହିଦେଇଛି । ତମେ କାଲି ରାତିରେ ଯେମିତି ହେଲେ ଯାଇ ତାଙ୍କୁ ଦେଖାକରିବ ।''

ମୁଁ ରାତି ୮ଟା ବେଳକୁ ମୁଖ୍ୟମନ୍ତ୍ରୀ ନିବାସରେ ପହଞ୍ଚିଲି । ସାଙ୍ଗରେ ମୋର ଜଣେ ସମ୍ପର୍କୀୟ ଭାଇ ବୁଢ଼ା (ଶ୍ରୀ ବୈଷ୍ଣବ ଚରଣ ଦାସ, ରିଡର୍ ପଲିଟିକାଲ ସାଇନ୍ସ)କୁ ନେଇଥାଏ । ପ୍ରାଇଭେଟ୍ ସେକ୍ରେଟେରୀ ପି.ଏସ୍. ରାଓଙ୍କୁ ମୁଁ ଆସିବାର ଉଦ୍ଦେଶ୍ୟ କହି ଟିକିଏ ସାକ୍ଷାତ କରାଇଦେବା ଲାଗି ଅନୁରୋଧ କଲି । ମୁଁ ଟିକିଏ ଜଲ୍‌ଦି ଶୋଇପଡ଼େ, ଭୋର୍ ଚାରିଟାରେ ଉଠେ । ମୁଁ ଶୁଣିଥିଲି ମୁଖ୍ୟମନ୍ତ୍ରୀ ରାତି ୧ଟା ଓ ୨ଟା ପର୍ଯ୍ୟନ୍ତ ସାକ୍ଷାତ ଦିଅନ୍ତି । ସେ ଆମକୁ ଗୋଟେ ରୁମ୍‌ରେ ବସାଇଦେଇ ଯଥାଶୀଘ୍ର ଡାକିବେ ବୋଲି କହିଲା । ରାତି ୧୦ଟା ପରେ ମୁଁ ସେଠାରେ ସେଇ ଚୌକିରେ ଶୋଇପଡ଼ିଲି । ମଝିରେ ମଝିରେ ବୁଢ଼ା ମତେ ନିଦରୁ ଉଠାଇଦେଉଥାଏ ।

ଏମିତି ତିନି ଚାରିଥର ଶୁଆଉଠା ପରେ ରାଓବାବୁ ମତେ କହିଲେ, ଏଇ ଦଶ ମିନିଟ୍‌ରେ ଆପଣଙ୍କ ପାଳି ପଡ଼ିବ । ମୁହଁ ହାତ ଧୋଇକରି ପ୍ରସ୍ତୁତ ହୁଅନ୍ତୁ । ମୁଁ ଘଣ୍ଟାକୁ ଚାହିଁ ଦେଖିଲି, ରାତି ଗୋଟାଏ ବାଜିବାକୁ ଯାଉଛି । କିଛି ସମୟ ପରେ ମୁଖ୍ୟମନ୍ତ୍ରୀଙ୍କ ଡାକରା ଆସିଲା । ମୁଁ ସେ କୋଠରିକୁ ଯାଇ ଦେଖିଲି, ମୁଖ୍ୟମନ୍ତ୍ରୀ ଏକୁଟିଆ ଗୋଟିଏ ସୋଫାରେ ବସିରହିଛନ୍ତି ଏବଂ ମୁହଁରେ କ୍ଲାନ୍ତି କିମ୍ବା ନିଦ୍ରାର କୌଣସି ଲକ୍ଷଣ ନାହିଁ । ସେ ଟିକିଏ ଗମ୍ଭୀର ଦେଖାଯାଉଥା'ନ୍ତି । ମୁଁ ସେ ଏବଂ ମ୍ୟାଡାମ୍ ପଟ୍ଟନାୟକ ନିର୍ଦ୍ଦେଶ ଦେଇଥିବା ବିଭିନ୍ନ ପ୍ରକଳ୍ପର ଅଗ୍ରଗତି ବିଷୟରେ ତାଙ୍କୁ ସବୁ ବୁଝାଇଦେଇ ଏବଂ କାମରେ ଲାଗି ରହିବା ଯୋଗୁଁ ନିୟମିତ ଦେଖାକରିପାରୁ ନାହିଁ ବୋଲି କ୍ଷମା ମାଗିଲି । ସେ ଟିକିଏ ଖୁସି ହେଲାପରି ଜଣାପଡ଼ିଲେ । ତା'ପରେ ମତେ ହଠାତ୍ ପଚାରିଲେ ତମେ ପରା ଗୋଟେ ପ୍ୟାଲେସିଆଲ୍ କୋଠାରେ ରହୁଛ । ମୁଁ କହିଲି, "ସାର୍ !" ସେ ହଠାତ୍ ବିରକ୍ତ ହୋଇ କହିଲେ, କ'ଣ ସାର୍, ସେଟା ତମ ନିଜ ଘର ? ମୁଁ କହିଲି, ସାର୍, ମୁଁ ଏ ପର୍ଯ୍ୟନ୍ତ ମୋର ଘର କରିପାରି ନାହିଁ । ଆରମ୍ଭ କରିଛି । ଏ ଘରଟା ଶ୍ରୀମତୀ ରାନୁ ରଥଙ୍କର । ମୁଁ ୧୫୦୦ ଟଙ୍କା ଭଡ଼ାରେ ରହୁଛି । ସେ ଟିକିଏ ଆଶ୍ଚର୍ଯ୍ୟ ହେଲାପରି କହିଲେ, "ଆମ ରାନୁ (ଶ୍ରୀମତୀ ରଥ) ସେତେବେଳେ ଓଡ଼ିଶା ରେଡକ୍ରସ୍ ସୋସାଇଟିର ସେକ୍ରେଟାରୀ ଥାଆନ୍ତି ଏବଂ ମୁଖ୍ୟମନ୍ତ୍ରୀଙ୍କର ତାଙ୍କ ପ୍ରତି ବହୁତ ସ୍ନେହ ଥାଏ । ତା'ପରେ ପଚାରିଲେ, ତୁମେ ଆଉ ଗୋଟେ ପ୍ରାସାଦ ତିଆରି କରୁଛ ବୋଲି ଶୁଣିଲି । ମୁଁ କହିଲି, "ସାର୍, ସରକାରଙ୍କ ଅନୁମତି ନେଇ ମୁଁ ମୋର ଘର ଆରମ୍ଭ କରିଛି; ମାତ୍ର କାଠ ଅଭାବରୁ ସେ ଘର ବନ୍ଦ ହୋଇପଡ଼ିଛି । ସେ ଘରକୁ କିଏ ଯଦି ପ୍ରାସାଦ ବୋଲି ଭାବୁଥାଏ, ତେବେ ମୋର କିଛି କହିବାର ନାହିଁ । ସେତେବେଳକୁ ମୁଁ ଜାଣିସାରିଲିଣି ଯେ, ମୋ' ନାମରେ ପ୍ରବଳ ଚୁଗୁଲି ହୋଇଛି । ସେ ପଚାରିଲେ କଟକରେ ପୋଷ୍ଟିଂ ହେବା ଆଗରୁ

କେଉଁଠି କେଉଁଠି ଥିଲ ? ମୁଁ କହିଲି, ''ସାର୍, ମୁଁ ଚାକିରି ଆରମ୍ଭରୁ କୋରାପୁଟରେ ଥିଲି । ସେ କହିଲେ, କେତେ ମାସ ? ମୁଁ କହିଲି ଚାରି ବର୍ଷ ଆଠ ମାସ । ସେ ମତେ ଟିକିଏ ଆଶ୍ଚର୍ଯ୍ୟ ହେଲାପରି ଅନେଇଲେ । ତା'ପରେ ପଚାରିଲେ କୋରାପୁଟ ପରେ କେଉଁଠାକୁ ଗଲ । ମୁଁ କହିଲି, ''ସାର୍ ଫୁଲବାଣୀ ।'' ତାଙ୍କୁ କେମିତି ଧାରଣା ଦିଆଯାଇଥିଲା ଯେ ମୁଁ କୋରାପୁଟରେ ଦୁଇ ଚାରି ମାସ ରହି ଧରାଧରି କରି କଟକ କିମ୍ବା ଭୁବନେଶ୍ୱର ଚାଲିଆସିଛି, ଯାହାକି ସାଧାରଣରେ ଅନ୍ୟ ଅଫିସରମାନେ କରିଥା'ନ୍ତି; ମାତ୍ର ଚାକିରି ଆରମ୍ଭରୁ ବଦଳି ହେଲେ କାହାକୁ ଧରାଧରି ନ କରିବାକୁ ମୁଁ ପ୍ରତିଜ୍ଞା କରିଥିଲି ଏବଂ ନିଃସଙ୍କୋଚରେ କହିବି ଯେ ଶତକଡ଼ା ୮୦ ଭାଗ ମୁଁ ମୋ' ଜୀବନରେ ସେଟା ପାଳନ କରିଛି । ସେ ପଚାରିଲେ, ତା'ପରେ କୁଆଡ଼େ ଗଲ ? ମୁଁ କହିଲି, ରାଇରଙ୍ଗପୁର । ସେ କହିଲେ– ''ସେଟା ତ ଟାଟା ପାଖରେ, ବହୁତ ଦୂର । ମୁଁ ହଁ କଲି । ତା' ପରେ କହିଲେ– ତା' ପରେ କୁଆଡ଼େ ଗଲେ ? ମୁଁ କହିଲି, ସୁନ୍ଦରଗଡ଼ । ମୁଁ କହିଲି, ''ସାର୍, ଫୁଲବାଣୀ ଏବଂ ସୁନ୍ଦରଗଡ଼ ଜିଲ୍ଲାକୁ ମୋର ଦୁଇ ଥର ଲେଖାଏଁ ବଦଳି ହୋଇଛି ।'' ତାଙ୍କର ଧାରଣା ଥିଲା ମୁଁ ଧରାଧରି କରି କଟକ ଭୁବନେଶ୍ୱର ପନ୍ଦର କୋଡ଼ିଏ ବର୍ଷ ହେଲା ରହିଛି । ସବୁ ଶୁଣିସାରିଲା ପରେ ସେ କେବଳ ଗୋଟିଏ ଶବ୍ଦ କହିଲେ, ''ଆଚ୍ଛା ହଉ !'' ମତେ ଅମୂଲ୍ୟ ଆଗରୁ କହିଥାଏ, ''ଏ ଶବ୍ଦଟି କହିଲା ପରେ, ତମେ ଜାଣିବ ଇଣ୍ଟରଭିଉ ସରିଲା ।'' ମୁଁ ନମସ୍କାର କରି କଟକ ଫେରିଆସିଲି ଏବଂ ତା' ଆରଦିନ ଫୋନ୍ କରି ଅମୂଲ୍ୟକୁ ସବୁକଥା ଜଣାଇଦେଲି । ସେ ମତେ ବହୁତ ଭଲପାଏ । ଖାଲି କହିଲା, ''ତମ ଇଣ୍ଟରଭ୍ୟୁ ଖୁବ୍ ଭଲ ହୋଇଛି । ଫଳ ଶୀଘ୍ର ବାହାରିବ ।'' ମୁଁ କେବଳ କହିଲି, ''ଏତେ ଖଟିବା ପରେ ଯଦି ମୋ ନାଁ'ରେ ଚୁଗୁଲି ହେଲା, ତେବେ ସେ ମ୍ୟୁନିସିପାଲିଟିରେ ରହିବା ମୋର ଇଚ୍ଛା ନୁହେଁ ।''

ତିନି ଚାରିଦିନ ପରେ ଆମ ବିଭାଗର ସେକ୍ରେଟେରୀ ମତେ ଡକେଇ ପଠେଇଲେ । ମୁଁ ଦେଖା କରିବା ପରେ, ମତେ ବସିବାକୁ କହିଲେ ଏବଂ ହସିକରି କହିଲେ, ''ମୃତ୍ୟୁଞ୍ଜୟ ! ସଂସ୍କୃତ ଶ୍ଳୋକ ବୋଲିବାରେ ତମର ଦକ୍ଷତା ଅଛି ବୋଲି ମୁଁ ଜାଣିଛି; ମାତ୍ର ମନ୍ତ୍ରତନ୍ତ୍ର କେବେଠୁ ଶିଖିଲିଣି ?'' ମୁଁ କିଛି ବୁଝି ନ ପାରି ତାଙ୍କ ମୁହଁକୁ ଚାହିଁଲି । ସେ ଥାକରୁ ଗୋଟେ ଫାଇଲ୍ ବାହାର କରି ମତେ ପଢ଼ିବାକୁ ଦେଲେ । ଯେଉଁଥିରେ ମୁଁ ଅନେକଦିନ ଧରି କଟକରେ ରହିଥିବାରୁ ମତେ କଟକ ବାହାରକୁ ପୋଷ୍ଟିଂ କରିବାପାଇଁ ମୁଖ୍ୟମନ୍ତ୍ରୀଙ୍କର ନିର୍ଦ୍ଦେଶ ଥିଲା । ତା'ପରେ ମୋର ମୁଖ୍ୟମନ୍ତ୍ରୀଙ୍କ ସହିତ ସାକ୍ଷାତ ହେବାପରେ, ଆଉ ଗୋଟିଏ ନିର୍ଦ୍ଦେଶନାମାରେ

ଅର୍ଡର ଥିଲା ଶ୍ରୀ ପଟ୍ଟନାୟକ ଦୀର୍ଘ ୧୬ ବର୍ଷ ଧରି ଓଡ଼ିଶାର ସୁଦୂର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳମାନଙ୍କରେ କାମ କରିଆସିଛନ୍ତି । ତେଣୁ କଟକରେ ତାଙ୍କୁ ଆଉ ତିନି ବର୍ଷ ରଖାଯାଉ । ସେକ୍ରେଟେରୀ ମତେ କହିଲେ, ''ଯା'କୁ ମନ୍ତ୍ର ନ କହି, ମୁଁ ଆଉ କ'ଣ କହିବି ? କଟକ ପୂର୍ତ୍ତ ବିଭାଗ ତ ଏବେ ଖାଲି ନାହିଁ, ତମକୁ ଏବଂ କେ.କେ. ଚାନ୍ଦକୁ ମୁଁ Mutual transfer କରିଦେଉଛି । ତମେ O.B.C.C. କୁ ଆସିବ ଏବଂ କେ.କେ. ଚାନ୍ଦ୍ ମ୍ୟୁନିସିପାଲିଟିକୁ ଯିବ ।'' ମୁଁ ନୀରବରେ ସମ୍ମତି ଜଣାଇଲି ।

ମୋର ଚିଫ୍ ଇଞ୍ଜିନିୟର ପୋଷ୍ଟକୁ ପ୍ରମୋଶନ ପାଇବାବେଳ କଥା ମନେପଡୁଛି । ମନ୍ତ୍ରୀଙ୍କ ପାଖରୁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ସୁପାରିସ ଗଲା ମତେ ଗ୍ରାମ୍ୟ ଉନ୍ନୟନ ବିଭାଗର ମୁଖ୍ୟଯନ୍ତ୍ରୀ କରିବାକୁ ଏବଂ ସେଇ ଫାଇଲରେ ମୋର ସହପାଠୀ ବନ୍ଧୁ କୁଳମଣି ବିଶ୍ୱାଳକୁ O.B.C.C.ରେ M.D. ରୂପେ ପୋଷ୍ଟିଂ କରିବାକୁ ସୁପାରିସ ମଧ ଥିଲା । ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ଫାଇଲ୍ ଫେରିଲାପରେ ଦେଖାଗଲା, ମୋର O.B.C.C. କୁ ପୋଷ୍ଟିଂ ହୋଇଛି ଏବଂ କୁଳମଣିର ଗ୍ରାମ୍ୟ ଉନ୍ନୟନ ବିଭାଗରେ ମୁଖ୍ୟଯନ୍ତ୍ରୀ ଭାବେ ଅର୍ଡର ବାହାରିଛି । ଏଥିରେ ମୋ' ମନରେ ବହୁତ ଦୁଃଖ ହେଲା । ପୂର୍ତ୍ତମନ୍ତ୍ରୀ ଶ୍ରୀ ହରିହର ସ୍ୱାଇଁ ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରି ଅର୍ଡର ବଦଳାଇବା ପାଇଁ ମତେ ପ୍ରତିଶ୍ରୁତି ଦେଲେ; ମାତ୍ର ମୁଁ କହିଲି, ''ସାର୍, ଚାକିରି ଆରମ୍ଭରୁ ମୁଁ ସରକାରଙ୍କ ସବୁ ଆଦେଶ ମାନି ଆସିଛି, ତେଣୁ ମୁଁ କାଲି O.B.C.C. ରେ join କରିଯିବି ।'' କିଛି ମାସ ପରେ ପୂର୍ତ୍ତମନ୍ତ୍ରୀଙ୍କ ସୁପାରିସ ଏବଂ ମୁଖ୍ୟମନ୍ତ୍ରୀଙ୍କ ଆଶୀର୍ବାଦରୁ ପୂର୍ତ୍ତ ବିଭାଗର ମୁଖ୍ୟଯନ୍ତ୍ରୀ ରୂପେ ପୋଷ୍ଟିଂ ହେଲି ।

ମୁଁ ଅନେକ ନିନ୍ଦୁକଙ୍କ ମୁହଁରୁ ଶୁଣିଛି ଯେ ଜାନକୀବାବୁ ବହୁତ ଚୁଗୁଲି ଶୁଣନ୍ତି; ମାତ୍ର ମୋ' ନିଜ ଅନୁଭୂତିରୁ ମୁଁ କହିବି– ସେ ସବୁପ୍ରକାର ଲୋକଙ୍କ କଥା ଶୁଣନ୍ତି; ମାତ୍ର ଶେଷରେ ତାଙ୍କର ସୁଚିନ୍ତିତ ମତାମତ ଦିଅନ୍ତି ଏବଂ ରାଜନୀତିକ ଚାପରୁ ଯଦି କୌଣସି ଅଫିସର ପ୍ରତି ଅନ୍ୟାୟ ହୋଇଥିବାର ଜାଣନ୍ତି, ଯଥାଶୀଘ୍ର ତା'ର ପ୍ରତିବିଧାନ କରନ୍ତି ।

ଦୈନନ୍ଦିନ ଜୀବନରେ ଜାନକୀବାବୁ ଅତ୍ୟନ୍ତ ଭଦ୍ର ଏବଂ ମାର୍ଜିତ । କେବେହେଲେ ଗୋଟିଏ ଅଶାଳୀନ ଭାଷା ତାଙ୍କ ମୁହଁରୁ କେହି ଶୁଣି ନାହାନ୍ତି । ମୁଁ ପିଲାଦିନେ ମୋ ଜେଜେବାପାଙ୍କ ମୁହଁରୁ ଶୁଣିଛି – ଖୋର୍ଦ୍ଧା ଏବଂ ତା'ର ନିକଟବର୍ତ୍ତୀ ଅଞ୍ଚଳରେ ସମ୍ଭ୍ରାନ୍ତ କରଣ ପରିବାରରେ ଯେଉଁଭଳି ଭାଷା ବ୍ୟବହାର କରାଯାଏ, ତାହାହିଁ ଶୁଦ୍ଧ 'ଓଡ଼ିଆ ଭାଷା' । ଅନ୍ୟାନ୍ୟ ଅଞ୍ଚଳରେ ସେ ଭାଷା ଉପରେ

ଆଞ୍ଚଳିକତାର ପ୍ରଭାବ ସୁସ୍ପଷ୍ଟ । ଥରେ ଜଣେ ବନ୍ଧୁଙ୍କ ପୁଅ ବାହାଘରରେ ଯୋଗଦେବାପାଇଁ ମୁଁ ମୋର ସ୍ତ୍ରୀ ଏବଂ ପାରିବାରିକ ବନ୍ଧୁ ଅମୂଲ୍ୟରତ୍ନ ମହାନ୍ତି ଆଠଗଡ଼ ଯାଇଥିଲୁ । ସେଠାରେ ପହଞ୍ଚି ଦେଖିଲୁ, ଜାନକୀବାବୁ ଆମ ଆଗରୁ ଆସିଛନ୍ତି ଏବଂ ଡ୍ରଇଂ ରୁମ୍‌ରେ ଆମ ବନ୍ଧୁ (ବସନ୍ତ ପଟ୍ଟନାୟକ) ଏବଂ ଅନ୍ୟ କେତେଜଣଙ୍କ ସହ ଗପସପ କରୁଛନ୍ତି । ଜାନକୀବାବୁ ସେତେବେଳେ ମୁଖ୍ୟମନ୍ତ୍ରୀ ନ ଥା'ନ୍ତି । ଚାପମୁକ୍ତ ହୋଇଥିବାରୁ ସେ ଖୁବ୍ ଖୁସି ଜଣାପଡୁଥା'ନ୍ତି । ମତେ ଡାକି ତାଙ୍କ ପାଖରେ ବସିବାକୁ କହିଲେ । ତା'ପରେ ବସନ୍ତବାବୁଙ୍କୁ ଦେଖାଇ କହିଲେ, ''ମୃତ୍ୟୁଞ୍ଜୟ ! ଜାଣିଛ ! ଯା'କୁ ଆମେ ଦିଲ୍ଲୀରେ 'All India Radio' ବୋଲି ଡାକୁଥିଲୁ ।'' ସେତେବେଳେ କେତେଜଣ ଓଡ଼ିଆ ଦିଲ୍ଲୀରେ ଚାକିରି କରୁଥିଲେ । ତା'ପରେ ମତେ କହିଲେ, ''ତୁମର ପତ୍ନୀ ସାଙ୍ଗରେ ଆସିଛନ୍ତି ତ ?'' ମୁଁ ହଁ କଲାରୁ ତାଙ୍କୁ ଡାକିବାକୁ କହିଲେ । ସେ ଆସି ନମସ୍କାର କରିବାପରେ ତାଙ୍କୁ ପିଲାମାନଙ୍କ ବିଷୟରେ ପଚାରିଲେ। ତା'ପରେ କହିଲେ, ''ତମେ ନିୟମିତ କିଛି ପଢ଼ାପଢ଼ି କର ତ ? ସେ କହିଲା, ସାର୍, ମୁଁ ପ୍ରତିଦିନ ରାତିରେ ଏଗାରଟା/ବାରଟା ପର୍ଯ୍ୟନ୍ତ କିଛି ନା କିଛି ମାଗାଜିନ୍ ହେଉ ବା କ୍ଷୁଦ୍ରଗଳ୍ପ କିମ୍ବା ଉପନ୍ୟାସ ହେଉ ପଢ଼େ । ତା'ପରେ ମୋ' ଆଡ଼କୁ ଚାହିଁ କହିଲା; ମାତ୍ର ଇଏ ଶୀଘ୍ର ଶୋଇପଡ଼ନ୍ତି ଏବଂ ଭୋର୍ ଚାରିଟାବେଳୁ ଉଠି ନିଶ୍ଚୟ କିଛି ନା କିଛି ପଢ଼ନ୍ତି । ସେ କହିଲେ, ''ବହୁତ ଭଲ ଅଭ୍ୟାସ ।'' କିଛି ସମୟ ଖୁସି ଗପ କଲାପରେ ମତେ କହିଲେ, ''ମୃତ୍ୟୁଞ୍ଜୟ ! ତମେମାନେ ବସନ୍ତର ବନ୍ଧୁବାନ୍ଧବ । ରୁହ, ଖାଇପିଇ ଯିବ । ଆମେ ହେଲୁ ବାହାରିଆ ଲୋକ । ଏଥର ଉଠିବା । ବନ୍ଧୁବାନ୍ଧବଙ୍କ ଭିଡ଼ ଲାଗିଲାଣି ।'' ତାଙ୍କର ସରଳତା ଏବଂ ହୃଦୟଭରା ଆନ୍ତରିକତା ଯିଏ ଦେଖିଛି, ସେ କେବେ ଭୁଲିପାରିବ ନାହିଁ । ସଂସ୍କୃତିସମ୍ପନ୍ନ ଓଡ଼ିଆ ପରିବାରର ସେ ଜଣେ ପ୍ରତୀକ ।

ଜାନକୀବାବୁ ଆଉ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନାହାନ୍ତି । ତିନି ତିନି ଥର ମୁଖ୍ୟମନ୍ତ୍ରୀ ହେବାପରେ ପରିଣତ ବୟସରେ ସେ ଆସାମର ରାଜ୍ୟପାଳ ପଦବୀରେ ଅଧିଷ୍ଠିତ; ତଥାପି ତାଙ୍କର ସାହିତ୍ୟ ସେବା ଅବ୍ୟାହତ ରହିଛି । ନିକଟ ଅତୀତରେ ତାଙ୍କ ଲିଖିତ ପୁସ୍ତକ ଦିଲ୍ଲୀଠାରେ ମହାମହିମ ରାଷ୍ଟ୍ରପତିଙ୍କ ଦ୍ୱାରା ଉନ୍ମୋଚିତ ହୋଇଛି । ଭଗବାନ୍ କରନ୍ତୁ, ସେ ଦୀର୍ଘଜୀବୀ ହୋଇ ଆହୁରି ଉଚ୍ଚତର ପଦବୀ ମଣ୍ଡନ କରି ଉତ୍କଳମାତାର ଗୌରବ ବର୍ଦ୍ଧନ କରନ୍ତୁ ।

❑❑❑

# ଲଳିତ ମାନସିଂହ
# ଯୋଗ୍ୟ ପିତାର ଯୋଗ୍ୟ ସନ୍ତାନ

ମାୟାଧର ମାନସିଂହଙ୍କୁ ଦେଖିଥିଲି, ମୋର ଆଦ୍ୟ-ଯୌବନରେ ରେଭେନ୍‌ସା କଲେଜରେ ଆଇ.ଏସ୍‌ସି. ପଢ଼ିଲାବେଳେ । ଲଳିତ ମାନସିଂହଙ୍କୁ ଦେଖିଲି ଚାକିରିର ଶେଷବେଳକୁ ଚିଫ୍ ଇଞ୍ଜିନିୟର ହେବାବେଳକୁ ଗୋଟେ ସଭାରେ, ଯେଉଁଥି‍େ ମୁଖ୍ୟବକ୍ତା ହୋଇ ସେ ଦିଲ୍ଲୀରୁ ଆସିଥିଲେ ଏବଂ ମୋର ଦାୟିତ୍ୱ ଥିଲା ଶ୍ରୋତାମାନଙ୍କ ଆଗରେ ତାଙ୍କର ପରିଚୟ ପ୍ରଦାନ ।

ମାଟ୍ରିକ୍ୟୁଲେସନ୍‌ରେ 'ମହାନଦୀରେ ଜ୍ୟୋସ୍ନାବିହାର' କବିତା ପଢ଼ିବା ଦିନଠାରୁ ମୁଁ ଡକ୍ଟର ମାନସିଂହଙ୍କର ଗୋଟେ ଭକ୍ତ ପାଲଟିଯାଇଥିଲି ଏବଂ ଏକଲବ୍ୟ ଦ୍ରୋଣଙ୍କୁ ପୂଜା କଲାପରି ତାଙ୍କୁ ଭକ୍ତି କରୁଥିଲି । ଶେଷରେ ମୋର ଇଚ୍ଛା ପୂରଣ ହେଲା ଏବଂ ମୁଁ ଗର୍ବ ସହକାରେ ତାଙ୍କ ଆଗରେ ପୂରା କବିତାଟା ଆବୃତ୍ତି କରି ତାଙ୍କଠାରୁ ସାର୍ଟିଫିକେଟ୍ ପାଇଲି ଯେ ସାହିତ୍ୟରେ ଏଭଳି ଗଭୀର ଆଗ୍ରହ ସତ୍ତ୍ୱେ ମୁଁ କାହିଁକି କଳା ନ ପଢ଼ି ବିଜ୍ଞାନ ପଢ଼ିଲି ।

ଏ ଭିତରେ ମହାନଦୀରେ ବହୁତ ପାଣି ବହିଯାଇଛି । ମୁଁ ମଧ୍ୟ ଜୀବନର ଗୋପନ ଅଭିଳାଷ (ଆଇ.ଏ.ଏସ୍. ପରୀକ୍ଷାଦେବା ସେତେବେଳେ ପ୍ରତ୍ୟେକ ଭଲ ଛାତ୍ରର ସ୍ୱପ୍ନ ଥିଲା ।) ପରିତ୍ୟାଗ କରି ଚାଣକ୍ୟଙ୍କ ନୀତି ଅନୁସାରେ 'ଯୋ ଧ୍ରୁବାଣି ପରିତ୍ୟଜ୍ୟ ଅଧ୍ରୁବାଣି ନିଶେବତେ' ନୀତିରେ ନିଶ୍ଚିତ ଚାକିରି ଆଶାରେ ଇଞ୍ଜିନିୟର ହେଲି ଏବଂ କଲେଜ ସରିବା ସଙ୍ଗେ ସଙ୍ଗେ ଚାକିରି ଖଣ୍ଡେ ପାଇଲି ଏବଂ ଅନ୍ୟ ଦଶ ଜଣଙ୍କ ପରି ଜୀବନ ସ୍ରୋତରେ ନିଜକୁ ଭସାଇଦେଲି ।

ଆମ ଇଞ୍ଜିନିୟରମାନଙ୍କର ବର୍ଷରେ ଗୋଟେ ବଡ଼ ଦିନ ଥାଏ– ସାର୍ ବିଶ୍ୱେଶ୍ୱରାୟଙ୍କ ଜନ୍ମଦିନ ପାଳନ କରିବା। ଭାରତର ଜଣେ ପ୍ରଖ୍ୟାତ ଇଞ୍ଜିନିୟର ତଥା ତୁଙ୍ଗ ପ୍ରଶାସକ ହିସାବରେ ଭାରତ ସରକାର ତାଙ୍କୁ ଦେଶର ସର୍ବୋଚ୍ଚ ସମ୍ମାନ 'ଭାରତରତ୍ନ'ରେ ଭୂଷିତ କରିଥା'ନ୍ତି । ଗୋଟେ ବର୍ଷ ତାଙ୍କ ଜନ୍ମଦିନକୁ (ସେପ୍ଟେମ୍ବର ୧୫ ତାରିଖ) ମୁଖ୍ୟବକ୍ତା ଡାକିବା ଭାର ମୋ' ଉପରେ ପଡ଼ିଲା । ଇଞ୍ଜିନିୟର ପ୍ରଭାକର ସ୍ୱାଇଁଙ୍କ ଆନୁକୂଲ୍ୟରେ ଗଠିତ ଇଞ୍ଜିନିୟରିଂ ଫୋରମ୍‌ର ବାର୍ଷିକ ଉତ୍ସବକୁ ଲଳିତ ମାନସିଂହଙ୍କୁ ଡାକିବାପାଇଁ ସମସ୍ତେ ପ୍ରସ୍ତାବ ଦେଲେ । ପ୍ରଭାକରବାବୁ ତାଙ୍କର ଜଣାଶୁଣା । ସେ ମତେ ଦିଲ୍ଲୀରେ ତାଙ୍କର ଟେଲିଫୋନ୍ ନମ୍ବର ଧରାଇଦେଲେ । ଲଳିତ ମାନସିଂହ ସେତେବେଳକୁ ଚାକିରିରୁ ଅବସର ନେଇ ଦିଲ୍ଲୀରେ ଅବସ୍ଥାନ

କରୁଥା'ନ୍ତି । ତାଙ୍କ ବିଷୟରେ ବହୁତ କଥା ଶୁଣିଥିଲେ ମଧ୍ୟ ତାଙ୍କ ସହ ଚାକ୍ଷୁଷ ପରିଚୟ ନ ଥିଲା । ଏତେ ବଡ଼ ଲୋକ । ଲଣ୍ଡନରେ ଭାରତର ହାଇକମିସନର, ଯୁକ୍ତରାଷ୍ଟ୍ର ଆମେରିକାରେ ଭାରତରେ ରାଷ୍ଟ୍ରଦୂତ, ଭାରତ ସରକାରଙ୍କ ଅଧୀନରେ ବୈଦେଶିକ ବିଭାଗର ସେକ୍ରେଟେରୀ ହିସାବରେ ସେ କେବଳ ଓଡ଼ିଶାରେ ନୁହନ୍ତି, ସାରା ଭାରତରେ ବିଖ୍ୟାତ । ଆଇ.ଏ.ଏସ୍. ଏବଂ ଆଇ.ଏଫ.ଏସ୍. ପରୀକ୍ଷାରେ ସମଗ୍ର ଦେଶରେ ପ୍ରଥମ ସ୍ଥାନ ଅଧିକାର କରି ଓଡ଼ିଶାର ଗୌରବ ବୃଦ୍ଧି କରିଥିଲେ । ଏଭଳି ଜଣେ ଲୋକ ସହିତ କଥା ହେବାପାଇଁ ମୁଁ ଟିକିଏ ସଙ୍କୋଚବୋଧ କରୁଥିଲି; ମାତ୍ର ବନ୍ଧୁମାନଙ୍କ ଅନୁରୋଧକୁ ଏଡ଼ାଇ ନ ପାରି ଟେଲିଫୋନ୍ ଲଗାଇଲି । ସଙ୍ଗେ ସଙ୍ଗେ ସେପଟୁ ତାଙ୍କର ମନ୍ଦ୍ର, ସୁଲଳିତ କଣ୍ଠସ୍ୱର ଭାସିଆସିଲା, ''ମୁଁ ଲଳିତ ମାନସିଂ କହୁଛି ।'' ମୁଁ ନିଜର ପରିଚୟ ଏବଂ ତଥା ଅନୁଷ୍ଠାନ ବିଷୟରେ କହି ତାଙ୍କୁ ମୁଖ୍ୟବକ୍ତା ହେବାପାଇଁ ଅନୁରୋଧ କଲି ଏବଂ ମୁଖ୍ୟ ଅତିଥିଭାବେ ଓଡ଼ିଶାର ମହାମାନ୍ୟ ରାଜ୍ୟପାଳ ଶ୍ରୀଯୁକ୍ତ ରାମେଶ୍ୱର ଠାକୁର ଆସୁଥିବା କଥା ମଧ୍ୟ କହିଲି । ତାଙ୍କର ପ୍ରଥମ ପ୍ରଶ୍ନ ଥିଲା– ଆମ ଅନୁଷ୍ଠାନ ତାଙ୍କ ଯିବାଆସିବାର ବିମାନ ଟିକେଟ ଖର୍ଚ୍ଚ ବହନ କରିପାରିବ କି ? ମୁଁ ବିନୀତ ଭାବରେ ଆମର ଆର୍ଥିକ ଅସ୍ୱଚ୍ଛଳ ବିଷୟ କହି ଅକ୍ଷମତା ପ୍ରକାଶ କଲି । ତା'ପରେ ସେ କହିଲେ, ''ଠିକ୍ ଅଛି । ତମେ ଫୋନ୍ ଧରିଥାଅ । ମୁଁ ମୋର ଡାଏରୀ ଦେଖିସାରି ତମ ସାଙ୍ଗେ କଥା ହଉଛି ।'' ପାଞ୍ଚ ମିନିଟ୍ ପରେ ସେ ଫୋନ୍ ଧରିଲେ ଏବଂ ୧୩ ତାରିଖ ସୁଦ୍ଧା ଭୁବନେଶ୍ୱରରେ ପହଞ୍ଚିବେ ବୋଲି ପ୍ରତିଶ୍ରୁତି ଦେଲେ । ଆମର ଆନନ୍ଦର ସୀମା ରହିଲାନି ।

ସେପ୍ଟେମ୍ବର ୧୪ ତାରିଖ ସକାଳେ ମୁଁ ତାଙ୍କୁ କାନନବିହାରରେ ତାଙ୍କ ସାନଭଉଣୀ 'ନିବେଦିତା'ଙ୍କ ଘରେ ଭେଟିଲି । କଲିଂବେଲ୍ ଦେବାରୁ କବାଟ ଖୋଲିଲେ ସେ, ସ୍ୱୟଂ ଲଳିତ ମାନସିଂ । ପିତାପୁତ୍ରଙ୍କ ଭିତରେ ଏଭଳି ସାମଞ୍ଜସ୍ୟ ମୁଁ କ୍ୱଚିତ୍ ଦେଖିଛି । ଉଜ୍ଜ୍ୱଳ ଗୌରବର୍ଣ୍ଣ, ହସ ହସ ମୁହଁରେ ସେ ମୋତେ ସ୍ୱାଗତ ଜଣାଇଲେ । ମୁଁ ପୁଣିଥରେ ତାଙ୍କର ଗସ୍ତ ଖର୍ଚ୍ଚ ଦେବାରେ ଆମର ଅକ୍ଷମତା ପ୍ରକାଶ କରି କ୍ଷମା ମାଗିବାରେ, ସେ ତାକୁ ହସରେ ଉଡ଼ାଇଦେଲେ । ପ୍ରଥମ ଦେଖାରେ ତାଙ୍କର ସରଳତା ତଥା ବ୍ୟକ୍ତିତ୍ୱ ମତେ ମୁଗ୍ଧ କଲା । ଓଡ଼ିଶା ବିଷୟରେ ବିଶେଷତଃ ଇଞ୍ଜିନିୟରମାନଙ୍କ ବିଷୟରେ ଅନେକ କଥା ପଚାରି ବୁଝିଲେ । ସେତେବେଳେ ଆମେରିକା ସହିତ ପରମାଣୁ ନୀତି ନେଇ ଭାରତରେ ତୀବ୍ର ବାଦାନୁବାଦ ଚାଲିଥାଏ । ଅବଶେଷରେ ପ୍ରଧାନମନ୍ତ୍ରୀ ଅଟଳବିହାରୀ ବାଜପେୟୀ ଏବଂ ଆମେରିକା ରାଷ୍ଟ୍ରପତିଙ୍କ ମଧ୍ୟରେ ଉଭୟପକ୍ଷକୁ ସୁହାଇଲା ଭଳି ରାଜିନାମା ସ୍ୱାକ୍ଷରିତ ହେଲା । ଏ ରାଜିନାମାର ପ୍ରଚ୍ଛଦପଟର ନାୟକ ଥିଲେ ଲଳିତ ମାନସିଂହ । ସେତେବେଳେ ଶୁଣାଯାଉଥିଲା

ଯେ ସେ ଭାରତ ଫେରିବାପରେ ବୈଦେଶିକ ବିଭାଗର ମନ୍ତ୍ରୀ ହୋଇପାରନ୍ତି କିମ୍ବା କୌଣସି ରାଜ୍ୟର ରାଜ୍ୟପାଳ ହୋଇପାରନ୍ତି । ବୈଦେଶିକ ସେବାର କୌଣସି ଅଫିସର ଆଜି ପର୍ଯ୍ୟନ୍ତ ଏ ତିନିଟି ଉଚ୍ଚପଦବୀ ଏକାଧାରରେ ମଣ୍ଡନ କରି ନାହାନ୍ତି । ଯଦିଓ ତାଙ୍କର ସହକର୍ମୀ ଶ୍ରୀ ରମେଶ ଭଣ୍ଡାରୀ ଉତ୍ତରପ୍ରଦେଶର ରାଜ୍ୟପାଳ ହୋଇପାରିଛନ୍ତି । ସେ କାହିଁକି ରାଜ୍ୟପାଳ ହେଲେନି ବୋଲି ପଚାରିବାରୁ ସେ ଟିକେ ହସିଲେ ଏବଂ କହିଲେ, ''ମୃତ୍ୟୁଞ୍ଜୟ ! ମୁଁ ଦେଖୁଛି, ତମେ ଜଣେ ଉଗ୍ର ଜାତୀୟତାବାଦୀ ଓଡ଼ିଆ । ଆମ ଦେଶରେ କ'ଣ କେବଳ ଯୋଗ୍ୟତା ଅନୁସାରେ ପଦବୀ ମିଳେ ? ତା'ଛଡ଼ା ବିଜୁ ପଟ୍ଟନାୟକ ଗଲାପରେ ଓଡ଼ିଆଙ୍କ ପାଇଁ ଦିଲ୍ଲୀ ଦରବାରରେ କହିବାପାଇଁ ଆଉ କିଏ ଅଛନ୍ତି ?'' ଏ କଥା ଶୁଣି ମତେ ବହୁତ ଦୁଃଖ ଲାଗିଲା । ଅନ୍ୟାନ୍ୟ କଥା ପରେ ଆମର ନିମନ୍ତ୍ରଣପତ୍ର ଦେଇ ମୁଁ ବିଦାୟ ନେଲି ଏବଂ ସେ ମଧ୍ୟ ଠିକ୍ ସମୟରେ ସଭାରେ ଉପସ୍ଥିତ ହେବେ ବୋଲି ପ୍ରତିଶ୍ରୁତି ଦେଲେ ।

ଠିକ୍ ସମୟରେ ସଭାକାର୍ଯ୍ୟ ଆରମ୍ଭ ହେଲା । ମୁଖ୍ୟବକ୍ତାଙ୍କ ପରିଚୟ ପ୍ରଦାନ କରିବା ଅବସରରେ ମୁଁ କହିଲି, ''ଆଗ ଆମେ ଏଭଳି ପ୍ରତିଭାବାନ୍ ଲୋକଙ୍କୁ ଜନ୍ମ ଦେଇଥିବା ସ୍ୱନାମଧନ୍ୟ କବି ଡକ୍ଟର ମାୟାଧର ମାନସିଂଙ୍କ ବିଷୟରେ କିଛି ଜାଣିବା'' ଏବଂ ଭାବବିହ୍ୱଳ ସ୍ୱରରେ ତାଙ୍କର କେତୋଟି କବିତା ଉଦ୍ଧାର କଲି । ପରେ ମତେ ଶୁଣାଗଲା ମାନ୍ୟବର ରାଜ୍ୟପାଳ ତାଙ୍କୁ ପଚାରୁଛନ୍ତି, ''ସେ ଏତେବଡ଼ ଭାବପ୍ରବଣ ସ୍ୱରରେ କ'ଣ କହୁଛନ୍ତି ?'' ଉତ୍ତରରେ ଲଳିତ ମାନସିଂ କହିଲେ, ''ସାର୍, ମୁଁ ତାଙ୍କର ପୁଅ; ମାତ୍ର ମୃତ୍ୟୁଞ୍ଜୟବାବୁ ତାଙ୍କର ମାନସସନ୍ତାନ । ସେ ମୋ ବାପାଙ୍କ କବିତାର ଜଣେ ବିମୁଗ୍ଧ ପାଠକ ।'' ତା'ପରେ ସେ ତାଙ୍କର ଓଜସ୍ୱିନୀ ଭାଷଣରେ ଭାରତର ବୈଦେଶିକନୀତି ବିଶେଷତଃ ସଦ୍ୟ ସମ୍ପାଦିତ ଆଣବିକ ନୀତି ଉପରେ ଗୋଟେ ସାରଗର୍ଭକ ଭାଷଣ ଦେଲେ, ଯାହାକି ଶ୍ରୋତାମାନଙ୍କ ମନରେ ଅନେକ ଦିନ ଧରି ମନେରହିବ ।

ସେ ଅତ୍ୟନ୍ତ ସରଳ ଏବଂ ବନ୍ଧୁବତ୍ସଳ ଥିଲେ । ଆମେରିକାରେ ଭାରତର ରାଷ୍ଟ୍ରଦୂତ ଥିବା ସମୟରେ ଥରେ ଓଡ଼ିଶା ଆସିବାବେଳେ ତାଙ୍କର ସହପାଠୀମାନଙ୍କୁ ଡାକି ଗୋଟେ ଭୋଜିର ଆୟୋଜନ କରିଥିଲେ । ସେ ଏତେ ଉଚ୍ଚ ପଦବୀକୁ ଯାଇଥିଲେ ମଧ୍ୟ ତାଙ୍କ ବନ୍ଧୁମାନଙ୍କ ବିଷୟରେ ସବୁ ଖବର ରଖୁଥିଲେ ।

ଲଳିତ, ମାନସିଂହ ବିଦେଶମନ୍ତ୍ରୀ ବା ରାଜ୍ୟପାଳ ହୋଇଥିଲେ ଓଡ଼ିଶାବାସୀ ବେଶୀ ଖୁସି ହୋଇଥା'ନ୍ତେ; ମାତ୍ର ଜଣେ ପ୍ରଚଣ୍ଡ ପ୍ରତିଭାଶାଳୀ ଓଡ଼ିଆ ହିସାବରେ ସେ ଚିରଦିନ ଆମମାନଙ୍କ ମନରେ ରହିବେ । ❑❑❑

# ସାଧୁଚରଣ ବେହେରା
## କଣ୍ଟ୍ରାକ୍ଟରମାନଙ୍କ ମଧ୍ୟରେ ସାଧୁ

୧୯୭୫ ମସିହାର କଥା । ମୁଁ ଫୁଲବାଣୀରେ ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ଥାଏ । ମୋର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥା'ନ୍ତି ଶ୍ରୀ ହରଗୋବିନ୍ଦ ପ୍ରସାଦ ପାତ୍ର । ଘଟଣାଚକ୍ରରେ ସେ ମୁଁ ଚିଫ୍ ଇଞ୍ଜିନିୟର (ବିଲ୍‌ଡିଂ)ରେ ଥିବାବେଳେ ମୋ ଅଧୀନରେ ସୁପରିଣ୍ଟେଣ୍ଡେଣ୍ଟ, D & P ରୂପେ କିଛିକାଳ କାର୍ଯ୍ୟ କରିଥିଲେ । ସେ ଅତ୍ୟନ୍ତ ଦୁର୍ଦ୍ଦାନ୍ତ ଥିଲେ ଏବଂ ଅଧସ୍ତନ ଅଫିସରମାନଙ୍କ ପ୍ରତି ବହୁତ ଖରାପ ବ୍ୟବହାର ପ୍ରଦର୍ଶନ କରୁଥିଲେ । ତାଙ୍କ ବ୍ୟବହାରରେ ଅତିଷ୍ଠ ହୋଇ ମୁଁ ମୁଖ୍ୟମନ୍ତ୍ରୀ ଶ୍ରୀ ବି.ଆର୍. ସ୍ୱାମୀଙ୍କୁ ମୋର ଦୁଃଖ କହିଲି । ସେ ସଙ୍ଗେ ସଙ୍ଗେ କହିଲେ, "There is a good sub-division and M. Korah is a very good man." ତେବେ ଏଟା ଟିକିଏ ଦୂର ପଡ଼ିବ । Can you go to Rairangpur?" କୋରା ସାହେବଙ୍କ ନାଁ ଶୁଣି ମୁଁ ସଙ୍ଗେ ସଙ୍ଗେ ରାଜି ହୋଇଗଲି । ମାସକ ମଧ୍ୟରେ ମୋର ରାଇରଙ୍ଗପୁର ବଦଳି ନିର୍ଦ୍ଦେଶ ଆସିଗଲା ଏବଂ ମୁଁ ଫୁଲବାଣୀର ଦାୟିତ୍ୱ ଦେଇ ରାଇରଙ୍ଗପୁର ପି.ଡବ୍ଲ୍ୟୁ.ଡି. ଏସ୍.ଡି.ଓ. ହିସାବରେ ମୟୂରଭଞ୍ଜ ଡିଭିଜନରେ ଯୋଗଦେଲି ।

ପ୍ରକୃତରେ ରାଇରଙ୍ଗପୁର ଓଡ଼ିଶାର ଗୋଟେ ଉପାନ୍ତ ଆଦିବାସୀବହୁଳ ଅଞ୍ଚଳ । ଏହାର ସୀମା 'ତିରିଙ୍ଗ' ଓଡ଼ିଶାର ଶେଷ ସୀମା ଏବଂ ଏହା ପରେ ବିହାର ପ୍ରଦେଶ ଆରମ୍ଭ ହୋଇଛି । ଏଠାରୁ ଟାଟାନଗରର ଦୂରତା ମାତ୍ର ୪୦ କି.ମି. । ରାଇରଙ୍ଗପୁର ସବ୍‌ଡିଭିଜନ୍‌ରେ କୁଳିଅଣା ସେକ୍‌ସନ୍ ଥିଲା । ଏ ଜାଗା ବାରିପଦା ଠାରୁ ନିକଟବର୍ତ୍ତୀ ଥିଲେ ହେଁ ମୋର ଜୁରିସ୍‌ଡିକ୍‌ସନ୍‌ରେ ଥିଲା ଏବଂ ଓଡ଼ିଶା ପଶ୍ଚିମବଙ୍ଗର ସୀମାନ୍ତରେ ଅବସ୍ଥିତ 'ଜାମ୍‌ଶୋଳା ତନଖି ଫାଟକ' ମୋ ଅଧୀନରେ ଥିଲା । ସେତେବେଳେ ସେଠି ଟ୍ରକ୍ ଓଜନ କରିବାପାଇଁ ୱେବ୍ରିଜ୍‌ର ପ୍ରଚଳନ ନ ଥିଲା କିମ୍ବା କର୍ମଚାରୀମାନଙ୍କପାଇଁ କ୍ୱାର୍ଟର୍ସ ନ ଥିଲା । ଏ ଚେକ୍‌ଗେଟ୍ ଦେଇ ଦୈନିକ ଶହ ଶହ ଟ୍ରକ୍, ବସ୍ ଯାତାୟାତ କରିଥାଏ ଏବଂ ଲକ୍ଷ ଲକ୍ଷ ଟଙ୍କାର ରାଜସ୍ୱ ଆଦାୟ ହୁଏ । ସେଠି ୱେବ୍ରିଜ୍ ଏବଂ କ୍ୱାର୍ଟର୍ସ କରିବାପାଇଁ କର୍ମସିଆଲ୍ ଟ୍ୟାକ୍ସ ଡିପାର୍ଟମେଣ୍ଟରୁ ଟଙ୍କା ବରାଦ୍ ହେଲା । ଯୁଦ୍ଧକାଳୀନ ଭିତ୍ତିରେ କାମ ଆରମ୍ଭ ହେଲା । କଣ୍ଟ୍ରାକ୍ଟର ଥିଲେ ଶ୍ରୀ ସାଧୁଚରଣ ବେହେରା । ପ୍ରଥମ ପରିଦର୍ଶନରେ ମୁଁ ତାଙ୍କ ପ୍ରତି ଆକୃଷ୍ଟ ହେଲି । ଅତ୍ୟନ୍ତ ସରଳ, ଭଦ୍ରବ୍ୟକ୍ତି ।

ଅଫିସରମାନଙ୍କ ପାଇଁ ବହୁତ ସମ୍ମାନ, ଯାହାକି ଆଜିକାଲି ପ୍ରାୟ ନାହିଁ କହିଲେ ଚଳେ । ପରିଧାନରେ ଗୋଟିଏ ସାଦା ଧୋତି ଓ ଧଳା କୁରୁତା ।

ଥରକର କଥା । ସାଧୁବାବୁ ମତେ କହିଲେ, ''ସାର୍, କ୍ୱାର୍ଟର୍ସ ଛାତର ରଡ୍ ବନ୍ଧା ସରିଲାଣି । ପାଣିପାଗ ବିଭାଗ କହୁଛି ଦୁଇଦିନ ଧରି ବର୍ଷା ହେବ । ଏତିକିବେଳେ କାଷ୍ଟିଂ କରିଦେବା । ରେଡିଓ ଯେତେବେଳେ କହୁଛି ବର୍ଷା ହେବ, ଦେଖିବେ ପାଗ ଶୁଖିଲା ରହିବ ।'' ସତକୁ ସତ ବିନା ବର୍ଷାରେ ଆମର କାଷ୍ଟିଂ ସରିଗଲା । ଏମିତି ମଜା ମଜା କଥା କହିବାରେ ସେ ଓସ୍ତାଦ୍ ଥିଲେ । ଅନ୍ୟକୁ ହସାଇଲେ ବି ନିଜେ ଟିକେ ହସୁ ନ ଥିଲେ ।

ଆଉଥରେ ତାଙ୍କ ଗାଁ (ବୁଢ଼ାମରା)ରୁ ମୋ ପାଖକୁ ଆସିଲେ । କହିଲେ, ''ସାର୍, ମୋର ଆପଣଙ୍କୁ ଗୋଟେ ବିଶେଷ ଅନୁରୋଧ ଅଛି ।'' ତାଙ୍କ ପୁଅ ନାଁ ବି 'ମୃତ୍ୟୁଞ୍ଜୟ' । ସେ ବୁର୍ଲା କଲେଜରୁ ଇଞ୍ଜିନିୟରିଂ ପାସ୍ କରି ମିଲିଟାରୀରେ ଯିବ ବୋଲି ଦରଖାସ୍ତ କରିଥାଏ । ସାଧୁବାବୁ କହିଲେ, ''ରେଫରି ଭାବେ ସେ ମୋ ନାଁ ଦେଇଛନ୍ତି । ମୋ' ପାଖକୁ ଡିଫେନ୍ସରୁ କାଗଜ ଆସିବ । ମୋର ଆଦୌ ଇଚ୍ଛା ନୁହେଁ ସେ ମିଲିଟାରୀରେ ଯୋଗଦେଉ । ଆପଣ ଚାହିଁଲେ ସବୁ ହୋଇପାରିବ । ଆପଣ କ୍ୟାରେକ୍ଟର ସାର୍ଟିଫିକେଟ୍‌ରେ ତା'ର ଚରିତ୍ର ଖରାପ ବୋଲି ଟିକେ ଲେଖିଦେବେ ।

ସତକୁସତ ସେ କାଗଜ ଆସିଲା । ମୁଁ ଯେତେଦୂର ପାରେ ପ୍ରଶଂସା କରି ମୃତ୍ୟୁଞ୍ଜୟକୁ ଗୋଟେ ସାର୍ଟିଫିକେଟ୍ ଦେଇଦେଲି । ଯଥାସମୟରେ ଡିଫେନ୍ସରୁ ତା'ର ନିଯୁକ୍ତିପତ୍ର ମିଳିଗଲା । ମୃତ୍ୟୁଞ୍ଜୟ ମତେ ଧନ୍ୟବାଦ ଜଣାଇ ଯୋଗଦେବା ପାଇଁ ଚାଲିଗଲା ଏବଂ ସାଧୁବାବୁ ମତେ ବାରିପଦାରେ ଭେଟି କହିଲେ, ''ସାର୍, ଆପଣ ବୋଧେ ତା' ଚରିତ୍ର ଖରାପ ବୋଲି ଲେଖିଲେନି ।'' ମୁଁ ଅବସର ନେଲାପରେ ଏବେ ଥରେ ପ୍ରଧାନମନ୍ତ୍ରୀ ଗ୍ରାମ୍ୟ ସଡ଼କ ଯୋଜନା କାମରେ ଦୁଇଦିନ ଲାଗି ବାରିପଦା ଯାଇଥିଲି । ପୂର୍ବ ସ୍ମୃତିସବୁ ମନକୁ ଆସୁଥାଏ । କୋଉଠୁ ଖବର ପାଇ ମୃତ୍ୟୁଞ୍ଜୟ ମତେ ଦେଖାକରିବାକୁ ଆସିଲା। ବହୁତ ପୁରୁଣା କଥା ପଡ଼ିଲା । ସେ ବର୍ତ୍ତମାନ ଓଡ଼ିଶା ସରକାରଙ୍କ ଅଧୀନରେ ସ୍ପେଶିଆଲ୍ କ୍ଲାସ୍ କଣ୍ଟ୍ରାକ୍ଟର । ବହୁତ ବଡ଼ କାମ କରି ଏବଂ ବହୁତ ଯନ୍ତପାତି କିଣି ବାରିପଦା ଏବଂ ବାଲେଶ୍ୱର ଜିଲ୍ଲାରେ ସୁନାମ ଅର୍ଜନ କରିଛି । କଥା ପ୍ରସଙ୍ଗରେ କହିଲା, ''ସାର୍, ଆପଣଙ୍କୁ ପିଲାବେଳୁ ଦେଖିଆସୁଛି । ବାପା କହୁଥିଲେ, ଆପଣଙ୍କ ପରି ଅଫିସର୍ ଡିପାର୍ଟମେଣ୍ଟରେ ବହୁତ କମ୍ ଦେଖିଛନ୍ତି । ଏବେକାର ଅଫିସରମାନଙ୍କ ପାଖରେ ଆଉ କାମ କରିବାକୁ ଇଚ୍ଛା ହେଉନି ।'' ଗଲାବେଳକୁ ଗୋଟେ ଫାଉଣ୍ଟେନ୍‌ପେନ୍ ଉପହାର ଦେଇଗଲା ।

ସାଧୁ ବେହେରା ଗୋଟେ ନିଆରା କିସମର ମଣିଷ ଥିଲେ । ତାଙ୍କୁ ଯେଉଁ କାମ ଦିଆଯାଉଥିଲା, ତାକୁ ସେ ଅତ୍ୟନ୍ତ ସାଧୁତା ଏବଂ ନିଷ୍ଠାର ସହିତ ପାଳନ କରୁଥିଲେ । ମତେ ସେ ବହୁତ ଭଲପାଉଥିଲେ । ସମ୍ଭବତଃ ମୋର ଏବଂ ତାଙ୍କ ପୁଅର ନାମ ଏକା ହୋଇଥିବାରୁ ଏମିତି ହୋଇଥିବ ।

ସାଧୁ ବେହେରା ଶେଷ ଜୀବନରେ ଲଣ୍ଡନ ବୁଲିଗଲେ । ସେଠୁ ଫେରି ତାଙ୍କ ଅନୁଭୂତି ସମ୍ପର୍କରେ ଖଣ୍ଡିଏ ଛୋଟ ବହି ଲେଖିଲେ । ଥରେ ମତେ କହିଲେ, ''ସାର୍, ଏ ବହିକୁ ମୁଁ ମାଗଣା ବାଣ୍ଟିବି । ଭଗବାନ୍ ମୋତେ କେଉଁଥିରେ ଊଣା କରି ନାହାନ୍ତି ।'' ମୁଁ ତାଙ୍କୁ କହିଲି, ''ସାଧୁବାବୁ ! କୌଣସି ଜିନିଷ ମାଗଣା ଦେବେ ନାହିଁ, ତାହାହେଲେ ତା'ର ମୂଲ୍ୟ କମିଯିବ । ଆପଣ ନାମମାତ୍ର ମୂଲ୍ୟ ନେବେ । ମାତ୍ର କଦାପି ମାଗଣା ଦେବେ ନାହିଁ ।'' ସେ ସେୟା ହିଁ କଲେ ।

ଲଣ୍ଡନରେ ଥିବାବେଳେ ଗୋଟେ ଘଟଣା । ତାଙ୍କ ସହଯାତ୍ରୀମାନେ ଗୋଟେ ହୋଟେଲରେ ଖାଉଥା'ନ୍ତି; ମାତ୍ର ତାଙ୍କ ପାଖରେ ବିଦେଶୀ ମୁଦ୍ରା ନ ଥିବାରୁ ସେ ଖାଇବାପାଇଁ ଅର୍ଡର ଦେଇପାରୁ ନ ଥାନ୍ତି । ଏହା ଦେଖି ଜଣେ ବିଦେଶୀ ସାହେବ ତାଙ୍କୁ ଇଂରାଜୀରେ ପଚାରିଲେ, ''ସେ କାହିଁକି ଖାଉ ନାହାନ୍ତି ?'' ସାଧୁ ବେହେରା ଇଂଲିଶ କହିପାରୁ ନ ଥିଲେ । ସେ ଠାରରେ ପେଟକୁ ଦେଖାଇଲେ ଏବଂ ହାତ ହଲାଇଥିଲେ । ତା'ମାନେ– ମତେ ଭାରି ଭୋକ ହେଉଛି; ମାତ୍ର ଖାଇବାପାଇଁ ପଇସା ନାହିଁ । ତାଙ୍କ ମୁହଁରୁ କ'ଣ ଦେଖିଲେ କେଜାଣି, ସେ ଭଦ୍ରବ୍ୟକ୍ତି ସାଧୁବାବୁ ମନା କରିବାସତ୍ତ୍ୱେ ତାଙ୍କୁ କିଛି ପାଉଣ୍ଡ୍ ଧାର ଦେଲେ ଏବଂ ବୁଝାଇଦେଲେ ଯେ ଏ ଟଙ୍କା ସେ ଦେଶକୁ ଫେରିଯାଇ ଫେରାଇଦେଲେ ଚଳିବ । କହିବା ବାହୁଲ୍ୟ, ସାଧୁବାବୁ ଲଣ୍ଡନରୁ ଫେରିବାପରେ କଲିକତାକୁ ତାଙ୍କୁ ଆଣିବାକୁ ଯାଇଥିବା ତାଙ୍କ ପୁଅ ହାତରେ ସେ ଟଙ୍କା ଡ୍ରାଫ୍ଟ କରି ସେ ଭଦ୍ରବ୍ୟକ୍ତିଙ୍କ ପାଖକୁ ପଠାଇଲେ ଏବଂ ତା'ପରେ ଯାଇ ଗାଁ'କୁ ଫେରିଲେ । ଏ କଥା ସେ ନିଜେ ମତେ କହିଛନ୍ତି । ତା' ପରେ କହିଲେ, ''ସାର୍, ବାରିପଦା, ବାଲେଶ୍ୱରକୁ ଛାଡ଼ିଦେଲେ ଆପଣଙ୍କର କଟକ-ଭୁବନେଶ୍ୱରରେ ସାଧୁ ବେହେରାକୁ କିଏ ଜାଣେ ? ଟଙ୍କା ହଜାରେ ମାଗିଲେ ମତେ ମିଳିବନି । ସେ ସାହେବ ଏତେଗୁଡ଼ା ଟଙ୍କା କେଉଁ ବିଶ୍ୱାସରେ ମୋ' ଭଳିଆ ଗୋଟେ ଧୋତିପିନ୍ଧା ଲୋକକୁ ଦେଇଦେଲା ? ପ୍ରକୃତରେ ସେ ଜାତିର ଗୋଟେ ଗୁଣ ଅଛି । ନ ଜାଣି ସେମାନେ ଆମକୁ ୨୦୦ ବର୍ଷ ଧରି ଶାସନ କରୁଥିଲେ ।'' ତାଙ୍କ କଥା ଶୁଣି ମୋର ମାୟାଧର ମାନସିଂଙ୍କର କବିତାର ଦୁଇଟି ଧାଡ଼ି ମନେପଡ଼ିଲା ।

''ରୋଗୀ କାନ୍ଦେ ଚାଲେ 'ବେଲ୍'
ଶାସେ ଯାର ଲାଠି
କିମାଶ୍ଚର୍ଯ୍ୟଂ ? ଅର୍ଦ୍ଧଧରାଂ
ଶାସଇ ତା' ଜାତି ॥''

ଦିନେ ବାରିପଦାରେ (ବେଲ୍ ସାହେବ ମେଦିନାପୁରର ଜିଲ୍ଲା ମାଜିଷ୍ଟ୍ରେଟ୍ ଥିଲେ) କୋରା ସାହେବଙ୍କ ସହିତ (ଏମ୍. କୋରା ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର, ଯେ ହାଇଓ୍ୱେର ଚିଫ୍ ଇଞ୍ଜିନିୟର ହୋଇ ଅବସର ନେଲେ ଏବଂ ଅତ୍ୟନ୍ତ ଦକ୍ଷ ଲୋକପ୍ରିୟ ଚିଫ୍ ଇଞ୍ଜିନିୟର ଥିଲେ) କିଛି କାମର ଆଲୋଚନା କରୁଛି, ଖବର ପାଇଲି ସାଧୁ ବେହେରା ଆଉ ନାହାନ୍ତି । ସଙ୍ଗେ ସଙ୍ଗେ ମୋ ଜିପ୍‌ରେ ତାଙ୍କ ଗାଁ ବୁଢ଼ାମରା ଗଲି । ତାଙ୍କର ସରଳ ପ୍ରଶାନ୍ତ ମୁଖମଣ୍ଡଳ ଦେଖି ବିଶ୍ୱାସ ହେଉ ନ ଥାଏ ଯେ ସେ ଆଉ ଇହଜଗତରେ ନାହାନ୍ତି । ମୁଁ ନୀରବରେ ଅଶ୍ରୁତର୍ପଣ କରି ତାଙ୍କୁ ବିଦାୟ ଦେଲି । ତାଙ୍କର ଶେଷ ଇଚ୍ଛାକୁ ସମ୍ମାନ ଜଣାଇ ମୃତ୍ୟୁଞ୍ଜୟ ମଧ ମିଲିଟାରୀ ଚାକିରିରୁ ଇସ୍ତଫା ଦେଇ ତାଙ୍କର ସୁଯୋଗ୍ୟ ଉତ୍ତରାଧିକାରୀ ହୋଇପାରିଛି । ଏହାଦ୍ୱାରା ତା'ର ଚରିତ୍ର ଭଲ ବୋଲି ନ ଲେଖି ତାଙ୍କର ସରଳ ବିଶ୍ୱାସରେ ଯେଉଁ ଆଘାତ ଦେଇଥିଲି, ସେ ଧର୍ମସଙ୍କଟରୁ ମୋତେ ସେ ରକ୍ଷା କରିଛି । ସାଧୁ ବେହେରା ଆଉ ନାହାନ୍ତି ।

'ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି
ନୈନଂ ଦହତି ପାବକଃ
ନ ଯେନଂ କ୍ଲେଦୟାତାପୋ
ନ ଶୋଷୟତି ମାରୁତଃ ।''

ଜୀବନର ସାୟାହ୍ନରେ ଏଭଳି ସାଧୁଲୋକର କଥା ମନେପଡ଼ିଲେ ମୋ ଆଖି ବାଷ୍ପାକୁଳ ହୋଇଉଠେ ଏବଂ ମୋ ଆଖି ଆଗରେ ତାଙ୍କର ହସ ହସ ମୁହଁ ଭାସିଯାଏ । ସତେ ଯେପରି ସେ ମୋ କାନ ପାଖରେ କହୁଛନ୍ତି, ''ସାର୍, ମୃତ୍ୟୁଞ୍ଜୟର ଚରିତ୍ର ଟିକିଏ ଖରାପ ବୋଲି ଲେଖିଦେବେ, ତା'ହେଲେ ସେ ଆଉ ମିଲିଟାରୀରେ ଯାଇପାରିବନି ।'' ତାଙ୍କର ଅମର ଆତ୍ମାକୁ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ।

❑❑❑

## କଣ୍ଟ୍ରାକ୍ଟରମାନଙ୍କର 'ପୁରୁରାଜା'
## ଉଦୟନାଥ ଚୌଧୁରୀ

୧୯୬୯ ମସିହାର କଥା । ମୁଁ ସେତେବେଳେ ନୂଆକରି ବୌଦ ପୂର୍ତ୍ତ ବିଭାଗରେ ଏସ୍.ଡି.ଓ. ରୂପେ ଚାକିରି କରିଥାଏ । ପାଞ୍ଚ ବର୍ଷ କାଳ ସୁଦୂର କୋରାପୁଟରେ ମିଗ୍ କାରଖାନା ପ୍ରୋଜେକ୍ଟ ନିର୍ମାଣରେ ଲାଗିଥିବାରୁ ପି.ଡବ୍ଲ୍ୟୁ.ଡି.ର ଚାଲିଚଳଣି କିଛି ଜଣା ନ ଥାଏ । ସେତେବେଳେ ପୂର୍ତ୍ତ ବିଭାଗର ମୁଖ୍ୟମନ୍ତ୍ରୀ ଥିଲେ ଶ୍ରୀଯୁକ୍ତ ମମତାଜ ଅଲ୍ଲୀ । ସେ ବହୁତ ଶକ୍ତିଶାଳୀ ଥିଲେ ଏବଂ କୁହାଯାଏ ଯେ ଓଡ଼ିଶା ମନ୍ତ୍ରିମଣ୍ଡଳ ଉପରେ ତାଙ୍କର ପ୍ରଭାବ ବହୁତ ଗଭୀର ଥିଲା । ଚାକିରି ପ୍ରାରମ୍ଭରୁ ସେତେବେଳେ ଏବପରି ସବୁ କଥାରେ ମନ୍ତ୍ରୀ, ବିଧାୟକଙ୍କର ସୁପାରିସ ଦରକାର ପଡୁ ନ ଥିଲା । ସହଜରେ ମୋର ପ୍ରକୃତି ଅଣରାଜନୀତିକ ଥିଲା । ମିଗ୍ କାମ ସରିବା ପରେ ଆମେ ତିନି ଜଣ ଆସିଷ୍ଟାଣ୍ଟ୍ ଇଞ୍ଜିନିୟର ଆମର ମୂଳ ବିଭାଗ ପି.ଡବ୍ଲ୍ୟୁ.ଡି.କୁ ଫେରିଆସିଲୁ । ମୋର ଚିଫ୍ ଇଞ୍ଜିନିୟର ପାଢ଼ୀ ସାହେବ, ଯାହାଙ୍କୁ ମୁଁ ମୋର ଆଦର୍ଶ ବୋଲି ଧରିନେଇଥିଲି, ଆମ ପୋଷ୍ଟିଂ ଲାଗି ଶ୍ରୀଯୁକ୍ତ ମମତାଜ୍ ଅଲ୍ଲୀଙ୍କୁ ଡି.ଓ. ଲେଟର ଲେଖିଲେ । ବାସ୍ ! ଆମର ପି.ଡବ୍ଲ୍ୟୁ.ଡି.ରେ ପୋଷ୍ଟିଂ ହୋଇଗଲା । ମୋର ବଉଦ ସବ୍‌ଡିଭିଜନକୁ ହୋଇଥାଏ ।

ବଉଦରେ ସେତେବେଳକୁ ବିଦ୍ୟୁତ୍ ଆସି ନ ଥାଏ । ବଲାଙ୍ଗୀର, ସୋନପୁରକୁ ସବୁଦିନିଆ ରାସ୍ତା ଖୋଲି ନ ଥାଏ । ଯାହା କହନ୍ତି, ନିତାନ୍ତ ଅନ୍ଧାରୀ ଗଡ଼ଜାତ ରାଜ୍ୟ । ମାତ୍ର ମୁଁ ସେଠି ବେଶ୍ ଖୁସିରେ କାମ କରୁଥାଏ । ବଉଦରୁ ଫୁଲବାଣୀ ଗଲାବେଳକୁ 'ଗାରିଆପଡ଼ା' ଘାଟୀ ପଡ଼େ । ସେଠିକାର କାମ କରୁଥା'ନ୍ତି ଶ୍ରୀ ଉଦୟନାଥ ଚୌଧୁରୀ । ସେ ବରହମ୍ପୁରର ଲୋକ । ତାଙ୍କ ବାପା ଜଗନ୍ନାଥ ଚୌଧୁରୀ । ସେ ପ୍ରଥମେ ଫୁଲବାଣୀରେ କାର୍ଯ୍ୟ ଆରମ୍ଭ କରି ନିଜ ଅଧ୍ୟବସାୟ ବଳରେ ସ୍ପେଶିଆଲ୍ କ୍ଲାସ୍ କଣ୍ଟ୍ରାକ୍ଟର ହୋଇପାରିଥିଲେ । ତା' ଛଡ଼ା ଦଶ ବାର ଖଣ୍ଡ ଟ୍ରକ୍ କରି ଫୁଲବାଣୀ ଜିଲ୍ଲାର ସରକାରୀ ପରିବହନ ବ୍ୟବସ୍ଥା ମଧ୍ୟ ତାଙ୍କ ନିୟନ୍ତ୍ରଣରେ ଥିଲା । ମୋଟ ଉପରେ କହିବାକୁ ଗଲେ, ସାରା ଫୁଲବାଣୀ ଜିଲ୍ଲାରେ ତାଙ୍କର ଅଖଣ୍ଡ ଆଧିପତ୍ୟ ଥିଲା ।

ମୁଁ ଶୁଣିଛି, ଉଦୟନାଥବାବୁ ଏବଂ ତତ୍କାଳୀନ ଜିଲ୍ଲାପାଳ ଶ୍ରୀଯୁକ୍ତ ପି.କେ. ପଟ୍ଟନାୟକ, ଆଇ.ଏ.ଏସ୍. (ପରେ ଓଡ଼ିଶାର ଆଡିସ୍‌ନାଲ୍ ଚିଫ୍ ସେକ୍ରେଟେରୀ)ଙ୍କ ସହପାଠୀ ଥିଲେ । ସେ ନିଜେ ମଧ ଭଲ ଛାତ୍ର ଥିଲେ; ମାତ୍ର ଘଟଣାକ୍ରମେ ପଢ଼ା ସରିବା ପରେ ନିଜର ପାରିବାରିକ ବ୍ୟବସାୟ ତାଙ୍କ କାନ୍ଧରେ ପଡ଼ିଲା । ଉଭୟେ ବହୁତ ସ୍ୱାଭିମାନୀ ଏବଂ ସଚ୍ଚୋଟ ଥିଲେ । ଫୁଲବାଣୀକୁ ବଦଳି ହୋଇ ଆସିବାବେଳେ ତାଙ୍କର ଜିନିଷପତ୍ର ଆଣିବାପାଇଁ ଜିଲ୍ଲାପାଳ ଉଦୟନାଥବାବୁଙ୍କୁ କହିଲେ, ସେ ମଧ ଖୁସିରେ ରାଜି ହେଲେ । ମାତ୍ର ଯେତେବେଳେ ପଇସା ଦେବା କଥା ଉଠିଲା, ଉଦୟନାଥବାବୁ କହିଲେ, ଦେଖ ପ୍ରସନ୍ନ ! ଘଟଣାଚକ୍ରରେ ତମେ ମୋର ଜିଲ୍ଲାପାଳ ଏବଂ ମୁଁ ତୁମ ଅଧୀନରେ ଜିଲ୍ଲା ପରିବହନ କଣ୍ଟ୍ରାକ୍ଟର, ତେଣୁ ତମେ ମତେ ଏପରି କହିଲ । ମୁଁ ଯଦି ଏ ଜିଲ୍ଲାରେ କାମ କରି ନ ଥା'ନ୍ତି, ତେବେ ତମେ ମତେ ଏମିତି କହି ନ ଥା'ନ୍ତ । ହଉ, ତମେ ଏଠି ଜିଲ୍ଲାପାଳ ଥିବା ପର୍ଯ୍ୟନ୍ତ ମୁଁ ଯୋଗାଣ ବିଭାଗରେ (ଯାହାକି ଜିଲ୍ଲାପାଳଙ୍କ ଅଧୀନରେ) କାମ କରିବି ନାହିଁ । ପୁରୁରାଜା ବନ୍ଦୀ ହେବା ଅବସ୍ଥାରେ 'କିପରି ବ୍ୟବହାର ଚାହୁଁଛ ?'ର ଉତ୍ତରରେ ପ୍ରବଳପ୍ରତାପୀ ଆଲେକ୍‌ଜାଣ୍ଡରଙ୍କୁ କହିଥିଲେ– ''ରାଜା ପ୍ରତି ରାଜାର ଯେପରି ବ୍ୟବହାର ।'' ଏକଥା ଇତିହାସ ବହିରେ ଲେଖାଅଛି ।

ଉଦୟନାଥବାବୁଙ୍କ ଠାରୁ ଏ କଥା ଶୁଣିଲାପରେ ମୋର ସେଇ ପୁରାତନ ଗପ ମନେପଡ଼ିଲା ।

ଥରେ ଗାରିଆପଡ଼ାର ତାଙ୍କ ଘାଟୀ କାମ ପରିଦର୍ଶନ କରି ଆମେ ଦୁହେଁ ଅରଣ୍ୟଗଡ଼ ଡାକବଙ୍ଗଳାରେ ବିଶ୍ରାମ ନେଉଥାଉ । ସେ ମୋ ରୁମ୍‌କୁ ଆସି ଗୋଟିଏ ଧଳା ଲଫାପା ମୋ ତକିଆ ପାଖରେ ରଖିଲେ । ମୁଁ ପଚାରିବାରେ କହିଲେ, ''ସାର୍, ଆପଣଙ୍କର ପି.ସି. ବହୁତ ବାକି ରହିଲାଣି । ସୁନାବେଡ଼ାରେ ଥିଲାବେଳେ ଶାହା କନଷ୍ଟ୍ରକ୍‌ସନ୍ ବୋଲି ବମ୍ବେର ଗୋଟିଏ ବଡ଼ କଣ୍ଟ୍ରାକ୍ଟର ଆମର ଫ୍ୟାକ୍ଟ୍ରି କାମ ନେଇଥାଏ । ସେ ଥରେ ମତେ କହିଲା – ସାର୍, ଏ ଅଜବ ପ୍ରୋଜେକ୍ଟ ହେ, ଇଧର ଓଭରସିଅର ସେ ଚିଫ୍ ଇଞ୍ଜିନିୟର ତକ୍ କୋଇ ପି.ସି. ନେହିଁ ଲେତା ହେ ।'' ସେଥିଲାଗି ସୁନାବେଡ଼ା ଇଞ୍ଜିନିୟରମାନଙ୍କ ମଧରେ ଗୋଟିଏ ଗର୍ବ ମଧ ଥାଏ । ମୁଁ ହସିକରି ଉଦୟନାଥ ବାବୁଙ୍କୁ ପି.ସି. ନିଏ ନାହିଁ ବୋଲି କହିଲି । ସେ କହିଲେ, ''ଏଟା ତ ଆପଣ ଦାବି କରୁ ନାହାନ୍ତି, ଏଟା ଆପଣଙ୍କ ପ୍ରାପ୍ୟ ।'' ବହୁତ୍ କହିବା ପରେ ମୁଁ

କହିଲି, ''ଏଟା ଆପଣଙ୍କ ପାଖରେ ଥାଉ । ଦରକାର ହେଲେ ମୁଁ ଆପଣଙ୍କୁ କହିବି ।'' ୟା'ପରେ ଦ୍ୱିତୀୟ ଥର ଫୁଲବାଣୀ ଏସ୍.ଡି.ଓ. ଥିଲାବେଳେ ଉଦୟନାଥବାବୁଙ୍କ ସମ୍ପର୍କରେ ଆସିଲି । ସେ ସେତେବେଳକୁ ଆର୍.ଡି.ବିଭାଗରେ 'ବୁର୍ବିନାଜୁ' ଏମ୍.ଆଇ.ପି. କରୁଥିଲେ । ଶୁଣାଗଲା, ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ସ୍ୱୟଂ ଏହାର ଉଦ୍‌ଘାଟନ କରିବେ । ମମତାଜ ଅଲ୍ଲୀ ସେତେବେଳେ ଆର୍.ଡି.ର ଚିଫ୍ ଇଞ୍ଜିନିୟର । ସେତେବେଳେ ଶୁଣାଯାଉଥାଏ ଯେ ସେ କୁଆଡ଼େ ଚାକିରି ଛାଡ଼ି ରାଜନୀତି କରିବେ ଏବଂ ବିଧାୟକ ହେବାପରେ ପୂର୍ତ୍ତ ବିଭାଗର ମନ୍ତ୍ରୀ ହେବେ ।

ଇନ୍ଦିରାଗାନ୍ଧୀଙ୍କ ଆଗମନ ଲାଗି ଦିନରାତି କାମ ଲାଗିଥାଏ । ମୁଁ ଜି-ଉଦୟଗିରି ବଙ୍ଗଳାରେ କ୍ୟାମ୍ପ କରି ଏହାର ତଦାରଖ କରୁଥାଏ । ଶହ ଶହ ଆଦିବାସୀ ପୁରୁଷ ଓ ସ୍ତ୍ରୀ କାମ କରୁଥାନ୍ତି । ଥରେ ସନ୍ଧ୍ୟାବେଳେ ଉଦୟନାଥବାବୁ ତାଙ୍କ କାମ ଦେଖିସାରି ଆମ ପାଖରେ ପହଞ୍ଚିଲେ । ମତେ କହିଲେ, ''ସାର୍, ଜୀବନରେ ବହୁତ କାମ କରିଛି । ପଇସା ମଧ କମାଇଛି; ମାତ୍ର ଆଜି ପ୍ରଧାନମନ୍ତ୍ରୀଙ୍କ ଉପସ୍ଥିତିରେ ମଠା ପିନ୍ଧି ମୁଁ ହୋମ କରିବି । ୟା'ଠାରୁ ଗର୍ବର କଥା ଆଉ କ'ଣ ହୋଇପାରେ ?'' ମୁଁ ଉଦୟନାଥବାବୁଙ୍କୁ ବହୁତ ଭଲପାଉଥିଲି । ଅବଶେଷରେ ସେଇଦିନ ଆସିଲା, ପ୍ରଧାନମନ୍ତ୍ରୀଙ୍କ ଲାଗି ଆମେ ହେଲିପ୍ୟାଡ୍ ପ୍ରସ୍ତୁତ କରିଥାଉ । କଲାଇକୁଣ୍ଡା ଉଡ଼ାଜାହାଜ ପଡ଼ିଆରୁ ବିରାଟକାୟ ଏମ୍.ଆଇ-୧୬ ହେଲିକପ୍ଟର ବୁର୍ବିନାଜୁରେ ଓହ୍ଲାଇଲା । ଜଣେ ଶିଖ୍ ଏୟାର୍‌ଫୋର୍ସ ଅଫିସର wireless ସଂଯୋଗ ଲାଗି ସୁଉଚ୍ଚ ଖୁଣ୍ଟ କଲେ ଏବଂ କଲେଇକୁଣ୍ଡା / ଏହ୍ଲାବାଦ୍ ସହିତ V.H.F. ସଂଯୋଗ କଲେ । ମୁଁ ପାଖରେ ଠିଆହୋଇ ଆଗ୍ରହର ସହିତ ସବୁ ଦେଖୁଥାଏ । V.H.F.ରେ ପ୍ରଥମ ଖବର ଆସିଲା । "Programme of Prime Minister to Burbinazoo cancelled: Repeat cancelled. Repeat cancelled". ସମସ୍ତଙ୍କର ମୁହଁ ଶୁଖିଗଲା । ସେତେବେଳକୁ ଚୁଡ଼ା ଚାଉଳ ବାନ୍ଧି ଦୂରଦୂରାନ୍ତରୁ ଆଦିବାସୀ ଲୋକମାନେ ଇନ୍ଦିରାଗାନ୍ଧୀଙ୍କୁ ଦେଖିବାଲାଗି ଆସିବା ଆରମ୍ଭ କରିଦେଇଥା'ନ୍ତି । ପରେ ଶୁଣିବାକୁ ମିଳିଲା ମମତାଜ ଅଲ୍ଲୀଙ୍କର ଲୋକପ୍ରିୟତା ଏବଂ ବର୍ଦ୍ଧିଷ୍ଣୁ ବ୍ୟକ୍ତିତ୍ୱକୁ ଲକ୍ଷ୍ୟକରି ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ଇଙ୍ଗିତରେ ଏପରି କରାହୋଇଥିଲା; ମାତ୍ର ଏହା କେତେଦୂର ସତ୍ୟ, ମୁଁ ହଲପ୍ କରି କହିପାରିବି ନାହିଁ ।

ଉଦୟନାଥବାବୁଙ୍କ ମନଟା ପୂରାପୂରି ମରିଗଲା । ମୋର ବଦଳି ହେବା ସମୟ ଆସିଲା । ଘଟଣାକ୍ରମେ ମୋର ଘନିଷ୍ଠ ବନ୍ଧୁ ଯଦୁନାଥ ମହାପାତ୍ର ମୋ'ଠାରୁ ଦାୟିତ୍ୱ ନେଲେ । ମୁଁ ଯିବା ଲାଗି ଗୋଟିଏ ଆମ୍ବାସାଡାର କାର୍ ବନ୍ଦୋବସ୍ତ ହୋଇଥାଏ । ଯଦୁ ମତେ କହିଲା, ''ମୁଁ ଗାଡ଼ି ନେଇଯାଉଛି । ପିଲାମାନଙ୍କୁ ନେଇ ତୋ ବିଦାୟ ସମ୍ବର୍ଦ୍ଧନା ପୂର୍ବରୁ ପହଞ୍ଚିବି ।'' ବିଦାୟ ସମ୍ବର୍ଦ୍ଧନା ପର୍ବ ଆରମ୍ଭ ହେଲା । ମୋର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଲଳିତମୋହନ ପାତ୍ର ଏବଂ ଉଦୟନାଥ ଚୌଧୁରୀ ଉଭୟେ ଉପସ୍ଥିତ ଥିଲେ । ରାତି ୯ଟା ସୁଦ୍ଧା ଯଦୁର ଦେଖା ନାହିଁ । ମୋର ସକାଳୁ ସକାଳୁ ଯିବା କଥା । ଉଦୟନାଥବାବୁ ମୋ' ପାଖକୁ ଆସି ପଚାରିଲେ, ''ସାର୍, ଗାଡ଼ି ତ ଆସିଲାନି । ସାହେବ (ସେତେବେଳେ ଏସ୍.ଡି.ଓ.ମାନଙ୍କୁ ସାହେବ କହୁଥିଲେ) କେମିତି ଯିବେ ?'' ମୁଁ କହିଲି ବସ୍‌ରେ । ତା'ଛଡ଼ା ଆଉ ଉପାୟ କ'ଣ ଅଛି ? ମାତ୍ର ମୋର କୁକୁରଟା (ପ୍ରିୟ କୁକୁର କିଟି) ଯାହାକୁ ମୁଁ ସୁନାବେଡ଼ାରୁ ସାଙ୍ଗରେ ଆଣିଥିଲି) ଥିବାରୁ ଟିକିଏ ଅଡୁଆ । ସେ ସଙ୍ଗେ ସଙ୍ଗେ ତାଙ୍କ କାର୍ ଡ୍ରାଇଭରକୁ ଡାକି ତା' ହାତରେ ୫୦୦୦ ଟଙ୍କା (ବର୍ତ୍ତମାନ ୫୦,୦୦୦ ଟଙ୍କା ସହିତ ସମାନ) ଦେଲେ ଏବଂ ତାକୁ ନିର୍ଦ୍ଦେଶ ଦେଲେ, ''କାଲି ସକାଳୁ ସାଇବଙ୍କୁ ନେଇ କଟକ ଯିବୁ । ସେ ଯେତେଦିନଯାଏ ଚାହିଁବେ ତାଙ୍କ ସାଙ୍ଗେ ରହିବୁ । ତା'ପରେ ସିଧା ବରହମ୍ପୁର ଚାଲିଯିବୁ । ଏତିକି କହି ସେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କ ସହ ଜିପ୍ ପଛରେ ବସି ଫୁଲବାଣୀ ଚାଲିଗଲେ । ଏଭଳି ସହୃଦୟତା ମୁଁ କ୍ୱଚିତ୍ ଦେଖିଛି । ଆଜିକାଲି କାହା ପାଖରେ ଟଙ୍କାର ଅଭାବ ନାହିଁ । ଆସିଷ୍ଟାଣ୍ଟ୍ ଇଞ୍ଜିନିୟର ପ୍ରାୟ ସମସ୍ତଙ୍କ ପାଖରେ ନୂଆ ମାରୁତି କାର୍ । କହିବା ବାହୁଲ୍ୟ, ମୁଁ କଟକରେ ପହଞ୍ଚିବା ସଙ୍ଗେ ସଙ୍ଗେ ତାଙ୍କ ଗାଡ଼ିକୁ ବରହମ୍ପୁର ପଠାଇଦେଲି ।

ଘଟଣାଚକ୍ରରେ ୧୯୯୮ ମସିହାରେ ମୋର ବରହମ୍ପୁର ଆର୍.ଡି. ସର୍କଲରେ ସୁପରିଣ୍ଟେଣ୍ଡେଣ୍ଟ୍ ଇଞ୍ଜିନିୟର ହୋଇ ପୋଷ୍ଟିଂ ହେଲା । ଦିନେ ଅଫିସ କାମ କରୁଛି, ଇଣ୍ଟରକମ୍‌ରେ ପି.ଏ. କହିଲେ, ''ସାର୍, ଉଦୟନାଥ ଚୌଧୁରୀ ଦେଖା କରିବାକୁ ଆସିଛନ୍ତି ।'' ମୁଁ ସଙ୍ଗେ ସଙ୍ଗେ ଭିତରକୁ ଡାକି ପଠାଇଲି । ଟିକିଏ ବୟସ ହୋଇଯାଇଥାଏ; ମାତ୍ର ସେଇ ସୌମ୍ୟ ହସ ହସ ଚେହେରା । ମୁଁ ପଚାରିଲି, ଉଦୟନାଥବାବୁ ଭଲ ଅଛନ୍ତି ? ସେ କହିଲେ, ''ସାର୍, ମୋର ଆପଣଙ୍କ ପାଖେ କୌଣସି ପ୍ରାପ୍ୟ ନାହିଁ (କାଳେ ମୁଁ ଭାବିବି ସେ ଏରିଅର୍ ବିଲ୍ ନେବାପାଇଁ

ଆସିଛନ୍ତି) ମୁଁ ଖାଲି 'ସାଇବ' ଏ ଚୌକିରେ ବସିଲେ ଦେଖିବାକୁ ଆସିଛି । ଯେଉଁଦିନ ଆପଣ ଓଡ଼ିଶାର ଚିଫ୍ ଇଞ୍ଜିନିୟର ଚୌକିରେ ବସିବେ, ମୁଁ ନିଶ୍ଚୟ ଦେଖିବାକୁ ଯିବି । ପୁଅ ଏଠି ଗୋଟେ ସିନେମା ହଲ୍ କରିଛି । ସମୟ ହେଲେ ଥରେ ମା'ଙ୍କୁ ନେଇ ଯିବେ । ପ୍ରଫୁଲ୍ଲ (ତାଙ୍କ ପୁତୁରା) ଙ୍କୁ ଫୋନ୍‌ରେ କହିଲେ ସେ ନିଜେ ରହି ସବୁ ବନ୍ଦୋବସ୍ତ କରିଦେବ ।'' ମାତ୍ର ଦୁର୍ଭାଗ୍ୟକୁ ମୁଁ ସେ ସିନେମା ହଲ୍ ଦେଖିବାକୁ ସମୟ ଦେଇପାରିଲିନି । ଫୁଲବାଣୀରେ ଥିଲାବେଳେ ଥରେ ମତେ ବାଦାମ୍ ଖାଇବାକୁ ଭଲଲାଗେ ବୋଲି କହିବାରୁ ଜିପ୍ ପଛରେ ବସିଥିବା ପ୍ରଫୁଲ୍ଲକୁ କହିଲେ, ''ସାଇବଙ୍କୁ (ସେତେବେଳେ ଏସ୍.ଡି.ଓ.ମାନଙ୍କୁ ପି.ଡବ୍ଲ୍ୟୁ.ଡି.ରେ ସାହେବ ଡାକୁଥିଲେ) ବାଦାମ ଭଲ ଲାଗେ । ଗଣ୍ଡେ ପଠେଇଦେବୁ । ସତକୁ ସତ ଦୁଇ ତିନି ଦିନ ପରେ ଜଣେ ଲୋକ ଗୋଟେ ଚଷ୍ଟାରେ ବସ୍ତାଏ ଚୀନାବାଦାମ ଆଣି ମୋ' ବଙ୍ଗଳାରେ ଦେଲା । ଏଥର ଫେରେଇବା ଲାଗି ମୋର ସାହସ ହେଲାନି; ଯଦିଓ ଗଣ୍ଡେ ବାଦାମ କିପରି ଗୋଟେ ବସ୍ତା ହୋଇଗଲା ମୁଁ ବୁଝିପାରିଲିନି ।

ଚାକିରିରୁ ଅବସର ନେବା ପରେ ଦେଖୁଛି – ଇଞ୍ଜିନିୟର କଣ୍ଟ୍ରାକ୍ଟର ସମ୍ବନ୍ଧ ସମ୍ପୂର୍ଣ୍ଣ ବଦଳି ଯାଇଛି । ଖବରକାଗଜରେ ପଢୁଛି, 'କୋଟିପତି ଯନ୍ତ୍ରୀ ଭିଜିଲାନ୍ସ ଜାଲରେ ।' ଅତ୍ୟଧିକ ଅର୍ଥଲାଳସା ଆମ ସମସ୍ତଙ୍କୁ ଘାରିଛି । ଏଟା ଦେଶ ପକ୍ଷରେ ଶୁଭଙ୍କର ନୁହେଁ ।

ମାତ୍ର ମୋର ଦୃଢ଼ବିଶ୍ୱାସ, ଏବେ ମଧ୍ୟ ମୋର ପୁଅଝିଅ ଯଦି ବରହମ୍ପୁର ଯାଆନ୍ତି ଏବଂ ଉଦୟନାଥବାବୁ ଏକଥା ଶୁଣନ୍ତି, ସେ ନିଶ୍ଚୟ ତାଙ୍କର ସୁବ୍ୟବସ୍ଥା କରିବେ ଏବଂ ତାଙ୍କ ସିନେମା ହଲ୍‌ରେ ସିନେମା ଦେଖାଇବେ । ସେ ପ୍ରକୃତରେ କଣ୍ଟ୍ରାକ୍ଟରମାନଙ୍କ ଭିତରେ ପୁରୁରାଜା ଥିଲେ ।

ଭଗବାନ୍ ତାଙ୍କୁ ଦୀର୍ଘଜୀବୀ କରନ୍ତୁ ।

□□□

# ଉଦୟଚନ୍ଦ୍ର ପଟ୍ଟନାୟକ
# ସାଧୁ, ସଚ୍ଚୋଟ, ନିର୍ଭୀକ ଇଞ୍ଜିନିୟର

୧୯୬୩ ମସିହା । ଓଡ଼ିଶାରେ ଇଞ୍ଜିନିୟରମାନଙ୍କର ସୁବର୍ଣ୍ଣଯୁଗ ଚାଲିଥାଏ । ଆମେ ସବୁ ବୁର୍ଲା କଲେଜର ଶେଷ ବର୍ଷର ପରୀକ୍ଷା ଦେଇ ଘରେ ଛୁଟି କାଟୁଥାଉ । ପରୀକ୍ଷାଫଳ ବାହାରି ନ ଥାଏ । ହଠାତ୍ ଦିନେ ଡାକରେ ଦେଖିଲାବେଳକୁ ଜଳସେଚନ ବିଭାଗରେ ଜୁନିଅର ଇଞ୍ଜିନିୟର ଚାକିରିରେ ଯୋଗଦେବା ପାଇଁ ଚିଠି ପହଞ୍ଚିଲା । କଟକ ଆସି ସୁପରିଣ୍ଟେଣ୍ଡେଣ୍ଟ୍ ଇଞ୍ଜିନିୟର ଶ୍ରୀଯୁକ୍ତ ଦଣ୍ଡପାଣି ରଥଙ୍କୁ କ୍ୟାଣ୍ଟନ୍‌ମେଣ୍ଟ ଅଫିସ୍‌ରେ ଦେଖାକଲି ଏବଂ କଟକରେ ପୋଷ୍ଟିଂ କରିଦେବାପାଇଁ ଅନୁରୋଧ କଲି । କଟକରେ ରହିବାପାଇଁ ସୁବିଧା ଥାଏ । ମାତ୍ର ସେ କହିଲେ, ''ଇଞ୍ଜିନିୟରିଂ ପାସ୍ କଲ । ଏଥର କର୍ମମୟ ଜୀବନ ଆରମ୍ଭ ହେଲା । ଯାଅ ଯାଜପୁର ଇରିଗେସନ୍‌ରେ ଯୋଗଦିଅ । କଟକରେ କ'ଣ ହିନ୍ଦ୍ ସିନେମା ହଲ୍‌ରେ ଫିଲ୍ମ ଦେଖିବ ?''

ଯାଜପୁରରେ ଅଗଷ୍ଟ ୩ ତାରିଖ ଦିନ ମା' ବିରଜାଙ୍କୁ ଦର୍ଶନ କରି ଜଏନିଂ ରିପୋର୍ଟ ଦେଲି । ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଶ୍ରୀଯୁକ୍ତ ନୀଳକଣ୍ଠେଶ୍ୱର ବେହେରା ଅତ୍ୟନ୍ତ ଭଦ୍ରଲୋକ । ସେ ମତେ ଅଫିସରେ ଚାଲୁଥିବା ଗୋଟେ ମେସ୍‌ରେ ରଖେଇଦେଲେ । ସେଠି ସାତ/ଆଠ ଜଣ କିରାଣି ରହୁଥା'ନ୍ତି । ମୁଁ ତାଙ୍କ ସାଙ୍ଗରେ ରହି ବୁଲି ବୁଲି ବିଭିନ୍ନ କାମ ଦେଖୁଥାଏ । ସେ ବାବୁମାନଙ୍କର ମୋ ପ୍ରତି ସ୍ନେହ ମୁଁ ଭୁଲିପାରିବିନି । ବେଳେବେଳେ ଥଟ୍ଟାରେ କହୁଥାନ୍ତି, ''ଏ ତିନି/ଚାରି ବର୍ଷ ଟିକିଏ ଏମିତି କଟାଇଦିଅ । କାଲିକି ଏଠି ସାହେବ ହୋଇ ଆସିବ । ସେତେବେଳେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟରମାନଙ୍କୁ ସାହେବ ବୋଲି ଡାକୁଥିଲେ । ଏ ଭିତରେ ପବ୍ଲିକ୍ ସର୍ଭିସ୍ କମିସନଙ୍କ ଠାରୁ ଇଣ୍ଟରଭ୍ୟୁ ଦେଇ ଫଳ ବାହାରିଗଲା ଏବଂ ଚାରି ମାସ ଜୁନିୟର ଇଞ୍ଜିନିୟର ଭାବେ କଟାଇବା ପରେ ପାରାଦ୍ୱୀପ ବନ୍ଦର ଅଧୀନରେ ଖୋର୍ଦ୍ଧା ସପ୍ଲାଇ ଡିଭିଜନରେ ଯୋଗଦେବା ଲାଗି ନିର୍ଦ୍ଦେଶ ଆସିଗଲା ।

ପୁଣି ମା' ବିରଜାଙ୍କ ପାଖରେ ମୁଣ୍ଡିଆ ମାରି ଖୋର୍ଦ୍ଧାରେ ପହଞ୍ଚିଲି ଏବଂ ଡିସେମ୍ବର ୨ ତାରିଖରେ ଆସିଷ୍ଟାଣ୍ଟ୍ ଇଞ୍ଜିନିୟର ଭାବେ ଓଡ଼ିଶା ସରକାରଙ୍କ ଅଧୀନରେ ଯୋଗଦେଲି । ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥା'ନ୍ତି ଶ୍ରୀଯୁକ୍ତ ଉଦୟଚନ୍ଦ୍ର ପଟ୍ଟନାୟକ । ଯାଜପୁର ଛାଡ଼ିବା ପୂର୍ବରୁ ସେଠାକାର ପୂର୍ତ୍ତ ବିଭାଗର ସହକାରୀ

ଯନ୍ତ୍ରୀ ଶ୍ରୀ ଶତ୍ରୁଘ୍ନ ବାରିକଙ୍କ ଠାରୁ ତାଙ୍କ ବିଷୟରେ ଶୁଣିଥିଲି । ସେ କୁଆଡ଼େ ଭାରି କଡ଼ା ମିଜାଜର ଲୋକ । ତାଙ୍କ ଅଧୀନରେ ଥିବା ଅଫିସରମାନଙ୍କୁ ବହୁତ ଖଟାନ୍ତି ଇତ୍ୟାଦି । ମାତ୍ର ମାସେ କାମ କଲାପରେ ଜାଣିପାରିଲି, ସେ ଜଣେ ସାଧୁ ପ୍ରକୃତିର, ନୀତିନିୟମ ମାନି ଚଳିବା ଲୋକ । ଏଭଳି ଜଣେ ଉପରିସ୍ଥ ଅଫିସର ପାଇଥିବାରୁ ମୁଁ ଭଗବାନ୍‌ଙ୍କୁ ଧନ୍ୟବାଦ ଦେଲି । ବହୁବର୍ଷ ପରେ ପୂର୍ତ୍ତ ବିଭାଗର ଅତ୍ୟନ୍ତ ଅସାଧୁ ପ୍ରକୃତିର ଅଫିସରମାନଙ୍କ ପାଖରେ କାମ କଲାବେଳେ ମୋର 'ସାର୍'ଙ୍କ କଥା ବରାବର ମନେପଡ଼େ । ମୋର ଯେତେଦୂର ମନେପଡୁଛି, ସେ ପାରଳାଖେମୁଣ୍ଡିର ଲୋକ ଥିଲେ ଏବଂ ତାଙ୍କ ଗାଁ'ର ଏ.ସି. ପାଢ଼ୀଙ୍କୁ ବହୁତ ପ୍ରଶଂସା କରୁଥିଲେ । ପରେ ପାଢ଼ୀ ସାହେବଙ୍କ ଅଧୀନରେ ମିଗ୍ କାରଖାନାରେ କାମ କରିବାର ସୁଯୋଗ ମିଳିଲା ଏବଂ ମୋ' ଭଳି ଅନେକ ଇଞ୍ଜିନିୟରଙ୍କର ମୂଳଦୁଆ ସେଠି ଗଢ଼ି ହେଇଗଲା ।

ଖୋର୍ଦ୍ଧା ଏବଂ ହରିଦାସପୁରରେ ଜଗନ୍ନାଥ ମହାପ୍ରଭୁଙ୍କର ପାହାଡ଼ ସବୁ ଥାଏ । ସେଠାରେ ଡିନାମାଇଟ୍ ଦ୍ୱାରା ପାହାଡ଼ ଭଙ୍ଗାହୋଇ ପଥର ବାହାର କରାଯାଏ । ତା'ପରେ ତାକୁ ଛୋଟକରି ବୋଲ୍‌ଡର୍ ଏବଂ କ୍ରସର୍ ମେସିନ୍ ସାହାଯ୍ୟରେ ଚିପ୍‌ସ ତିଆରି ହୁଏ । ପ୍ରାୟ ୧୦ଟା ପାହାଡ଼ରୁ ପଥର ଭଙ୍ଗା ହୋଇ ଟ୍ରକ୍ ସାହାଯ୍ୟରେ ପାରାଦ୍ୱୀପକୁ ପଠାହେଉଥାଏ । ଖୋର୍ଦ୍ଧାର କଣ୍ଟାଠାରେ 'ଓ୍ୱେ ବ୍ରିଜ୍' ବସି ପଥରସବୁ ଓଜନ କରାଯାଏ ଏବଂ ପାରାଦ୍ୱୀପ ଠାରେ ଆଉଥରେ ଓଜନ କରାଯାଇ ସମୁଦ୍ରରେ ପକାଯାଏ । ଏସବୁ କାମ ତଦାରଖ କରିବାପାଇଁ ସର୍ବୋଚ୍ଚ ଇଞ୍ଜିନିୟର ଥା'ନ୍ତି ଶ୍ରୀଯୁକ୍ତ ନୀଳକଣ୍ଠ ମିଶ୍ର । ତାଙ୍କୁ ଡି.ସି. (ଡେପୁଟି ଚିଫ୍) ଇଞ୍ଜିନିୟର କୁହାଯାଉଥାଏ । ପାରାଦ୍ୱୀପ ବନ୍ଦର ଉଦ୍‌ଘାଟନ ବେଳେ ରାତି ରାତି ଲାଗି ନେହରୁ ବଙ୍ଗଳା ତିଆରି କରିଥିବାରୁ ସେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କର ପ୍ରିୟପାତ୍ର ଥିଲେ ଏବଂ ପାରାଦ୍ୱୀପ ବନ୍ଦରରେ ତାଙ୍କର ଅଖଣ୍ଡ କ୍ଷମତା ଥିଲା । ମୋର ରହିବାପାଇଁ ଜଳସେଚନ କଲୋନୀରେ ଗୋଟେ ଓଭରସିୟର କ୍ୱାର୍ଟର୍ସ ଲାଗି ସେ ତତ୍କାଳୀନ ଡେଲ୍‌ଟାର ଅଧୀକ୍ଷଣ ଯନ୍ତ୍ରୀ ଶ୍ରୀଯୁକ୍ତ ବିଜୟରାମ ମିଶ୍ରଙ୍କୁ ଗୋଟେ ଚିଠି ଲେଖିଥିଲେ । ଯଦ୍ୱାରା ସେ କାମ ସଙ୍ଗେ ସଙ୍ଗେ ହୋଇଗଲା । ଆଡ୍‌ମିନ୍‌ଷ୍ଟ୍ରେସନ୍‌ରେ ତାଙ୍କର ଅପୂର୍ବ ଦକ୍ଷତା ଇଂରାଜୀ କହିବା ଏବଂ ଲେଖିବାର ଶୈଳୀ ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ସେ ଓଭରସିୟରିଂ ପାସ୍ କରିଥିଲେ ମଧ୍ୟ ଆମ ଭଳି ହଜାରେ ଗ୍ରାଜୁଏଟ୍ ଇଞ୍ଜିନିୟରଙ୍କର ନାକ କାଟି ଦେଉଥିଲେ । ତାଙ୍କ ବଡ଼ପୁଅ ପ୍ରଫୁଲ୍ଲବାବୁ ମୋ' ଉପର କ୍ଲାସ୍‌ରେ ବୁର୍ଲା କଲେଜରେ ପଢୁଥିଲେ । ସେଇ ସୂତ୍ରରେ ଏବଂ ମୁଁ ଟିକିଏ ସ୍ମାର୍ଟ ଥିବାରୁ ଓ ଭଲ ଇଂରାଜୀ କହିପାରୁଥିବାରୁ ମୋ' ପ୍ରତି ତାଙ୍କର ସ୍ନେହଭାବ ଥିବାର ମୁଁ ଅନୁଭବ

କରୁଥିଲି । ମାତ୍ର ମୋର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କ ସଙ୍ଗେ ତାଙ୍କର ସେତେଟା ସଦ୍‌ଭାବ ନ ଥିବାର ତାଙ୍କ କଥା ଏବଂ ହାବଭାବରୁ ବାରି ହୋଇପଡୁଥିଲା । ସେ ମଧ ମତେ ସଦାବେଳେ ଡି.ସି.ଙ୍କ ଠାରୁ ଟିକିଏ ଦୂରେଇ ରହିବାକୁ ପରାମର୍ଶ ଦେଉଥିଲେ ନଚେତ୍ ଭବିଷ୍ୟତରେ ମୁଁ ଅସୁବିଧାରେ ପଡ଼ିବି ବୋଲି ସତର୍କ କରାଇଦେଉଥିଲେ ।

ମୁଁ ଚାକିରି କରିବାର ପ୍ରାୟ ବର୍ଷକ ପରର କଥା । ଖୋର୍ଦ୍ଧାରେ କାଲକାଟା କମ୍ପାନୀ ଓ ଟାଙ୍ଗିଣୀ କ୍ୱାରୀ ନାମକ ଦୁଇଟି ବଡ଼ କ୍ୱାରୀରେ ବ୍ଲାଷ୍ଟିଂ ପଥର ଭଙ୍ଗା କାମ ଚାଲିଥାଏ । ଟାଙ୍ଗିଣୀ କ୍ୱାରୀର ମାଲିକ ଥା'ନ୍ତି ଦାମୋଦର ମୁଛାଲ ବୋଲି ଜଣେ ଅଣଓଡ଼ିଆ ଭଦ୍ରବ୍ୟକ୍ତି । ଆମର ଦାୟିତ୍ୱ ଥାଏ– ସବୁଦିନ ବିଭିନ୍ନ କ୍ୱାରୀ ପରିଦର୍ଶନ କରି ଖରାପ ପଥର ସବୁକୁ ରିଜେକ୍ଟ କରିବା ।

ଥରେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ପାଞ୍ଚଟାବେଳକୁ ମତେ ସାଇଟ୍ ଅଫିସକୁ ଡାକିଲେ । କହିଲେ, ''ମୃତ୍ୟୁଞ୍ଜୟବାବୁ, ମୁଁ ଏବେ ଭୁବନେଶ୍ୱର ଫେରିଯାଉଛି; ମାତ୍ର ରାତି ଏଗାରଟା /ବାରଟା ବେଳକୁ ମୁଁ ଆପଣଙ୍କ କ୍ୱାର୍ଟର୍ସ ପାଖରେ ହର୍ଣ୍ଣ ଦେବି । ଆମେ ଗୋଟେ ଜାଗାକୁ ଯିବା । ଆପଣଙ୍କ ପାଖରେ ବଡ଼ ଟର୍ଚ୍ଚ ଲାଇଟ୍ ଅଛି ତ ?'' ମୁଁ ହଁ କଲାରୁ କହିଲେ, ''ଗଲାବେଳେ ସାଙ୍ଗରେ ଧରିଥିବେ । କାମରେ ଲାଗିବ ।'' ପରେ ଜାଣିଲି ସେ ବିଶ୍ୱସ୍ତ ସୂତ୍ରରୁ ଖବର ପାଇଥିଲେ, ଦିନବେଳେ ଆମେ ଯେଉଁସବୁ ପଥରକୁ ରିଜେକ୍ଟ କରିଛୁ, ଦାମୋଦର ମୁଛାଲ ତାକୁ ରାତିରେ ଟ୍ରକ୍‌ରେ ପଠାଇଦଉଛି ।

ରାତି ବାରଟା ପାଖାପାଖି ହେବ । ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କ ଜିପ୍‌ର ହର୍ଣ୍ଣ ଶୁଭିଲା । ପଟ୍ଟନାୟକ ସାହେବ ଜିପ୍‌ରୁ ଓହ୍ଲାଇ ମୋ' ବସାକୁ ଆସିଲେ । ଶୀତଦିନ । ସେ ଗୋଟାଏ କୋଟ୍ ପିନ୍ଧିଥା'ନ୍ତି ଓ ବେକରେ ମଫଲର ଗୁଡ଼େଇ ହୋଇଥା'ନ୍ତି । ମୋ ପିଅନ ଅର୍ଜୁନ ଦୁଇ କପ୍ ଚା' ତିଆରି କରିଦେଲା । ଆମେ ଦୁହେଁ ପିଇଲୁ । ଏଠାରେ କହିରଖେ, ପଟ୍ଟନାୟକ ସାହେବ ବହୁତ ଚା' ପିଉଥିଲେ ଏବଂ ସିଗାରେଟ୍ ଟାଣୁଥିଲେ । ଯାହାକୁ କହନ୍ତି, ଚେନ୍‌ସ୍ମୋକର୍ । ରାତି ଦୁଇଟା ପାଖାପାଖି ହେବ । ମତେ କହିଲେ, ''ଏଥର ଚାଲନ୍ତୁ ଯିବା ।''

ସେ ପର୍ଯ୍ୟନ୍ତ ମୁଁ ଜାଣି ନ ଥାଏ, ସେ କୁଆଡ଼େ ଯିବେ । ଗାଡ଼ିରେ ବସିଲା ପରେ ଡ୍ରାଇଭରକୁ କହିଲେ, ଟାଙ୍ଗିଣୀ କ୍ୱାରୀ ଆଡ଼କୁ ଯିବାଲାଗି । ଖୋର୍ଦ୍ଧାଠାରୁ ସାତ/ଆଠ କିଲୋମିଟର ବାଟ । ବାଟଯାକ ପଥର ବୋଝେଇ ଟ୍ରକ୍ ଆସୁଥାଏ । ମତେ କହିଲେ, ''ପଟ୍ଟନାୟକବାବୁ ! ଯେତେ ଟ୍ରକ୍ ଆସୁଛି, ସବୁ ଅଟକାଇ ତା' ଡାଲା ଉପରେ ଚଢ଼ । ଟର୍ଚ୍ଚ ପକାଇ ଦେଖ, ସେଥିରେ ଭଲ ପଥର ଯାଉଛି କି ନାହିଁ, ଯଦି ନ ଥାଏ,

ମତେ କହ ଓ ତା'ର କାଗଜପତ୍ର ମୋ' ପାଖକୁ ଆଣିବାକୁ ଡ୍ରାଇଭରକୁ କହ ।'' ମୁଁ ସଦାବେଳେ ପୋଲିସ ବାଡ଼ିପରି ଗୋଟେ ବାଡ଼ି ହାତରେ ଧରିଥାଏ । ଏବେ ତେସ୍ତରି ବର୍ଷ ବୟସରେ ମଧ୍ୟ ପ୍ରାତଃଭ୍ରମଣ ବେଳେ ଧରୁଛି । ଭାରତର ବିଭିନ୍ନ ଜାଗାକୁ ବୁଲିଗଲାବେଳେ ଏଇ ବାଡ଼ି ଯୋଗୁଁ ଏବଂ ମୋର ରୋକ୍‌ଠୋକ୍ କଥା କହିବା ସ୍ୱଭାବ ଯୋଗୁଁ ଲୋକମାନେ ମତେ ଜଣେ ଆଇ.ପି.ଏସ୍. ଅଫିସର ବୋଲି ଭ୍ରମ କରନ୍ତି । ଘଣ୍ଟାକ ମଧ୍ୟରେ ପନ୍ଦର / କୋଡ଼ିଏ ଟ୍ରକ୍ ମାଲ୍ ବାହାର କରାଯାଇ ରାସ୍ତାର ଦୁଇକଡ଼ରେ ଗଦାହେଲା । ସେ କହିଲେ, ମନେରଖିଥିବେ ଏଗ୍ରିମେଣ୍ଟରେ ଲେଖାହୋଇଛି, Black Hard Granite ଯେଉଁଠି ଏ ତିନିଟା ନ ଥିବ ତାକୁ ରିଜେକ୍ଟ କରିବେ ।

ପାହାନ୍ତା ବେଳକୁ ପାଖାପାଖି ୧୦୦ ଟ୍ରକ୍ ପଥର ରାସ୍ତାର ଦୁଇ ପାଖରେ ଗଦା ହୋଇଗଲାଣି । ଦାମୋଦର ମୁଛାଲ ଆସି ତାଙ୍କ ଗୋଡ଼ଧରି ଆଉ ପଥର ବାହାର ନ କରିବାକୁ ଅନୁରୋଧ କଲା; ମାତ୍ର ପଟ୍ଟନାୟକ ସାହେବ କହୁଥା'ନ୍ତି, ''ମୁଁ କ'ଣ କରିବି ? ଏଗ୍ରିମେଣ୍ଟରେ ଯାହା ଅଛି, ମୁଁ ତ ସେଇୟା କରୁଛି ।'' ସେତେବେଳେ ଆଜିକାଲି ଭଳି ମୋବାଇଲ୍ ଫୋନ୍‌ର ପ୍ରଚଳନ ନ ଥିଲା । ସେ କେମିତି କାହା ହାତରେ ଖବର ଦେଲା, ଆମେ ଜାଣିପାରିଲୁନି; ମାତ୍ର ଛଅଟା ବେଳକୁ ଗୋଟେ ଟ୍ରକ୍ ମାଲ୍ ଅନ୍‌ଲୋଡ୍ କଲାବେଳକୁ ଦେଖାଗଲା ଦୂରରୁ ଡି.ସି.ଙ୍କ ଆମ୍ୱାସାଡାର୍ କାର୍ (ORB 222) ଆସୁଛି ।

ସେ ଆମ ପାଖକୁ ଆସିଲେ । ନୀଳକଣ୍ଠ ମିଶ୍ର ସୁଟ୍ ପିନ୍ଧିଲେ, ପୂରା ସାହେବ ପରି ଦେଖାଯା'ନ୍ତି । ତାଙ୍କ କଥାବାର୍ତ୍ତା ମଧ୍ୟ ସେଇପରି । ପଟ୍ଟନାୟକ ସାହେବଙ୍କୁ ଇଂରାଜୀରେ ଝାଡ଼ିଦେଇଗଲେ । ତା'ପରେ ମୋ' ଆଡ଼କୁ ନଜର ପଡ଼ିଲା । କହିଲେ, ''ଏଟାକୁ ଭାବିଥିଲି ଗୋଟେ ଭଲ ସ୍ମାର୍ଟ ଅଫିସର ହେବ ବୋଲି; ମାତ୍ର ଏବେ ଦେଖୁଛି, ଏଇଟା ମଧ୍ୟ ବଦ୍‌ମାସ ।'' ମୁଁ ତାଙ୍କ ଆଗରେ କ'ଣ ବା କହିବି ? କାହିଁକି ପଥର ସବୁ ବାହାର କରୁଛ ? ଏସବୁ ତ ସମୁଦ୍ର ଭିତରେ ପଡ଼ିବ; ମାତ୍ର ୟୁ.ସି. ପଟ୍ଟନାୟକ କହିଲେ, ''ସାର୍ ! ଏଗ୍ରିମେଣ୍ଟରେ ଅଛି, ପଥର ସବୁ Black hard granite ହେବାକଥା । ସେ ସମୁଦ୍ରରେ ପଡୁ କି ବିଚ୍, ରାସ୍ତା କାମରେ ଲାଗୁ; ମାତ୍ର "This is neither black nor hard nor granite."

ଡି.ସି. ରାଗରେ ଲାଲ୍ ହୋଇଗଲେ ଏବଂ ପନ୍ଦର ଦିନ ମଧ୍ୟରେ ଆମକୁ ବଦଳି କରିବାକୁ ଧମକ ଦେଲେ । ପଟ୍ଟନାୟକ ସାହେବ ବିନୀତ ଭାବରେ କହିଲେ, ''ଆପଣ ମୋର ଚିଫ୍ ଇଞ୍ଜିନିୟର, ଯେଉଁଟା ଉଚିତ ତା' କରିପାରନ୍ତି, ମୋର କୌଣସି ଆପତ୍ତି ନାହିଁ ।'' ତା'ପରେ ଦାମୋଦର ମୁଛାଲକୁ କହିଲେ, ''ସବୁକଥା

ଲେଖି ଦଶଟା ବେଳକୁ ମତେ ଅଫିସ୍‌ରେ ଦେଖାକର ।'' ସେ ତା'ପରେ ଗାଡ଼ି ବୁଲାଇ ଭୁବନେଶ୍ୱର ଫେରିଗଲେ । ତା' କପେ ଯାଚିବାର ସାହସ ଆମର ହେଲାନି । ସେଦିନ ମୁଚ୍ଛାଲ କଥା ଶୁଣିଥିଲେ ସେ ପ୍ରାୟ ଲକ୍ଷେ ଟଙ୍କା ପାଇଥା'ନ୍ତେ । ଆଜି ଏ କଥା ପଢ଼ିଲାବେଳେ, ଲୋକମାନେ ହୁଏତ ଏ କଥା ଅତିରଞ୍ଜିତ ବୋଲି ଭାବିପାରନ୍ତି ; ମାତ୍ର ଯେଉଁମାନେ ପ୍ରଚାର କରୁଥିଲେ, ପାରାଦ୍ୱୀପରେ ଲକ୍ଷ ଲକ୍ଷ ଟଙ୍କା ଇଞ୍ଜିନିୟରମାନେ ଖାଇଗଲେ, ସେମାନଙ୍କୁ ମୁଁ ଏଇ ଗୋଟିଏ ଉଦାହରଣ ଦେଉଛି – କେଉଁଠି କାଁ ଭାଁ ଦୁର୍ନୀତି ନ ହେଉଥିବ, ମୁଁ ଏକଥା କହିପାରିବିନି; ମାତ୍ର ମୁଁ ଦୁଇ ବର୍ଷ ଥିବା ଭିତରେ ଆମ ଖୋର୍ଦ୍ଧା ସପ୍ଲାଇ ଡିଭିଜନରେ କୌଣସି ପ୍ରକାର ଦୁର୍ନୀତି ହୋଇନି, ଏ କଥା ମୁ ହଲ୍‌ପ କରି କହିପାରେ ।

ସତକୁସତ ପନ୍ଦରଦିନ ପରେ ତାଙ୍କର ଭୁବନେଶ୍ୱର ଅଫିସକୁ ବଦଳି ଅର୍ଡର ଆସିଗଲା । ତାଙ୍କ ଜାଗାରେ ପି.ଏସ୍. ରାଓ ବୋଲି ଜଣେ ଟୋକା ତେଲେଙ୍ଗା ଇଞ୍ଜିନିୟର ଆସିଲେ । ଛଅ ମାସ ପରେ ମୋର ଏରୋଇଞ୍ଜିନ୍ ଫ୍ୟାକ୍ଟ୍ରି ପ୍ରୋଜେକ୍ଟକୁ ସୁନାବେଡ଼ା ବଦଳି ହୋଇଗଲା । ସେଠି ମିଗ୍ ବିମାନ କାରଖାନା ତିଆରି ଚାଲିଥାଏ । ରୁଷିଆରୁ ଇଞ୍ଜିନିୟରମାନେ ଆସି କାମ ତଦାରଖ କରୁଥା'ନ୍ତି ।

ଜୀବନରେ ବହୁତ ଜାଗାରେ ଇଞ୍ଜିନିୟର ଭାବେ କାମ ରିଜେକ୍ଟ କଲାବେଳେ ସାଧୁ, ସଚ୍ଚୋଟ, ନିର୍ଭୀକ ଅଫିସର ପଟ୍ଟନାୟକ ସାହେବଙ୍କ ମୁହଁ ମୋ' ଆଖି ଆଗରେ ଭାସିଉଠେ ଏବଂ କାନରେ ଶୁଭିଯାଏ "Sir! This is neither hard nor black nor granite."

ପଟ୍ଟନାୟକ ସାହେବ ଆଜି ଆଉ ନାହାନ୍ତି; ମାତ୍ର ତାଙ୍କର କାର୍ଯ୍ୟ ଦ୍ୱାରା ମୋ ପରି ଅଗଣିତ ଇଞ୍ଜିନିୟରଙ୍କୁ ଅନୁପ୍ରାଣିତ କରିଯାଇଛନ୍ତି । ତାଙ୍କ ଅମର ଆତ୍ମା ପ୍ରତି ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ।

❑❑❑

# ହରିହର ସ୍ୱାଇଁ
# ଏକ ନିଆରା ମନ୍ତ୍ରୀ

ହରିହର ସ୍ୱାଇଁଙ୍କ ସହ ମୋର ପ୍ରଥମେ ସାକ୍ଷାତ ହୁଏ ବରହମ୍ପୁରରେ । ମୁଁ ସେତେବେଳେ ଆର୍.ଡି.ଡିପାର୍ଟମେଣ୍ଟରେ ଏସ୍.ଇ.ଥାଏ । ତାଙ୍କ ବିଷୟରେ ମୁଁ ଅନେକ କଥା ଶୁଣିଥିଲି । ଥରେ ଅଗଷ୍ଟ ୧୫ ତାରିଖରେ ଭବାନୀପାଟଣାରେ ପତାକା ଉତ୍ତୋଳନ କରିବାକୁ ଯାଇଥିଲାବେଳେ ସେ କିପରି ତଦାନୀନ୍ତନ ମହିଳା ଜିଲ୍ଲାପାଳଙ୍କୁ ଅପମାନିତ କରିଥିଲେ । ଆଉଥରେ ଜେଲ ବିଭାଗର ମନ୍ତ୍ରୀ ଥିଲାବେଳେ କେତେ କଏଦୀ ଛାଡ଼ କରିଦେବାକୁ ଜେଲରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ମୋଟ ଉପରେ ସେ ଭୀଷଣ ରାଗୀ ଥିଲେ ଏବଂ ରାଗିଲାବେଳେ ତାଙ୍କ ଭାଷାରେ ଆଦୌ ଶାଳୀନତା ରହୁ ନ ଥିଲା । ସେଥିରୁ କେତେ ସତ କେତେ ଅତିରଞ୍ଜିତ, ତା' ମୁଁ କହିପାରିବି ନାହିଁ ।

ହରିହର ସ୍ୱାଇଁ ପୂର୍ତ୍ତ ବିଭାଗର ମନ୍ତ୍ରୀ ଥିଲେ । ନିକଟରେ ମୋର ଚିଫ୍ ଇଞ୍ଜିନିୟର ପଦବୀକୁ ପ୍ରମୋଶନ ହେବାର ଥାଏ । ମୁଁ ପିଲାଦିନରୁ ସ୍ପଷ୍ଟବାଦୀ । ଏଭଳି ଲୋକ ପାଖରେ କିଭଳି ଚାକିରି କରିବି ଭାବି ମନରେ ଟିକେ ଆଶଙ୍କା ଥାଏ । ଥରେ ସେ ମତେ ଆସ୍କା ଡାକବଙ୍ଗଳାକୁ ଡକାଇ ପଠାଇଲେ । ତାଙ୍କ ନିଜ ଗାଁ (ଦେଓଗାଁ)ରେ ଗୋଟେ ଯଜ୍ଞ ହେବାର ଥାଏ । ଭଞ୍ଜନଗରକୁ ଗଲାବେଳେ ବାମ ପଟକୁ ଗୋଟେ ଆର୍.ଡି. ରାସ୍ତା ଅଛି । ସେଥିରେ ଚାରି/ପାଞ୍ଚ କି.ମି. ଗଲେ ତାଙ୍କ ଗାଁ ପଡ଼େ । ଯଜ୍ଞ ପୂର୍ବରୁ ସେ ରାସ୍ତାକୁ ପିଚୁ କରିଦେବାପାଇଁ ଅନୁରୋଧ କଲେ । ମୁଁ କହିଲି, ''ସାର୍ ! ହୋଇଯିବ ।'' ଯଜ୍ଞ ହେବାକୁ ଆଉ କୋଡ଼ିଏ/ପଚିଶ ଦିନ ଥାଏ । ତାଙ୍କର ବୋଧହୁଏ ମୋ' କଥାରେ ବିଶ୍ୱାସ ହେଲାନି । ତାଙ୍କ ଚିରାଚରିତ ଢଙ୍ଗରେ କହିଲେ, 'ତମେ କରଣିଆ ଲୋକ ! ବାହାପିଆ କଥା କହିବାରେ ଓସ୍ତାଦ । ତମକୁ କ'ଣ ବିଶ୍ୱାସ ?' ମୁଁ କହିଲି, ''ସାର୍ ! ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁନି । କାମ ଠିକ୍ ସମୟରେ ହୋଇଯିବ ।''

ସେତେବେଳେ ଶ୍ରୀ ସୁରେନ୍ଦ୍ର ନାଥ ପଣ୍ଡା ଭଞ୍ଜନଗରରେ ଏସ୍.ଡି.ଓ. ଥା'ନ୍ତି । ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥା'ନ୍ତି ଶ୍ରୀ ଏସ୍.ଏନ୍. ରଥ । ଦୁଇଜଣଯାକ ଦକ୍ଷ ଓ ପରିଶ୍ରମୀ । ତାଙ୍କୁ ଡାକି ସବୁକଥା କହିଲି । ଏଟା ମୋର ନିଜର ତଥା

ଆର୍.ଡି.ଡିପାର୍ଟମେଣ୍ଟର ଇଜ୍ଜତର ପ୍ରଶ୍ନ ବୋଲି କହିଲି । ସେତେବେଳେ ଜୀରା-ପଦ୍ମା ନଦୀ ଉପରେ ଦଶ ବର୍ଷ ଧରି ଚାଲୁଥିବା ପୋଲକୁ ଡିପାର୍ଟମେଣ୍ଟାଲି ସାରି ଦେଇଥିବାରୁ ଆମର ମନୋବଳ ବହୁତ ବଢ଼ିଯାଇଥାଏ । କାମ ଆରମ୍ଭ ହେଲା । ଦଶ/ବାର ଦିନ ପରେ ମୁଁ ଖବର ପାଇଲି କାମ ଯେପରି ଆଗେଇବା କଥା, ସେପରି ହେଉନି । ମୁଁ ଆଗରୁ ଖବର ନ ଦେଇ ଅତର୍କିତ ଭାବରେ କାମ ଉପରେ ପହଞ୍ଚିଲି ଏବଂ ପଣ୍ଡାବାବୁଙ୍କୁ ନିର୍ଦ୍ଦେଶ ଦେଲି ଆଉ ଗୋଟେ ରୋଲର ଅନ୍ୟ ରାସ୍ତାରୁ ଆଣି ସେ କାମରେ ଲଗାଇବା ପାଇଁ । ସଙ୍ଗେ ସଙ୍ଗେ ସେ ରୋଲର ଅଣାଗଲା ଏବଂ ରାସ୍ତା .. ଦୁଇ ମୁଣ୍ଡରୁ କାମ ଚାଲିଲା । ଖରାଦିନ । ଏସବୁ କାମ ସରିଲାବେଳକୁ ରାତି ଏଗାରଟା ହୋଇଗଲା । ହଠାତ୍ ହରି ସ୍ୱାଇଁ ଭୁବନେଶ୍ୱରରୁ ଆସି ସେଠି ପହଞ୍ଚିଲେ । ମୁଁ ନିଜେ ଏତେ ରାତିରେ କାମ ଉପରେ ଥିବାର ଦେଖି ଆଗ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କ ପାଖଲୋକମାନେ କୁଆଡ଼େ ତାଙ୍କୁ ଖବର ଦେଇଥିଲେ ଯେ ଯଜ୍ଞ ପୂର୍ବରୁ ରାସ୍ତା କାମ ସରିବନି, ଏସ୍.ଇ.ମିଛରେ ଭଣ୍ଡାଉଛନ୍ତି । ସେଦିନରୁ ମୁଁ ଲକ୍ଷ୍ୟ କଲି ତାଙ୍କର ମୋ ଉପରେ ଗୋଟେ ବିଶ୍ୱାସ ଆସିଗଲା ଓ ସେ ମତେ ଥଟ୍ଟାରେ ମିଲିଟାରୀ ଇଞ୍ଜିନିୟର ବୋଲି କହୁଥିଲେ ।

ଏ ଭିତରେ ମୋର ଚିଫ୍ ଇଞ୍ଜିନିୟର ପୋଷ୍ଟିଂ ଲାଗି ନୋଟିଫିକେସନ୍ ବାହାରିଲା । ସେତେବେଳେ ମୋର ଅଗ୍ରଜପ୍ରତିମ ତଥା ଶୁଭାକାଂକ୍ଷୀ ବନ୍ଧୁ ଶ୍ରୀ ଗୋପାଳକୃଷ୍ଣ ବେହେରା ପୂର୍ତ୍ତ ବିଭାଗରେ ମୁଖ୍ୟଯନ୍ତ୍ରୀ ଥିଲେ । ସେ ଜଣେ ସୁଦକ୍ଷ ଇଞ୍ଜିନିୟର ଥିଲେ ଏବଂ ହରି ସ୍ୱାଇଁଙ୍କର ଅତ୍ୟନ୍ତ ପ୍ରିୟ ଥିଲେ । ଥରେ କଥା ଛଳରେ ହରି ସ୍ୱାଇଁ କୁଆଡ଼େ ତାଙ୍କୁ କହିଲେ, ''ଗୋପାଳବାବୁ ! ତମେ ଟାଣୁଆ ଚିଫ୍ ଇଞ୍ଜିନିୟରମାନେ ତ ରିଟାୟାର କରିଯିବ । ଆଉ ଟାଣୁଆ ଲୋକ ମତେ କେହି ଦିଶୁନାହାନ୍ତି ।'' ସେ କହିଲେ, ''ସାର୍ । ଲୋକ ଅଛନ୍ତି; ମାତ୍ର ଆପଣ ତାଙ୍କୁ କଲେ ହେଲା । ତା'ପରେ ଦିନେ ମତେ ଡାକି କହିଲେ – କାଲି ସକାଳ ଛଅଟା ବେଳକୁ ରେଡି ହୋଇଥିବ ହରି ସ୍ୱାଇଁଙ୍କ ପାଖକୁ ଯିବା । ତମ ବିଷୟରେ ମୁଁ ତାଙ୍କୁ ସବୁକଥା କହିଛି । ପୂର୍ତ୍ତ ବିଭାଗରେ ବହୁତ ଲୋକ ମତେ ଈର୍ଷା କରୁଥିଲେ ଏବଂ ମୋର ରୋକ୍ଠୋକ୍ କଥା ଯୋଗୁଁ ଭିତରେ ମୋ' ଉପରେ ବହୁତ ରାଗ ରଖିଥିଲେ । ମୋର ପୂର୍ତ୍ତ ବିଭାଗରେ ଚିଫ୍ ଇଞ୍ଜିନିୟର ହେବାରେ ଗୋପାଳବାବୁଙ୍କ ସାହାଯ୍ୟ ମୁଁ କେବେହେଲେ ଭୁଲିପାରିବିନି ।

ନୋଟିଫିକେସନ୍ ବାହାରିଲା ପରେ ମୁଁ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀଯୁକ୍ତ ମତ୍‌ଲୁବ ଅଲ୍ଲୀଙ୍କୁ ଦେଖାକଲି । ସେ ମତେ ସୁନ୍ଦରଗଡ଼ରୁ ଗ୍ରାମ୍ୟ ଉନ୍ନୟନ ବିଭାଗକୁ ଆଣିଥିଲେ ଏବଂ ବରହମ୍‌ପୁରରେ ଏସ୍.ଇ. ହିସାବରେ ପୋଷ୍ଟିଂ କରିଥିଲେ । ଶ୍ରୀ ପ୍ରଫୁଲ୍ଲ କୁମାର ମିଶ୍ର ଚାକିରିରୁ ଅବସର ନେଲାପରେ ଚିଫ୍ ଇଞ୍ଜିନିୟର ପୋଷ୍ଟ ଖାଲି ପଡ଼ିଥାଏ । ତାଙ୍କୁ କହିବାରୁ ସେ କହିଲେ, ''ମୋର କୌଣସି ଆପତ୍ତି ନାହିଁ; ମାତ୍ର ହରିହର ସ୍ୱାଇଁ ପୂର୍ତ୍ତ ବିଭାଗର ମନ୍ତ୍ରୀ । ସେ ଆଗ ଆପଣଙ୍କ ନାଁ ପଠାଇଲେ ସିନା ମୁଁ ଯାହା କରିବାର କରିବି ।'' ମୁଁ ହରିହର ସ୍ୱାଇଁଙ୍କୁ କହିବାରେ ସେ ଆଗ ଥଟ୍ଟା କଲେ । କହିଲେ – ମୁଁ ସ୍ଥିର କରିଛି, ତମେ ପି.ଡବ୍ଲ୍ୟୁ.ଡି.ରେ ଚିଫ୍ ଇଞ୍ଜିନିୟର ହେବ । ମୁଁ ତାଙ୍କୁ କୃତଜ୍ଞତା ଜଣାଇ କହିଲି, ''ସାର୍ ! ଯେଉଁ ଡିପାର୍ଟମେଣ୍ଟରେ ରହିଲେ ମଧ୍ୟ ଆପଣ ମୋର ମନ୍ତ୍ରୀ । ପି.ଡବ୍ଲ୍ୟୁ.ଡି.ରେ ତ ଜୀବନଯାକ କଟିଲା । ଚାକିରିର ଶେଷବେଳକୁ ଏଇ ଗାଁ ଗହଳରେ ରାସ୍ତା ତଥା ପୋଲ କାମ କରିପାରିଲେ କିଛିଟା ଆତ୍ମସନ୍ତୋଷ ଆସିବ ।'' ହରି ସ୍ୱାଇଁ ଟିକେ ମୋ' ଆଡ଼କୁ ଚାହିଁ ହସିଲେ । ତା'ପରେ କହିଲେ, ''ହଉ ! ଏକା କଥା । ମୁଁ କାଲି ତମ ନାଁ ପଠାଇଦେବି ।'' ମୋ ନାଁ ଗଲା ଏବଂ ମତଲୁବ ଅଲ୍ଲୀ ମଧ୍ୟ ତାଙ୍କ କଥା ରକ୍ଷାକରି ମୋ ନାଁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଅନୁମୋଦନ ସକାଶେ ପଠାଇଲେ । ସେ ଫାଇଲରେ ମୋର ବନ୍ଧୁ କୁଳମଣି ବିଶ୍ୱାଳ, ଯେ କି ମୋ' ସହିତ ଚିଫ୍ ଇଞ୍ଜିନିୟର ପୋଷ୍ଟ୍‌କୁ ପ୍ରମୋଶନ ପାଇଥାନ୍ତି, ତାଙ୍କୁ ଏମ୍.ଡି., ଓ.ବି.ସି.ସି. ପୋଷ୍ଟିଂ ଲାଗି ପୂର୍ତ୍ତ ବିଭାଗ ସୁପାରିସ କରିଥାଏ । ମାତ୍ର କଥାରେ ଅଛି–

''ଦଇବ ଦଉଡ଼ି ମଣିଷ ଗାଈ
ଯେଣିକି ଓଟାରେ ତେଣିକି ଯାଇ ।''

ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ଫାଇଲ ଫେରିଲାପରେ ଦେଖାଗଲା ମୋର ଓ.ବି.ସି.ସି.କୁ ପୋଷ୍ଟିଂ ହୋଇଛି ଏବଂ କୁଳମଣିଙ୍କର ଆର୍.ଡି. ଚିଫ୍ ଇଞ୍ଜିନିୟର ଭାବେ ପୋଷ୍ଟିଂ ହୋଇଛି । ଏହା ଦେଖିକରି ହରି ସ୍ୱାଇଁ ରାଗରେ ନିଆଁବାଣ । ସେ କହିଲେ, ''ମୁଁ ପୂର୍ତ୍ତମନ୍ତ୍ରୀ । ଅନ୍ୟ ବିଭାଗକୁ କିଏ ଡେପୁଟେସନ୍‌ରେ ଯିବ, ସେ କଥା ସ୍ଥିର କରିବା ପୂର୍ତ୍ତ ବିଭାଗର ଦାୟିତ୍ୱ ।'' ପରେ ଜଣାପଡ଼ିଲା, ମୋର ବନ୍ଧୁ କୁଳମଣି ସେ ସମୟର ସର୍ବଶକ୍ତିମାନ୍ ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳଙ୍କୁ ଧରାଧରି କରି ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରେ ପୋଷ୍ଟିଂ ଅର୍ଡରକୁ ବଦଳେଇ ଦେଇଛନ୍ତି । ଜୀବନରେ ଅନେକବାର ନିଜ ବନ୍ଧୁମାନଙ୍କଦ୍ୱାରା ମୁଁ ଏଭଳି ପ୍ରତାରିତ ହୋଇଛି; ମାତ୍ର ସେଥିଲାଗି

ମୋ ମନରେ ସାମାନ୍ୟତମ ଅବଶୋଷ ନାହିଁ କି କାହା ବିରୋଧରେ ମୋର ଅଭିଯୋଗ ନାହିଁ । ଓ.ବି.ସି.ସି.ରେ ଯୋଗଦେବାର ଛଅ ମାସ ନ ପୂରୁଣୁ ସେଇ ହରି ସ୍ୱାଇଁ ମତେ ପୂର୍ତ୍ତ ବିଭାଗର ଚିଫ୍ ଇଞ୍ଜିନିୟର କରି ନିର୍ମାଣ ସୌଧ (ଚିଫ୍ ଇଞ୍ଜିନିୟରମାନଙ୍କ ଅଫିସ)କୁ ବଦଳି କରି ଆଣିଲେ । ସେଥିଲାଗି ମୁଁ ତାଙ୍କ ନିକଟରେ କୃତଜ୍ଞ ।

ଥରକର ଘଟଣା । ବାଲେଶ୍ୱର ଜିଲ୍ଲାର ଜଳେଶ୍ୱରଠାରେ ପୂର୍ତ୍ତ ବିଭାଗର ନୂତନ ଡାକବଙ୍ଗଳାକୁ ମନ୍ତ୍ରୀ ଉଦ୍‌ଘାଟନ କରିବାର ଥାଏ । ସେ ସମୟରେ ବିଧାନସଭା ଚାଲୁଥାଏ । ମତେ ମନ୍ତ୍ରୀଙ୍କ କୋଠରିରୁ ଡାକରା ଆସିଲା । ମୁଁ ପହଞ୍ଚିଲାବେଳକୁ ସେଠି ପୂର୍ତ୍ତ ବିଭାଗର ସଚିବ ଶ୍ରୀ ଅଜୟ ପଣ୍ଡା ଏବଂ ଅନ୍ୟମାନେ ବସିଥା'ନ୍ତି । ମତେ ସେକ୍ରେଟାରୀ କହିଲେ, ''ମୃତ୍ୟୁଞ୍ଜୟ ! ମନ୍ତ୍ରୀ ଚାହୁଁଛନ୍ତି, ତୁମେ ତାଙ୍କ ସାଙ୍ଗରେ ଯିବ ।'' ମୁଁ ପିଲାଦିନୁ ଟିକିଏ ନୀତିନିୟମ ମାନି ଚଳିବା ଲୋକ । ମୁଁ କହିଲି, ''ସାର୍, ଡାକବଙ୍ଗଳା ସବୁ ଚିଫ୍ ଇଞ୍ଜିନିୟର ରୋଡ୍ ଅଧୀନରେ । ମୁଁ ତ ଚିଫ୍ ଇଞ୍ଜିନିୟର ବିଲ୍‌ଡିଙ୍ଗସ୍ । ତେଣୁ କମିଲା (ମଦନମୋହନ କମିଲା ଏବଂ ମୋର ଅନ୍ତରଙ୍ଗ ବନ୍ଧୁ), ଯିବାଟା ଉଚିତ ହେବ ।'' ହରି ସ୍ୱାଇଁଙ୍କର ନାକ ଅଗରେ ରାଗ, ସେ କହିଲେ, ''ତାହାହେଲେ ତମେ ଚିଫ୍ ଇଞ୍ଜିନିୟର ନ ହୋଇ ମନ୍ତ୍ରୀ ହୋଇଯାଅ । ମୁଁ ସ୍ଥିର କରିବି, ମୋ' ସାଙ୍ଗରେ କିଏ ଯିବ କି ନ ଯିବ ।''

ତା'ପରେ ସେଦିନ ରାତି ଟ୍ରେନ୍‌ରେ ଆମ ଦୁଇ ଜଣଙ୍କ ନାଁ'ରେ ଦୁଇଟା ବର୍ଥ ରିଜର୍ଭ କରିବାକୁ ତାଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ମୃତ୍ୟୁଞ୍ଜୟ ତ୍ରିପାଠୀଙ୍କୁ ନିର୍ଦ୍ଦେଶ ଦେଲେ । ଆମେ ଦୁହେଁ ରାତି ଟ୍ରେନ୍‌ରେ ଗଲୁ । ବଡ଼ି ସକାଳୁ ସକାଳୁ ଟ୍ରେନ୍ ଜଳେଶ୍ୱରରେ ପହଞ୍ଚିଲା । ମନ୍ତ୍ରୀ ଶୋଇଥାନ୍ତି । ମୁଁ କବାଟ ଖୋଲି ପଦାକୁ ଆସିଲାବେଳକୁ ପ୍ଲାଟ୍‌ଫର୍ମରେ ଶହେ ଉପରେ ଯୁବ କଂଗ୍ରେସ ପିଲା 'ହରିହର ସ୍ୱାଇଁ ଜିନ୍ଦାବାଦ୍' ଧ୍ୱନି ଦେଉଥାନ୍ତି । ତା' ଭିତରୁ କେତେଜଣ ଫୁଲମାଳ ଧରି ମୋ' ଆଡ଼କୁ ଆସିବାରୁ ମୁଁ ଜାଣିପାରିଲି, ସେମାନେ ମନ୍ତ୍ରୀଙ୍କୁ ଆଗରୁ କେବେହେଲେ ଦେଖି ନାହାନ୍ତି । ମୁଁ ତାଙ୍କୁ ବାରଣ କରି କହିଲି, ''ମନ୍ତ୍ରୀ ଭିତରେ ଅଛନ୍ତି । ମୁଁ ଡାକି ଦଉଛି ।'' ତା'ପରେ ସେମାନେ ଗୋଟେ ମୋଟରସାଇକେଲ ଶୋଭାଯାତ୍ରାରେ ମନ୍ତ୍ରୀଙ୍କୁ ଡାକବଙ୍ଗଳାକୁ ପାଛୋଟି ନେଲେ । ଦିନ ଏଗାରଟାବେଳକୁ ଉଦ୍‌ଘାଟନ କାର୍ଯ୍ୟ ଜାକଜମକରେ ହେଲା । ଲଞ୍ଚ୍ ଖାଇସାରିବା ପରେ ମୁଁ ଗୋଟେ ରୁମ୍‌ରେ ବିଶ୍ରାମ ନେଉଛି । ଏହି ସମୟରେ ମୋ ରୁମ୍‌କୁ ବାଲେଶ୍ୱର ଜିଲ୍ଲାପାଳ

ବସନ୍ତ କୁମାର ସ୍ୱାଇଁ ପଶିଆସିଲେ । ସେ ମୋର ପୁରୁଣା ବନ୍ଧୁ । ଆଗରୁ ମୁଁ କେନ୍ଦ୍ରାପଡ଼ାରେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଥିଲାବେଳେ ସେ ସେଠାରେ ଉପଜିଲ୍ଲାପାଳ ଥିଲେ । ମତେ ଅଭିନନ୍ଦନ ଜଣାଇ କହିଲେ, ''ଆପଣ ଏ ଭିତରେ ସର୍ବୋଚ୍ଚ ଯନ୍ତ୍ରୀ ପଦବୀକୁ ପ୍ରମୋଶନ ପାଇବାକୁ ଯାଉଛନ୍ତି । ମତେ ମନ୍ତ୍ରୀ ନିଜେ ଏକଥା କହିଲେ ।'' ମୁଁ କହିଲି, ''ବସନ୍ତବାବୁ ! ମୋ' ଉପରେ ଅନ୍ତର୍ଯାମୀ ପଣ୍ଡା (ସେ ସେତେବେଳକୁ ସସ୍‌ପେନ୍‌ସନରେ ଥାଏ) ଅଛି । ମୁଁ କେମିତି ହେବି ? କାରଣ ତା'ର ମୋର ଏକା ଦିନରେ ଅବସର ନବୁ ।'' ପରେ ଏକଥା ମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ମୃତ୍ୟୁଞ୍ଜୟ ତ୍ରିପାଠୀଙ୍କୁ ପଚାରିବାରେ ସେ କହିଲେ, ''ମନ୍ତ୍ରୀ ଆପଣଙ୍କୁ ବହୁତ ଭଲପାଆନ୍ତି । ଏଟା ତାଙ୍କର ଆନ୍ତରିକ ଇଚ୍ଛା ।'' ମୁଁ କହିଲି – ମୁଁ ତାଙ୍କୁ ବୁଝାଇଦେବି । ଅନ୍ତର୍ଯାମୀ ଉପରୁ ସସ୍‌ପେନ୍‌ସନ୍ ଅର୍ଡର ଉଠିଲା । ମୁଁ ସେଥିରେ ସାହାଯ୍ୟ କରିଥିଲି, ଯେଉଁଥିପାଇଁ ସେ ମୋ' ଘରକୁ ଆସି ଧନ୍ୟବାଦ ଦେଇଥିଲା । ମାତ୍ର ହରିସ୍ୱାଇଁ ମୋ' ଉପରେ ଟିକିଏ ବିରକ୍ତ ହେଲେ । କହିଲେ, ''ତମେ ସସ୍‌ପେଣ୍ଡ ହୋଇଥିଲେ ତମ ଲାଗି ସେ ଏମିତି କରିଥାନ୍ତା ତ ?'' ମୁଁ ନୀରବ ରହିଲି ।

ତାଙ୍କ ମନ୍ତ୍ରିତ୍ୱବେଳେ ସେ ଦୁଇଟି ବଳିଷ୍ଠ ପଦକ୍ଷେପ ନେଇଥିଲେ । ପ୍ରଥମରେ ସେ ସେକ୍ରେଟାରୀଏଟ୍ ଛାଡ଼ି ଆମ ସଙ୍ଗରେ ବସି ଅଫିସ୍ କଲେ, ଯାହା ସେତେବେଳେ ସାରା ଓଡ଼ିଶାରେ ଚହଳ ସୃଷ୍ଟି କରିଥିଲା । ଦ୍ୱିତୀୟରେ ସେ ପୂର୍ତ୍ତ ବିଭାଗରେ ବହୁକାଳରୁ ଚଳିଆସୁଥିବା କୋଟେସନ୍‌ରେ ଷ୍ଟୋର୍ ଲାଗି ଦରକାରୀ ଓ ଅଦରକାରୀ ଜିନିଷ କିଣିବା ପ୍ରଥା ସମ୍ପୂର୍ଣ୍ଣ ଉଠେଇଦେଲେ । ଏହାଦ୍ୱାରା କିଛି ଅସାଧୁ ପ୍ରକୃତିର କଣ୍ଟ୍ରାକ୍ଟର ଏବଂ ଇଞ୍ଜିନିୟରମାନଙ୍କର ଅସୁବିଧା ହେଲା; ମାତ୍ର ପୂର୍ତ୍ତ ବିଭାଗରେ ଲକ୍ଷ ଲକ୍ଷ ଟଙ୍କା ବଞ୍ଚିଗଲା । ସେ ବହୁତ ଦୃଢ଼ମନା ଥିଲେ ଏବଂ ଯାହା ଥରେ ଉଚିତ ମନେକରିବେ, ସେଥିରୁ ପଛକୁ ହଟୁ ନ ଥିଲେ । ତାଙ୍କବେଳେ ବହୁତ ଇଞ୍ଜିନିୟର, ଯେଉଁମାନେ ଜୀବନରେ ଏସ୍.ଇ. କିମ୍ବା ଚିଫ୍ ଇଞ୍ଜିନିୟର ହୋଇପାରି ନ ଥାନ୍ତେ, ସେମାନେ ଦିନକ ପାଇଁ ହେଲେ ମଧ୍ୟ ସେ ପଦକୁ ଉନ୍ନୀତ ହୋଇପାରିଥିଲେ ।

ଥରେ ସକାଳେ ତାଙ୍କ ବଙ୍ଗଳାରେ ମାଣ୍ଡିଆ ଦହି ସରବତ ପିଉଥିଲାବେଳେ (ସେ ସକାଳ ଘ.୮.୩୦ମି.ରେ ସବୁଦିନ ମାଣ୍ଡିଆ ଓ ଦହି ଖାଉଥିଲେ, ଏପରିକି ବାହାରକୁ ଟୁର୍‌ରେ ଗଲାବେଳେ ମଧ୍ୟ) ମୁଁ ତାଙ୍କୁ ମୋ' ଘରକୁ ଖାଇବାକୁ ନିମନ୍ତ୍ରଣ କଲି । ସେ ତାଙ୍କର ସ୍ୱଭାବସୁଲଭ ଗଞ୍ଜାମୀ ଭାଷାରେ କହିଲେ, ''ଶୁଣ ମୃତ୍ୟୁଞ୍ଜୟ !

ଏବେ ଆମେ ମନ୍ତ୍ରୀ ଅଛୁ । ମାଈ ବାଘକୁ କହିଲେ, ଘରେ ଆସି କ୍ଷୀର ଦେବ । ମୁଁ ମନ୍ତ୍ରୀ ନ ଥିବି, ତମେ ମୁଖ୍ୟମନ୍ତ୍ରୀ ନ ଥିବ; ସେତେବେଳେ ଡାକିବ ଯେ, ପ୍ରକୃତ ସ୍ନେହ ଜଣାପଡ଼ିବ ।'' ମୁଁ ଚାକିରିରୁ ଅବସର ନେଲା ପରେ ଥରେ ତାଙ୍କୁ ନିମନ୍ତ୍ରଣ କରିବାରୁ ସେ ଆନନ୍ଦରେ ଆସି ମୋ' ଘରେ ମଧ୍ୟାହ୍ନଭୋଜନ କରିଥିଲେ ।

ହରି ସ୍ୱାଇଁଙ୍କର ଅନେକ ବଦ୍‌ଗୁଣ ଥିଲା; ମାତ୍ର ସତ କହିଦେଲେ ତମେ ଯେତେବଡ଼ ଭୁଲ୍ କରିଥିଲେ ମଧ ସେ କ୍ଷମା କରିଦେଉଥିଲେ । ନିଷ୍ଠାପର, ପରିଶ୍ରମୀ ଅଫିସରମାନଙ୍କୁ ସେ ବହୁତ ଭଲପାଉଥିଲେ ଏବଂ ଦରକାରବେଳେ ସୁରକ୍ଷା ଦେଉଥିଲେ । ସେଥିଲାଗି ବେଳେବେଳେ ସେ ତାଙ୍କ ନିଜ ପାର୍ଟିର ଏମ୍.ଏଲ୍.ଏ.ମାନଙ୍କ ପାଖରେ ଅପ୍ରିୟ ହେଉଥିଲେ । ଶେଷରେ, ଗୋଟେ ଦୁର୍ଭାଗ୍ୟପୂର୍ଣ୍ଣ ଘଟଣାରେ ଲାଲଚାନ୍ଦ୍ ଜୁଏଲର୍ସ ଦୋକାନରେ ବସିଥିଲାବେଳେ ପିସ୍ତଲରୁ ଫାଙ୍କା ଗୁଳି ଫୁଟାଇବାରୁ ତାଙ୍କ ଉପରେ କଂଗ୍ରେସ ହାଇକମାଣ୍ଡଙ୍କ କୋପଦୃଷ୍ଟି ପଡ଼ିଲା । ତାଙ୍କର ଯେତେ ଶୁଭାକାଂକ୍ଷୀ ଥିଲେ, ତାଙ୍କୁ ବୁଝାଇଲେ – ହରିବାବୁ, ତମେ କହିଦିଅ ମୋର ସିକ୍ୟୁରିଟି ଅଫିସର ଭୁଲ୍‌ରେ ଗୁଳି ଫୁଟାଇଛି ବୋଲି; ମାତ୍ର ଚିର ସ୍ୱାଭିମାନୀ ହରି ସ୍ୱାଇଁ ନିଜ ଜିଦ୍‌ରେ ଅଟଳ । ମନ୍ତ୍ରିତ୍ୱରୁ ଗଲେ ପଛକେ ମିଛ କହିଲେ ନାହିଁ । ଏ'ଟା ମୋର ଅଙ୍ଗେ ନିଭାଇବା ଘଟଣା । କଂଗ୍ରେସରେ ମନ୍ତ୍ରୀ ଥିଲାବେଳେ ମଧ ବିଜୁ ପଟ୍ଟନାୟକଙ୍କ ପ୍ରତି ତାଙ୍କର ଗଭୀର ସମ୍ମାନ ଥିଲା ଏବଂ ସେ ଖୋଲାଖୋଲି ଭାବେ ସେଟା ପ୍ରକାଶ କରୁଥିଲେ । ସେ ସଦାବେଳେ ନିଜ ମତକୁ ଅନ୍ୟ ଆଗରେ ନିର୍ଭୀକ ଭାବେ ପ୍ରକାଶ କରୁଥିଲେ ।

ହରି ସ୍ୱାଇଁ ଆଜି ସ୍ୱର୍ଗରେ । ଦୁଃସାଧ୍ୟ ରୋଗ ଅକାଳରେ ତାଙ୍କୁ ଆମ ପାଖରୁ ଛଡ଼ାଇନେଲା; ମାତ୍ର ତାଙ୍କ ସାଙ୍ଗରେ କାମ କରିଥିବା ଯେ କେହି ଲୋକ ସେ ପଲିଟିକାଲ ହୁଅନ୍ତୁ, ବା ଅଫିସର ହୁଅନ୍ତୁ ତାଙ୍କୁ ବହୁତ ଦିନଯାଏ ମନେରଖିବେ ।

''ସର୍ବେ ଚଳିବେ କାଳବଳେ
ଯଶ ରହିବ ମହୀତଳେ ।''



# ପ୍ରଶାନ୍ତ ମିଶ୍ର
## ସରଳ ଅଥଚ ଦୃଢ଼ମନା

ପ୍ରଶାନ୍ତବାବୁ ଆମର ପାରିବାରିକ ବନ୍ଧୁ । ତାଙ୍କ ବାପା ଶ୍ରୀଯୁକ୍ତ କିଶୋର ଚନ୍ଦ୍ର ମିଶ୍ର ଆମ ପିଲାଦିନେ ବଡ଼ମ୍ବାର ତହସିଲଦାର ଥିଲେ । ମୋ' ବାବାଙ୍କ ସାଙ୍ଗରେ ତାଙ୍କର ପ୍ରଗାଢ଼ ବନ୍ଧୁତା ଥିଲା । ତାଙ୍କ ବଡ଼ଭାଇ ରମାକାନ୍ତ ମିଶ୍ର (ବାବୁଲାଭାଇନା) ରେଭେନ୍ସାରେ ପଢ଼ିଲାବେଳଠାରୁ ବାବାଙ୍କ ସାଙ୍ଗ ଏବଂ ଆଇ.ଏ.ଏସ୍. ପାଇଲା ପରେ ମଧ୍ୟ ସେ ବନ୍ଧୁତା ଅତୁଟ ରହିଛି । ମୁଁ ଇଞ୍ଜିନିୟରିଂ ପାସ୍ କଲା ପରେ ଶୁଣିଲି ପ୍ରଶାନ୍ତବାବୁ ମଧ୍ୟ ତାଙ୍କ ଭାଇନାଙ୍କ ପଦାଙ୍କ ଅନୁସରଣ କରି ଆଇ.ଏ.ଏସ୍. ପାଇଲେ ଏବଂ ଉତ୍ତର-ପ୍ରଦେଶରେ ପୋଷ୍ଟିଂ ହେଲେ । ତେଣୁ ତାଙ୍କ ସାଙ୍ଗରେ ଦେଖାସାକ୍ଷାତ ଟିକିଏ କମିଗଲା । ଯୋଗକୁ ମୋ' ସାନଭାଇ ଗୋପବନ୍ଧୁ (ବର୍ତ୍ତମାନ ଉତ୍ତରପ୍ରଦେଶ ସରକାରଙ୍କ ଅଧୀନରେ ଉଚ୍ଚ ପଦବୀରେ ଅବସ୍ଥାପିତ) ଆଇ.ଏ.ଏସ୍.ରେ ମନୋନୀତ ହୋଇ ସେଇ ଉତ୍ତରପ୍ରଦେଶରେ ଯୋଗଦେଲା ।

ମୋର ସେତେବେଳେ କଟକରେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଭାବେ ପୋଷ୍ଟିଂ ହୋଇଥାଏ । ବାବୁଲାଭାଇନା ସେଣ୍ଟ୍ରାଲ୍ ଡିଭିଜନରେ କମିସନର ଭାବେ କଟକରେ ଥା'ନ୍ତି । ତାଙ୍କ ଘରେ ପ୍ରଶାନ୍ତବାବୁଙ୍କ ସାଙ୍ଗରେ ଦେଖାହେଲା । ମୁଁ ତାଙ୍କୁ ଘରକୁ ଖାଇବାକୁ ଡାକିଲି । ମୋର ଯେତେଦୂର ମନେହେଉଛି, ସେଦିନ ମାର୍ଗଶିର ମାସ ଗୁରୁବାର ଥିଲା । ତେଣୁ ଅରୁଆଭାତ, କଞ୍ଚା ମୁଗଡାଲି, ସାରୁ ଚକଟା, କଦଳୀ ଭଜା, ଓଉ ଖଟା ଏମିତି କିଛି ହୋଇଥିଲା । ପ୍ରଶାନ୍ତ ଖାଇସାରି ଭାରି ଖୁସି ହେଲା ଏବଂ କହିଲା, ''ତା' ପିଲାଦିନେ ତାଙ୍କ ବୋଉ ଏମିତି ରାନ୍ଧୁଥିଲେ । ବର୍ତ୍ତମାନ ସେ ସବୁ ଆସ୍ତେ ଆସ୍ତେ ଲୋପ ପାଇ ଆସିଲାଣି ।'' ଗଲାବେଳେ ମୋ' ଦୁଇ ହାତକୁ ଧରି କହିଲା, ''ନନା ! ଆପଣ ଯେତେବେଳେ ଉତ୍ତରପ୍ରଦେଶ ଯିବେ, କେବେହେଲେ ଭାବିବେନି ଯେ ଆପଣଙ୍କର ଗୋଟେ ଭାଇ ସେଠାରେ ଅଛି । ମନେରଖିବେ, ଆଉ ଗୋଟିଏ ଭାଇ ମଧ୍ୟ ସେଠି ଅଛି । ମତେ କଥାଟା ଭାରି ଆନ୍ତରିକତାପୂର୍ଣ୍ଣ ମନେହେଲା ।

କେତେଦିନ ପରେ ମୋର ଉତ୍ତରପ୍ରଦେଶକୁ ବୁଲିଯିବାର ସୁଯୋଗ ଆସିଲା । ଗୋପବନ୍ଧୁର୍ ସେତେବେଳକୁ ବନାରସରେ ଏସ୍.ଡି.ଓ. ଭାବରେ ପୋଷ୍ଟିଂ ହୋଇଥାଏ । ତା'ର ବିବାହ ମଧ୍ୟ ହୋଇ ନ ଥାଏ । ମୁଁ ତା' ପାଖରେ ରହିଲି ।

ଦିନେ ମୋର 'ବିନ୍ଧେଶ୍ୱରୀ' ଦେବୀଙ୍କ ପାଖକୁ ଯିବାର ପ୍ରୋଗ୍ରାମ୍ ହେଲା । ମୋର ମାମୁପୁଅ ଭାଇ 'ଭୁନା' ସେତେବେଳକୁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ପଢୁଥାଏ । ଗୋପବନ୍ଧୁ ଆମେ ଦୁହେଁ ଯିବାପାଇଁ ଗୋଟେ କାର୍‌ର ବନ୍ଦୋବସ୍ତ କରିଥାଏ । କଥା ହେଲା, ଆମେ ସକାଳୁ ବାହାରି ସନ୍ଧ୍ୟା ସୁଦ୍ଧା ବନାରସ ଫେରିଆସିବୁ । ମୋର ଯେତେଦୂର ମନେପଡୁଛି, ଆମ ସାଙ୍ଗରେ ତା'ର ପିଅନ ମଧ୍ୟ ଗଲା । ବିନ୍ଧେଶ୍ୱରୀ ବହୁତ ପ୍ରତ୍ୟକ୍ଷ ଦେବୀ । ଏଠାରେ ମାନସିକ କରି ରାଜନାରାୟଣ ସେସମୟର ପ୍ରବଳପ୍ରତାପୀ ଭାରତର ତଦାନୀନ୍ତନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କୁ ହରାଇଥା'ନ୍ତି ଏବଂ ମାନସିକ କରିଥିବାରୁ ମୁଣ୍ଡ ଲଣ୍ଡା ହୋଇଥା'ନ୍ତି । ଏ ଖବର ସେତେବେଳେ ସାରା ଭାରତବର୍ଷରେ ଚହଳ ସୃଷ୍ଟି କରିଥାଏ ।

ଭଲରେ ଭଲରେ ଠାକୁରାଣୀଙ୍କ ଦର୍ଶନ ସରିଲା । ସେଠାରେ ମୁଁ ଜାଣିବାକୁ ପାଇଲି ଯେ ଏ ଜାଗାଟା ମୀର୍ଜାପୁର ଜିଲ୍ଲାର ଅନ୍ତର୍ଗତ । ପ୍ରଶାନ୍ତବାବୁ ସେତେବେଳେ ସେଠାରେ କଲେକ୍ଟର ଥାଆନ୍ତି । ଭୁନାକୁ ପଚାରିଲି, ''କିରେ ! ମୀର୍ଜାପୁର ଯିବା ? ସେ ପ୍ରଥମେ ଟିକିଏ ଦୋଦୋପାଞ୍ଚ ହେଉଥିଲା, କାରଣ ଥରେ ଆଇ.ଏ.ଏସ୍. ପାଇଗଲେ ଲୋକମାନେ କିପରି ଖାପଛଡ଼ା ବ୍ୟବହାର କରନ୍ତି, ସେ ଅଚ୍ଛେବହୁତେ ଜାଣିଥିଲା । ପ୍ରଶାନ୍ତବାବୁ ମତେ କଟକରେ କହିଥିବା କଥା ମୁଁ ତାକୁ କହିଲି ଏବଂ ଆମ ଆତିଥ୍ୟରେ କିଛି ତ୍ରୁଟି ହେବନି ବୋଲି ଆଶ୍ୱାସନା ଦେଲି ।

ମୀର୍ଜାପୁର ସେଠାରୁ ଚାଳିଶ କିଲୋମିଟର ପାଖାପାଖି ହେବ । ଆମେ ଦିନ ବାରଟା ପାଖାପାଖି କଲେକ୍ଟରଙ୍କ ବାସଭବନରେ ପହଞ୍ଚିଲୁ; ମାତ୍ର ବଙ୍ଗଳାରେ ଗୋଟେ କଥା ଅଛି, ''ଯେଖାନେ ବାଘେର ଭୟ ସେଖାନେ ସନ୍ଧ୍ୟା ହୟ ।'' ମାନେ, ତମେ ଯେଉଁ ଜିନିଷକୁ ଡରିବ, ସେୟା ହେବ । ସେଠାରେ କାର୍, ଜିପ୍ ମିଶି ପନ୍ଦର/କୋଡ଼ିଏ ଖଣ୍ଡ ଗାଡ଼ି ଗଦା ହୋଇଥାଏ । ପିଅନଠାରୁ ବୁଝିଲି ମିଟିଂ ଚାଲିଛି । ଆହୁରି ଦୁଇ ଘଣ୍ଟା ଚାଲିବ । ତା'ପରେ କଲେକ୍ଟର ସାହେବ ଲଞ୍ଚ୍ ଖାଇବାକୁ ଚାଲିଯିବେ । ତେଣୁ ଦେଖାହେବା ଅସମ୍ଭବ ।

ଠାକୁରାଣୀଙ୍କ ପାଖରୁ ଫେରିଥିବାରୁ ମୁଁ ପୂରା ହିନ୍ଦୁସ୍ତାନୀ ପୋଷାକ ଧୋତି ପଞ୍ଜାବି ପିନ୍ଧିଥିଲି ଏବଂ ମୁଣ୍ଡରେ ସିନ୍ଦୂର କଲି ମାରିଥିଲି । ଭୁନା ଦୁଇ ଦୁଇ ଥର କହିଲା ପରେ ମଧ୍ୟ ସେ ଅର୍ଡର୍ଲି ତା' କଥାକୁ ଖାତିର କଲା ନାହିଁ । ମତେ ବହୁତ ଖରାପ ଲାଗିଲା । ମୁଁ ଗୋଟେ କାଗଜରେ ଇଜିନାବାବୁ (ମୋର ଡାକ ନାଁ), କଟକ ଲେଖି ସେ ଅର୍ଡର୍ଲିକୁ ଦେଲି ଏବଂ ସଙ୍ଗେ ସଙ୍ଗେ କଲେକ୍ଟରଙ୍କ ହାତରେ ଦେବାକୁ କହିଲି । ସେ ପ୍ରଥମେ କୁନ୍ଥୁ କୁନ୍ଥୁ ହେଉଥିଲା । ସେ ମୋ' ଚେହେରା ଓ କଥାବାର୍ତ୍ତାରୁ

ମତେ ଗୋଟେ ମାରଓ୍ୱାଡ଼ି ବ୍ୟବସାୟୀ ବୋଲି ଭାବି ନେଇଥିଲା । ମୁଁ ଟିକିଏ ଟାଣ ଗଳାରେ କହିଲି, ''ଶୁଣ ! ମୁଁ କିଏ ତମେ ଜାଣିନ । ଏ କାଗଜ ତମ କଲେକ୍ଟରଙ୍କୁ ପାଞ୍ଚ ମିନିଟ୍ ଭିତରେ ନ ଦେଲେ ତମର କାଲିଠୁ ଏ ପୋଷ୍ଟ ନ ଥିବ । ଆଉ ଜଣେ ନୂଆ ପିଅନ ତମ ଜାଗାରେ ଥିବ ।''

ସେ ଆଶ୍ଚର୍ଯ୍ୟ ହୋଇ ମୋ' ମୁହଁକୁ ଚାହିଁଲା ଏବଂ କାଗଜ ଧରି ଭିତରକୁ ଗଲା । ଆମେ ଦୁହେଁ କାର୍ ଭିତରେ ଅପେକ୍ଷା କରିଥାଉ । ପାଞ୍ଚ/ଛଅ ମିନିଟ୍ ପରେ ଦେଖାଗଲା ଜଣକ ପରେ ଜଣେ ପ୍ରାୟ କୋଡ଼ିଏ ଜଣ ଅଫିସର ଫାଇଲ୍ ଧରି ସେ ରୁମ୍‌ରୁ ବାହାରି ଆସୁଛନ୍ତି ଏବଂ ସବା ପଛରେ ପ୍ରଶାନ୍ତବାବୁ ପ୍ରାୟ ଦୌଡ଼ି ଦୌଡ଼ି ଆମ କାର୍ ପାଖକୁ ଆସୁଛନ୍ତି । ସେ ମତେ ପ୍ରଣାମ କରି କୁଣ୍ଢେଇ ପକେଇଲେ ଏବଂ ଗଦ୍ ଗଦ ସ୍ୱରରେ କହିଲେ – ନନା ! ସତରେ ଆପଣ ଏ ଭାଇକୁ ଭୁଲି ନାହାନ୍ତି ? ଏଟା ମୋର ସୌଭାଗ୍ୟ । ତାଙ୍କର କି ଖୁସି ! ମୁଁ ଭୁନାକୁ ଚିହ୍ନାଇଦେଲି । ସେ ଆମ ଦୁଇ ଜଣଙ୍କୁ ଡ୍ରଇଂରୁମ୍‌ରେ ବସାଇଦେଇ ତାଙ୍କ ସ୍ତ୍ରୀଙ୍କୁ ଡାକିବାକୁ ଭିତରକୁ ଗଲେ । ଏଠାରେ କହିରଖେ, ପରିସ୍ଥିତିରେ ପଡ଼ି ପ୍ରଶାନ୍ତବାବୁ ସେଠିକାର ଜଣେ ଉଚ୍ଚପଦସ୍ଥ ପୋଲିସ ଅଫିସରଙ୍କ ଝିଅକୁ ବାହା ହୋଇଥିଲେ, ଯାହାକି ତାଙ୍କ ମା'ଙ୍କ ମନରେ ଗଭୀର ଦୁଃଖ ଦେଇଥିଲା, ଏକଥା ସେ ମୋ ଆଗରେ ନିଜେ କହିଛନ୍ତି । ଦଶ ମିନିଟ୍ ପରେ ସେ ନ ଆସିବାରୁ ସେ ବାରମ୍ବାର ଭିତରକୁ ଯାଉଥା'ନ୍ତି ଏବଂ ମୋ ବିଷୟରେ ତାଙ୍କୁ କହୁଥା'ନ୍ତି । ମତେ ଶୁଭୁଥାଏ, ସେ କହୁଥା'ନ୍ତି, ''ସେ ଗୋପବନ୍ଧୁର ବଡ଼ଭାଇ । ମୋର ମଧ ବଡ଼ଭାଇ ଭଳି, ତମେ ଜଲ୍‌ଦି ଆସ ।'' ଶେଷରେ ଶ୍ରୀମତୀ ମିଶ୍ର ଆସି ଆମ ପାଖରେ ବସିଲେ । ପ୍ରଶାନ୍ତବାବୁ ବହୁତ ସରଳ ପ୍ରକୃତିର । ତେଣୁ ଉଚ୍ଚ ପଦପଦବୀରେ ଥିବା ସ୍ତ୍ରୀମାନେ ବେଶଭୂଷା ନ ହୋଇ ହଠାତ୍ ବାହାରିପାରନ୍ତିନି ବୋଲି ସେ ଆଦୌ ଭାବିପାରନ୍ତି ନାହିଁ ।

ତାଙ୍କ ଘରେ ଖିଆପିଆ ହେଲା । ଖାଇବାପରେ ବିଶ୍ରାମ ନ ନେଇ ନାନାଆଡୁ କଥାବାର୍ତ୍ତା ଚାଲିଲା । ପ୍ରଶାନ୍ତବାବୁଙ୍କର ଖୁସି ଦେଖି ମତେ ଲାଗିଲା ସତେଯେପରି ତା' ନିଜ ବଡ଼ଭାଇ ବାବୁଲା ଭାଇନା (ସେତେବେଳକୁ ଓଡ଼ିଶାର ଚିଫ୍ ସେକ୍ରେଟାରୀ) ତା' ପାଖକୁ ଆସିଛନ୍ତି। ସେ ମନଦୁଃଖ କରି କହୁଥାଏ, ''ନନା ! ମା' ତ ମୋ ବିବାହ ପରେ ମୋ' ପାଖକୁ ଆସିଲେନି । ଭାଇନା ବି ଅଭିମାନ କରି ଆସୁ ନାହାନ୍ତି ।''

ମୁଁ ତାଙ୍କୁ ବୁଝେଇଦେଲି ଯେ ସେ ହୁଏତ କାର୍ଯ୍ୟବ୍ୟସ୍ତତା ଯୋଗୁଁ ଆସିପାରୁ ନ ଥିବେ । ରାତିଟା ରହିବାପାଇଁ ମତେ ବହୁତ ବାଧ କରୁଥିଲା । କହିଲା, ''ଆପଣ ତ

ଟିକିଏ କାବ୍ୟରସିକ ଲୋକ । ଗଙ୍ଗାରେ ବୁଲିବା ଲାଗି ଗୋଟେ ଲଞ୍ଚ୍ ମୋ କ୍ୱାର୍ଟର୍ସ ପଛପଟେ ବନ୍ଧା ହୋଇଛି । ଆଜି ଜହ୍ନରାତି । ଗଙ୍ଗାରେ ବୁଲିଲେ ଆପଣଙ୍କୁ ବହୁତ ଭଲ ଲାଗିବ ।'' କର୍ତ୍ତବ୍ୟର ଅନୁରୋଧରେ ମତେ ତା' ପାଖରୁ ସନ୍ଧ୍ୟାସୁଦ୍ଧା ବିଦାୟ ନେବାକୁ ପଡ଼ିଲା; ମାତ୍ର ଫେରିବାବେଳେ ମାୟାଧର ମାନସିଂହଙ୍କର କାଳଜୟୀ କବିତା 'ମହାନଦୀର ଜ୍ୟୋତ୍ସ୍ନାବିହାର'ର ଦୁଇ ଧାଡ଼ି ମନେପଡ଼ିଲା ।

''ଫେରିବା କହୁଛ ବନ୍ଧୁ
ପୁଣି ଅନ୍ଧକାରେ
ଫେରିବାକୁ ହେବ ସତେ
ହାୟ ଏ ଜୀବନ !
ଅବସର ନାହିଁ ମିଳେ କ୍ଷଣେ ଭୁଲିବାରେ
ଜୀବନର ହାହାକାର ପ୍ରାଣର ଦହନ ।''

ଫେରିଲାବେଳେ ପ୍ରଶାନ୍ତବାବୁ ମତେ ନିଜେ କାର୍ ଭିତରେ ବସାଇ କାର୍‌ରେ ଦରଜା ବନ୍ଦ କଲେ । ଏ ପ୍ରକାର ସୌଜନ୍ୟ ଆଜିକାଲିର ତଥାକଥିତ ଉଚ୍ଚ ଅଫିସରମାନଙ୍କ ପାଖରେ ଦେଖିବାକୁ ମିଳେନା ।

ଆଉ ଥରକର କଥା । କାର୍ଯ୍ୟ ଉପଲକ୍ଷେ ତାଙ୍କର ଗାଁ ଆଠମଲ୍ଲିକକୁ ମୋର ଗସ୍ତକ୍ରମ ସ୍ଥିର ହୋଇଥାଏ । ପ୍ରଧାନମନ୍ତ୍ରୀ ଗ୍ରାମ୍ୟ ସଡ଼କ ଯୋଜନାରେ ମୁଁ କ୍ୱାଲିଟି ମନିଟର ଭାବେ ଓଡ଼ିଶା ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ବିଭାଗରୁ ନିଯୁକ୍ତି ପାଇଥାଏ । ଅନେକଦିନରୁ ବାବୁଲାଭାଇନା ମତେ କହିଥିଲେ, ଆରେ ଇଜିନା ! (ମୋର ଡାକନାମ) ତୁ ତ ସାରା ଓଡ଼ିଶା ବୁଲୁଛୁ । ଆଠମଲ୍ଲିକ ଗଲେ, ଆମ ଘରକୁ ନିଶ୍ଚୟ ଯିବୁ । ମୋ ସବା ସାନଭାଇ ସେଠି ଓକିଲାତି କରୁଛି । ସେ ଭାରି ଖୁସି ହେବ ।

ସେ ଅନୁସାରେ ମୁଁ ଆଠମଲ୍ଲିକରେ ପହଞ୍ଚିବା ପରେ ରାସ୍ତାକାମ ଦେଖିବାକୁ ବାହାରିଗଲି ଏବଂ ପ୍ରଶାନ୍ତବାବୁଙ୍କ ଘରକୁ ଖବର ପଠାଇଲି । ଫେରିବାବେଳେ ତାଙ୍କ ଘରବାଟେ ଯିବି । ଦୁଇଟାବେଳକୁ ଆମେ ତାଙ୍କ ଘରେ ପହଞ୍ଚିଲୁ । ମୋ ସାଙ୍ଗରେ ଗ୍ରାମ୍ୟ ଉନ୍ନୟନ ବିଭାଗର ଯନ୍ତ୍ରୀମାନେ ଥାଆନ୍ତି । ମୁଁ କଲିଂବେଲ୍ ଚିପିବାରୁ କବାଟ ଖୋଲିଲା । ମୁଁ ଭାବିଲି ତାଙ୍କ ସାନଭାଇ ହୋଇଥିବ; ମାତ୍ର ଏ କ'ଣ ! ସ୍ୱୟଂ ପ୍ରଶାନ୍ତବାବୁ ହସ ହସ ମୁହଁରେ ଠିଆହୋଇଛନ୍ତି । ମତେ ଆଶ୍ଚର୍ଯ୍ୟ ହେବାର ଦେଖି କହିଲେ, ''ନନା ! ଏମିତି କ'ଣ ଦେଖୁଛନ୍ତି ? ମୁଁ ପରା ପ୍ରଶାନ୍ତ । ଭିତରକୁ ଆସନ୍ତୁ ।'' ମୁଁ ସେ ଅବସ୍ଥାରେ ତାଙ୍କର ଗାଁ'କୁ ହଠାତ୍ ଆସିବାର କାରଣ ଜାଣିବାକୁ

ଚାହିଁଲି । ଆଜିକାଲି ଉଚ୍ଚ ଅଫିସରମାନେ ଭୁବନେଶ୍ୱର ଛାଡ଼ି ସେଭଳି ଗୁରୁତର କାରଣ ନ ଥିଲେ ଗାଁ'କୁ ଯିବାପାଇଁ ସମ୍ପୂର୍ଣ୍ଣ ଅନିଚ୍ଛୁକ । ତାଙ୍କ ସ୍ତ୍ରୀ ଓ ପିଲାମାନଙ୍କ କଥା ନ କହିଲେ ଭଲ । ସରବତ ପିଇବା ଭିତରେ ପ୍ରଶାନ୍ତବାବୁ ଯାହା କହିଲେ, ତା'ର ସାରମର୍ମ ମଧ୍ୟ ଏହିପରି । ସେ ସେତେବେଳକୁ ଭାରତ ସରକାରଙ୍କ ପର୍ଯ୍ୟଟନ ନିଗମର ସର୍ବୋଚ୍ଚ କର୍ତ୍ତା ଥାଏ । ଆଠମଲ୍ଲିକ ଠାରୁ ଦଶ/ବାର କି.ମି. ଦୂରରେ ଗୋଟିଏ ଅତି ସୁନ୍ଦର ଉଷ୍ଣପ୍ରସ୍ରବଣ (ଦେଉଳଝରି) ଥାଏ, ଯାହା କି ଓଡ଼ିଶାରେ ପ୍ରସିଦ୍ଧ । ତାଙ୍କ ପୁଅ ଥରେ ଟିଭିରେ ଉଷ୍ଣପ୍ରସ୍ରବଣ ବିଷୟରେ ଦେଖି ସେଟା କେମିତି ବୋଲି ଜାଣିବାକୁ ଚାହିଁଲା । ବାସ୍ ! ତା' ପରଦିନ ପ୍ରଶାନ୍ତବାବୁ ଦଶ ଦିନ ଛୁଟି ନେଇ ପୁଅକୁ ଧରି ଗାଁ'ରେ ହାଜର୍ । ଗୋଟେ ସାଇକେଲରେ ପୁଅକୁ ବସାଇ ସବୁଦିନ ସେ ଜାଗାକୁ ବୁଲାଇ ନେଉଥା'ନ୍ତି । ଭୁବନେଶ୍ୱରରୁ ଗାଡ଼ି କାହିଁକି ଆଣିଲେନି ବୋଲି ପଚାରିବାରେ ହସିଲେ । କହିଲେ, ''ନନା ! ଏବେ ପରା ଭୁବନେଶ୍ୱରରୁ ସମ୍ବଲପୁର ଇଣ୍ଟରସିଟି ଏକ୍ସପ୍ରେସ୍ ଚାଲିଲାଣି । ରେଢ଼ାଖୋଲ ଷ୍ଟେସନ୍‌ରେ ଓହ୍ଲାଇ ଗୋଟେ ଟାକ୍ସିରେ ଗାଁ'କୁ ଚାଲିଆସିଲି । ଫେରିବାଦିନ ମୋତେ ଆସି ରେଢ଼ାଖୋଲ ନେଇଯିବାକୁ ଟାକ୍ସିବାଲାକୁ କହିଦେଇଛି ।

ଆଉ ଗାଁ'ରେ ଗାଡ଼ିର ଦରକାର କ'ଣ ? ସାଇକେଲ ତ ଅଛି । ଭାରତ ସରକାରଙ୍କର ପର୍ଯ୍ୟଟନ ବିଭାଗର ସର୍ବୋଚ୍ଚ କର୍ତ୍ତା ଚାହିଁଥିଲେ ସେ ଉଡ଼ାଜାହାଜରୁ ଓହ୍ଲାଇଲାବେଳକୁ ଓଡ଼ିଶା ପର୍ଯ୍ୟଟନ ବିଭାଗର ଏମ୍.ଡି. ନିଜେ ତାଙ୍କୁ ସ୍ୱାଗତ କରିଥା'ନ୍ତେ ଏବଂ ଗୋଟିଏ ବିଦେଶୀ ଶୀତତାପ ନିୟନ୍ତ୍ରିତ କାର୍ ତାଙ୍କ ଗସ୍ତ ପାଇଁ ସେ ଫେରିବା ପର୍ଯ୍ୟନ୍ତ ରଖାଯାଇଥା'ନ୍ତା । ମାତ୍ର କାହାକୁ କିଛି ନ ଜଣାଇ ପୁଅକୁ ଧରି ଗାଁ'ରେ ହାଜର୍ । ମତେ କହିଲେ, ''ନନା, ମୋ' ପୁଅ ଆଠମଲ୍ଲିକର ପିଲାହୋଇ ଯଦି ଉଷ୍ଣପ୍ରସ୍ରବଣ କ'ଣ ପଚାରିଲା, ତେବେ ମୋର ପର୍ଯ୍ୟଟନ ବିଭାଗର ସେକ୍ରେଟାରୀ ହୋଇ ମୂଲ୍ୟ କ'ଣ ?'' ସାଧୁତା ଏବଂ ସରଳତାର ନିଛକ ପ୍ରତିମୂର୍ତ୍ତି ପ୍ରଶାନ୍ତବାବୁଙ୍କୁ ମୁଁ କେବଳ ଚାହିଁରହିଲି ଏବଂ ତାଙ୍କ ଘରେ ଖାଇବାଲାଗି ସ୍ନେହପୂର୍ଣ୍ଣ ଅନୁରୋଧକୁ ରକ୍ଷା କରିପାରୁ ନ ଥିବାରୁ କ୍ଷମା ମାଗି ଅନୁଗୁଳ ଫେରିଆସିଲି । କାରଣ ବଇନ୍ଧା ଡାକବଙ୍ଗଳାରେ ଆମ ସମସ୍ତଙ୍କ ପାଇଁ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ହୋଇଥିଲା ।

ତା'ର କିଛି ମାସ ପରେ ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀ ସୁଶ୍ରୀ ମାୟାବତୀଙ୍କର ବିଶେଷ ଅନୁରୋଧକ୍ରମେ ସେ ଓ ମୋର ସାନଭାଇଙ୍କୁ କେନ୍ଦ୍ରରୁ ଉତ୍ତରପ୍ରଦେଶକୁ ଫେରାଇଅଣାଗଲା । ଶୁଣାଯାଏ, ମାୟାବତୀଙ୍କ ଅନୁରୋଧରେ ସ୍ୱୟଂ ପ୍ରଧାନମନ୍ତ୍ରୀ ମନମୋହନ ସିଂ ଏଥିଲାଗି ନିର୍ଦ୍ଦେଶ ଦେଇଥିଲେ । ମୋର ସାନଭାଇର (କେନ୍ଦ୍ର

ସଂସ୍କୃତି ବିଭାଗର ଯୁଗ୍ମ ସଚିବ) ସେତେବେଳକୁ କେନ୍ଦ୍ରକୁ ଯିବାର ଛଅ ମାସ ପୂରି ନ ଥାଏ । ଫେରିବା ପରେ ପ୍ରଶାନ୍ତବାବୁ ଚିଫ୍ ସେକ୍ରେଟେରୀ ପଦବୀରେ ଅବସ୍ଥାପିତ ହେଲେ ଏବଂ ଗୋପବନ୍ଧୁ ପ୍ରିନ୍‌ସିପାଲ ଏନର୍ଜି ସେକ୍ରେଟାରୀ ତଥା ରାଜ୍ୟପାଳଙ୍କ ପ୍ରମୁଖ ସଚିବ ଭାବରେ ଅବସ୍ଥାପିତ ହେଲା । ମାୟାବତୀ ଦେଖାଇଦେବାକୁ ଚାହିଁଥିଲେ ସାଧୁ, ସଚ୍ଚୋଟ ଅଫିସରଙ୍କୁ ସେ କିପରି ଉଚ୍ଚ ପଦବୀ ଦିଅନ୍ତି । ଅଳ୍ପଦିନ ପରେ ଶୁଣିବାକୁ ମିଳିଲା ଅନିଲ ଅମ୍ବାନୀଙ୍କ ଇଙ୍ଗିତରେ ମୋ ଭାଇଠାରୁ ଶକ୍ତିବିଭାଗ କାଢ଼ି ନିଆଗଲା । ସେ କେବଳ ରାଜ୍ୟପାଳଙ୍କ ପ୍ରମୁଖ ସଚିବ ହୋଇ ରହିଲା ଏବଂ ଶେଷପର୍ଯ୍ୟନ୍ତ ଚିଫ୍ ସେକ୍ରେଟେରୀ ପାହ୍ୟାକୁ ପ୍ରମୋଶନ ପାଇଲେ ମଧ୍ୟ ତାକୁ ଚିଫ୍ ସେକ୍ରେଟେରୀ କରାଗଲା ନାହିଁ । ଗୋଟାଏ ଦୁର୍ଭାଗ୍ୟପୂର୍ଣ୍ଣ ଘଟଣାରେ ମାୟାବତୀଙ୍କ ଦୁର୍ନୀତିପୂର୍ଣ୍ଣ ଶାସନରେ ଅତିଷ୍ଠ ହୋଇ ସାଧୁ, ନିର୍ଭୀକ, ତୁଙ୍ଗ ପ୍ରଶାସକ ପ୍ରଶାନ୍ତ ମିଶ୍ର ଚିଫ୍ ସେକ୍ରେଟେରୀ ପଦରୁ ଇସ୍ତଫା ଦେଇଦେଲେ । ସାରା ଭାରତରେ ଏ ଖବର ଚହଳ ପକାଇଥିଲା । ମାୟାବତୀ ଅବସର ପରେ ବହୁତ ଉଚ୍ଚ ପଦପଦବୀର ପ୍ରଲୋଭନ ଦେଖାଇଲେ ମଧ୍ୟ ସେ ହିମାଳୟ ପର୍ବତ ପରି ଅଟଳ । ଇସ୍ତଫା ଦେଇ ଦିଲ୍ଲୀରେ ନିଜ ଘରକୁ ଚାଲିଗଲେ । ଗୋପବନ୍ଧୁ ମଧ୍ୟ ଯା' ଭିତରେ ଚାକିରିରୁ ଅବସର ନେଲାଣି ।

ଭାରତୀୟ ପ୍ରଶାସନିକ ସେବାର ଉତ୍ତୁଙ୍ଗ ମର୍ଯ୍ୟାଦା ଓ ନିଜ ବିବେକର ଅନୁରୋଧରେ ସର୍ବୋଚ୍ଚ ପଦବୀକୁ ସେ ପଦାଘାତ କରିଦେଲେ । ତାଙ୍କ ସହିତ ଟେଲିଫୋନରେ କଥାବାର୍ତ୍ତା କଲାବେଳେ ଏଭଳି କାର୍ଯ୍ୟକଳାପ ଯୋଗୁଁ ଆମେମାନେ କେଡ଼େ ଗର୍ବ ଅନୁଭବ କରୁଛୁ ବୋଲି ମୁଁ କହିବାରୁ ସେ କହିଲେ, ''ନନା ! ସେଇ ଯଥେଷ୍ଟ । ଦୁନିଆକୁ ମୁଣ୍ଡ ଟେକି ଆସିଛେ, ମୁଣ୍ଡ ଟେକି ଯିବା ।'' ଆଜିର ଦୁନିଆରେ ଦୁର୍ନୀତିଗ୍ରସ୍ତ ରାଜନେତାମାନଙ୍କର ପାଦ ଚାଟୁଥିବା ଉଚ୍ଚ ଅଫିସରମାନଙ୍କ ଆଗରେ ପ୍ରଶାନ୍ତବାବୁ ସାଧୁତା ଏବଂ ତ୍ୟାଗର ଉଜ୍ଜ୍ୱଳ ଦୃଷ୍ଟାନ୍ତ ରଖିଦେଇଗଲେ । ସେ ହେଉଛନ୍ତି ସ୍ୱାଧୀନ ଭାରତର ପ୍ରଥମ ଚିଫ୍ ସେକ୍ରେଟେରୀ ଯିଏକି ବର୍ଷେ ଉପରେ ଚାକିରି ଥାଉ ଥାଉ ଇସ୍ତଫା ଦେଇଦେଲେ । ଭଗବାନ୍ କରନ୍ତୁ, ତାଙ୍କ ପରି ସୁଯୋଗ୍ୟ ସନ୍ତାନ ଯୁଗେ ଯୁଗେ ଉତ୍କଳମାତାର କୋଳମଣ୍ଡନ କରନ୍ତୁ ।

❑❑❑

# ଜେନେରାଲ୍ କେ.ଏମ୍. କାରିଆପ୍ପା
# ସ୍ୱାଧୀନ ଭାରତର ପ୍ରଥମ ସେନାଧ୍ୟକ୍ଷ

ମୁଁ ଜେନେରାଲ୍ କାରିଆପ୍ପାଙ୍କୁ ପ୍ରଥମେ ଦେଖିଲାବେଳକୁ ମତେ ପନ୍ଦର ବର୍ଷ ବୟସ । ରେଭେନ୍‌ସା କଲେଜରେ ପ୍ରଥମ ବାର୍ଷିକରେ ପଢୁଥାଏ । ତାଙ୍କର ଓଡ଼ିଶା ଗସ୍ତ ପଡ଼ିଲା ଏବଂ ରେଭେନ୍‌ସା କଲେଜର ଆସେମ୍ବ୍ଲି ହଲ୍‌ରେ ଭାଷଣ ଦେବାର କାର୍ଯ୍ୟକ୍ରମ ସ୍ଥିର ହୋଇଥାଏ । ନିର୍ଦ୍ଧାରିତ ସମୟରେ ସନ୍ଧ୍ୟା ସାତଟା ବେଳକୁ ସେ ପହଞ୍ଚିଲେ । ଗୋରା ତକ୍ ତକ୍ ଦେହ, ଦୀର୍ଘକାୟ ଚେହେରା, ଉନ୍ନତ ନାକ । ସେ ପ୍ରିନ୍‌ସିପାଲ ଡକ୍ଟର ସଦାଶିବ ମିଶ୍ରଙ୍କ ସହିତ ଷ୍ଟେଜ୍ ଉପରକୁ ଚାଲିଗଲେ । ସମଗ୍ର ହଲ୍ ଲେକ୍‌ଚରର ଓ ପିଲାଙ୍କ ଦ୍ୱାରା ଭରପୂର । ମୁଁ ବହୁତ ଆଗରୁ ଯାଇ ଗୋଟିଏ ଚୌକି ମାଡ଼ି ବସିଥାଏ । ଇଚ୍ଛା, ସ୍ୱାଧୀନ ଭାରତର ପ୍ରଥମ ସର୍ବୋଚ୍ଚ ସେନାଧ୍ୟକ୍ଷଙ୍କ ଭାଷଣ ଶୁଣିବା ଏବଂ ସୁବିଧା ହେଲେ ତାଙ୍କ ଅଟୋଗ୍ରାଫ୍ ସଂଗ୍ରହ କରିବା । ସେତେବେଳେ ଭାରତର ଗୁଣୀମାନୀ ଲୋକଙ୍କର ଅଟୋଗ୍ରାଫ୍ ସଂଗ୍ରହ କରିବା ମୋର ଗୋଟେ ନିଶା ଥିଲା ।

ସଭାକାର୍ଯ୍ୟ ଆରମ୍ଭ ହେଲା । ପ୍ରଥମେ ଡକ୍ଟର ମିଶ୍ର ତାଙ୍କର ପରିଚୟ ଦେବାପରେ ଜେନେରାଲ୍ କାରିଅପ୍ପା ତାଙ୍କର ଜ୍ୱାଳାମୟ ଭାଷଣ ଆରମ୍ଭ କଲେ । ଭାଷଣ ତ ନୁହେଁ, ଯେପରି ଗୋଟେ ମେସିନ୍‌ଗନ୍‌ରୁ ଗୋଳାବର୍ଷଣ ଚାଲିଛି । ସମଗ୍ର ଜନତା ମନ୍ତ୍ରମୁଗ୍ଧ ଭାବେ ଶୁଣୁଥା'ନ୍ତି । ହଠାତ୍ ବିଜୁଳି ଚାଲିଯିବାରୁ ମାଇକ୍ ବନ୍ଦ ହୋଇଗଲା । ମେକାନିକ୍ ଏବଂ ଅନ୍ୟମାନଙ୍କର ଧାଁ-ଦଉଡ଼ ସତ୍ତ୍ୱେ ଲାଇଟ୍ ଆସିଲାନି । ହଠାତ୍ ଜେନେରାଲ କାରିଆପ୍ପାଙ୍କର ମନ୍ଦ୍ରଗମ୍ଭୀର ସ୍ୱର ଶୁଣାଗଲା – "Am I audible to the last man ?... raise up your hands."

ଦୁଇ ଶହ ଯୋଡ଼ା ହାତ ଉପରକୁ ଉଠିଲା । ସେ ତାଙ୍କ ଭାଷଣ ଚାଲୁରଖିଲେ । କିଛି ସମୟ ପରେ ଲାଇଟ୍ ଆସିଗଲା । ଭାଷଣ ଶେଷ ହେବାପରେ ସେ ପିଲାମାନଙ୍କୁ ବିଭିନ୍ନ ପ୍ରଶ୍ନ ପଚାରିବାକୁ କହିଲେ ଏବଂ ନିଜର ସ୍ୱଭାବସୁଲଭ ଢଙ୍ଗରେ ଉତ୍ତର ଦେଉଥା'ନ୍ତି । ମୁଁ ପିଲାଦିନେ ତାଙ୍କ ବିଷୟରେ ଗୋଟେ ଲେଖା ପଢ଼ିଥିଲି । 'ମୋ ଦେଶ' ବୋଲି ପିଲାମାନଙ୍କର ଗୋଟେ ପତ୍ରିକା ଆମ ଘରକୁ ଆସୁଥାଏ । ସେଥିରେ ଜେନେରାଲ୍ କାରିଆପ୍ପାଙ୍କ ବ୍ୟକ୍ତିଗତ ଜୀବନ ଉପରେ ଏକ ଲେଖା ବାହାରିଥାଏ; ମାତ୍ର ସର୍ବସାଧାରଣରେ ଏ ବିଷୟରେ ପଚାରିବା ଉଚିତ ହେବ କି ନାହିଁ

ଭାବୁ ଭାବୁ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମ ସରିଗଲା । ସେ ଡକ୍ଟର ସଦାଶିବ ମିଶ୍ର, ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କ ସଙ୍ଗରେ ଚାଲି ଚାଲି ଆସୁଥା'ନ୍ତି । ହଠାତ୍ ମୁଁ ତାଙ୍କ ଆଗକୁ ଚାଲିଗଲି ଏବଂ ତାଙ୍କର ପଥରୋଧ କରି କହିଲି, ''ସାର୍, ମୋର ଆପଣଙ୍କୁ ଗୋଟିଏ ବ୍ୟକ୍ତିଗତ ପ୍ରଶ୍ନ ପଚାରିବାକୁ ଅଛି । ଭୁଲ ଥିଲେ କ୍ଷମା କରିବେ ।''

ଘଟଣାଟା ଏହିଭଳି । ଥରେ କାର୍ଯ୍ୟ ଉପଲକ୍ଷେ ପଣ୍ଡିତ ନେହରୁ ଜେନେରାଲ କାରିଆପ୍ପାଙ୍କୁ ଦେଖା କରିବାକୁ ଡକାଇଥିଲେ । ସେ ପୋଷାକପତ୍ର ପିନ୍ଧି ବାହାରିଲାବେଳକୁ ଦେଖିଲେ ପୋଷାକ ଇସ୍ତ୍ରି କରିବାରେ ସାମାନ୍ୟ ତ୍ରୁଟି ରହିଯାଇଛି । ସେ ରାଗିଯାଇ ତାଙ୍କର ପି.ଏ.କୁ ଧୋବାକୁ ଚାକିରିରୁ ବାହାର କରିଦେବାକୁ କହିଲେ ଏବଂ ବେଳ ହୋଇଯାଉଥିବାରୁ ଅନ୍ୟ ପୋଷାକ ବଦଳି ପଣ୍ଡିତ ନେହରୁଙ୍କ ପାଖକୁ ଚାଲିଗଲେ । ଏ କଥା ତାଙ୍କର କୁନିଝିଅ (ମୋର ଯାହା ମନେପଡୁଛି ତା' ନାଁ' ମିନି) ଦେଖୁଥାଏ । ସେ ଧୋବା ତାଙ୍କ ସରକାରୀ ବଙ୍ଗଳାର ପଛପଟେ ଗୋଟେ କଣକୁ ରହିଥାଏ । ତା'ର ଝିଅ ମିନିର ସାଙ୍ଗ । କାରିଆପ୍ପା ଫେରିବା ପରେ ମିନି ତାଙ୍କ କାନ୍ଧରେ ଓହଳିପଡ଼ି କହିଲା, ''ବାପା ! ତମେ ପରା ଆମକୁ କହୁଥିଲ, ସଦାବେଳେ ଗରିବ ଲୋକକୁ ସାହାଯ୍ୟ କରିବ ବୋଲି ! ଏବେ ସେ ଧୋବୀକୁ ଚାକିରିରୁ ବାହାର କରିଦେଲେ ତା'ର ପିଲାମାନେ କ'ଣ ଖାଇବେ, ମୁଁ ମଧ କାହା ସାଙ୍ଗରେ ଖେଳିବି ?''

ଯୁଦ୍ଧ କ୍ଷେତ୍ରରେ ଅସୀମ ବୀରତ୍ୱ ପ୍ରଦର୍ଶନ କରିଥିବା ଦୁର୍ଦ୍ଧର୍ଷ ଜେନେରାଲ୍ କାରିଆପ୍ପାଙ୍କ ହୃଦୟ ଦୟାରେ ତରଳିଗଲା ଏବଂ ସେ ଝିଅକୁ ଗେଲକରି କହିଲେ, ''ତୁ ଠିକ୍ କହିଛୁ । ସେ ଧୋବୀ ରହିବ । ତାକୁ କ୍ଷମା କରାଗଲା ।'' ଏ କଥା ମୁଁ ଟୁମ୍‌କରେ ତାଙ୍କୁ କହିବାରେ ସେ ଆଗ ଟିକିଏ ଆଶ୍ଚର୍ଯ୍ୟ ହେଲାପରି ମୋ' ମୁହଁକୁ ଚାହିଁଲେ । ତା'ପରେ କହିଲେ, "Dr. Mishra, the young man knows the innermost secrets of my house." ତା'ପରେ ମୋ autograph ବହିରେ ଦସ୍ତଖତ କରି ତାଙ୍କ ଗାଡ଼ି ପାଖକୁ ଚାଲିଗଲେ ।

ଆଜି ଜୀବନର ସାୟାହ୍ନରେ ସେ କଥା ମନେପଡ଼ିଲେ ମୋ' ନିଜ ଦୁଃସାହସ କଥା ଭାବି, ଆଶ୍ଚର୍ଯ୍ୟ ଲାଗେ ଏବଂ କଠୋର ନିୟମରେ ବନ୍ଧା; ଅଥଚ ଦୟାକ୍ଷମାର ପ୍ରତୀକ ଜେନେରାଲ କାରିଆପ୍ପାଙ୍କ ପାଖରେ ମୁଣ୍ଡ ସ୍ୱତଃ ନଇଁଯାଏ ।

ଭାଗବତରେ ଯଥାର୍ଥରେ କୁହାଯାଇଛି –

''ଦଣ୍ଡିବା ଶକ୍ତି ଯା'ର ଥାଇ, ସେ ପୁଣି କ୍ଷମା ଆଚରଇ ।''

---



ଜୀବନ ସଦାବେଳେ ସୁନ୍ଦର, ସବୁଜ ଓ ସତେଜ । ନିଦାଘ ଗ୍ରୀଷ୍ମର ଆଢୁଆଳରୁ ବେଳେ ବେଳେ ଉଙ୍କିମାରେ ଅତୀତର ସେଇ ମନମତାଣିଆ ସୁଲୁସୁଲିଆ ପବନଭରା ମେଘୁଆ ଦିନଗୁଡ଼ିକ । ଜୀବନର ତୃତୀୟ ପାହାଚରେ ପହଞ୍ଚି ଲେଖକ ଭୁଲି ନାହାନ୍ତି ଦୀର୍ଘ ଯାତ୍ରା ପଥର ମହାର୍ଘ ସ୍ମୃତିମାନଙ୍କୁ । ସେଇମାନଙ୍କ ମଧ୍ୟରୁ କେତେଜଣ ମହାନ୍ ବ୍ୟକ୍ତିଙ୍କୁ ପାଠକଙ୍କ ଆଗରେ ପରଷି ଦେଇଛନ୍ତି । ସରଳ ଭାବ, ଅନ୍ତରକୁ ଛୁଇଁଲା ପରି ବୋଧଗମ୍ୟ ଭାଷା ତାଙ୍କ ଲେଖାର ବନ୍ଦିତା ସ୍ୱର । ସ୍ମୃତିକୈନ୍ଦ୍ରିକ ଲେଖକ ମୃତ୍ୟୁଞ୍ଜୟବାବୁଙ୍କ ଭାଷାରେ ସ୍ମୃତି ବିନା ଜୀବନ ଅଧୁରା । ଲେଖକ ସାହିତ୍ୟ ଜଗତରେ ନୂତନ ହେଲେ ମଧ୍ୟ ମହାର୍ଘ ଅନୁଭୂତିରେ ରସ-ସିକ୍ତ ଏହି ପୁସ୍ତକଟି ପାଠକୀୟ ଶ୍ରଦ୍ଧା ଲାଭ କରିବ ବୋଲି ଆଶା ଓ ବିଶ୍ୱାସ ।





**ବିଦ୍ୟାପୁରୀ**

ବାଲୁବଜାର, କଟକ ୭୫୩ ୦୦୨

www.vidyapuri.com